

## ପରିଚିତି ସ୍ତମ୍ଭ

ପିତା : ସ୍ୱ ପଣ୍ଡିତ ନୀଳକଣ୍ଠ ଦାସ
ମାତା : ସ୍ୱ ରାଧାମଣି ଦେବୀ
ସ୍ୱାମୀ : ସ୍ୱ ଦ୍ୱାରକାନାଥ ଦାସ
ଜନ୍ମ : ୮ ଅଗଷ୍ଟ ୧୯୨୮
ଜନ୍ମସ୍ଥାନ : ଶ୍ରୀରାମଚନ୍ଦ୍ରପୁର; ପୁରୀ
ବସବାସ ସ୍ଥାନ : ମାଟିମଣ୍ଡପ ସାହି
ଦ୍ୱାରକାନାଥ ଦାସ ଲେନ୍
ପୁରୀ ସହର, ପୁରୀ
ଦୂରଭାଷ : ୨୨୧୪୬

ଲେଖିକା ଉମା ଦେବୀ ଜଣେ ସଫଳ ସମାଜସେବୀ । ତାଙ୍କର ଲେଖିବା ଶୈଳୀ ସ୍ୱତନ୍ତ୍ର । ସେ ଉଭୟ କବିତା ଓ ଗଳ୍ପ ଲେଖିବାରେ ୧୯୯୦ ମସିହାରୁ ଅଦ୍ୟାବଧି ଜାଗ୍ରତ । ଏତଦ୍ ବ୍ୟତୀତ ସମାଜ ସୁଧାରିବା ପାଇଁ ପୁରୀ ନାରୀସେବା ସଂଘ, ଗୌରୀଦେବୀ ସେବାଶ୍ରମ, ଜିଲ୍ଲା ଖାଉଟି ସମାଧାନ ମଞ୍ଚ, ପୁରୀ ମହିଳା ବ୍ୟାଙ୍କ, ଜିଲ୍ଲା ରେଡ଼କ୍ରସ୍ ସମିତି, ପୁରୀ ଜିଲ୍ଲା ସାକ୍ଷରତା ସମିତି, ଜିଲ୍ଲା ଶିଶୁ କଲ୍ୟାଣ ସମିତି, ଚିକିତ୍ସାଳୟ ଉନ୍ନୟନ ସମିତି, ଜିଲ୍ଲା ଆଇନ ସହାୟତା ସମିତି ଆଦିରେ ଜଣେ ସଙ୍କଳ୍ପବଦ୍ଧ ନିଷ୍ଠାପର କର୍ମୀ ଭାବରେ ଜୀବନ ଅତିବାହିତ କରି ଆସୁଛନ୍ତି ।

### ସମ୍ମାନ

ଉତ୍କଳ ସମାଜ, ପୁରୀ ନାରୀସେବା ସଂଘ, ପ୍ରଗତିଶୀଳ ଯୁବ ସଙ୍ଗଠନ ଓ ପ୍ରିୟପତ୍ର ତରଫରୁ ସମ୍ମାନିତ ।

# ପଦେ

ରମାଦେବୀଙ୍କର **'ସେଇ ନାରୀ'** ଶୀର୍ଷକ ଗଳ୍ପ ସଂକଳନ ଉପରେ ମୁଁ ମୋର ମନ୍ତବ୍ୟ ଦେବାକୁ ଯାଇ ଗଳ୍ପ ସଂପର୍କରେ କେତୋଟି କଥା କହିବାର ଲୋଭ ସଂବରଣ କରି ପାରୁନାହିଁ ।

ଗଳ୍ପ କେବଳ କାହାଣୀ ନୁହେଁ, ମଣିଷ ମନର ନିଛକ ଛବି । ଯଦି ଗଳ୍ପରେ ସେଇ ମନର ଚିତ୍ର ନ ରହିଲା, ତେବେ କାହାଣୀ ସର୍ବସ୍ୱ ସେ ଗପର ଓଜନ ରହେନି ।

ଏଇ ସଂକଳନରେ ସନ୍ନିବେଶିତ ଗଳ୍ପଗୁଡ଼ିକ ପାଠ କଲାପରେ ମୋର ମନେ ହେଲା, ଗାଳ୍ପିକା ମଣିଷ ମନର ଦୁଃଖ, ସୁଖ, ଆଲୋକ ଅନ୍ଧାରର ଚିତ୍ରଗୁଡ଼ିକ ଉପସ୍ଥାପନ କରି ପାରିଛନ୍ତି ଓ ପ୍ରତ୍ୟେକ ଚରିତ୍ର ସହ ଏକୀଭୂତ ହୋଇ ପାରିଛନ୍ତି ।

ଏଇ ସଂକଳନରେ ସନ୍ନିବେଶିତ ଗଳ୍ପଗୁଡ଼ିକ ପଢ଼ିବା ପରେ ମୋର ମନେ ହେଲା ଗାଳ୍ପିକା ଜୀବନ ସାୟାହ୍ନରେ ତାଙ୍କର ଜୀବନ ପ୍ରଭାତର ଚରିତ୍ର ଗୁଡ଼ିକଙ୍କର (ନାରୀ ଚରିତ୍ର) ସାନ୍ନିଧ ଲଭି ଅଭିଭୂତ ହୋଇ ଯାଇଛନ୍ତି । ଅତୀତ ଜୀବନର ଘଟଣାଗୁଡ଼ିକ ତାଙ୍କ ଦୃଷ୍ଟିରେ ଦୀପ୍ତ ହୋଇ ଉଠିଛି ।

'ଗଙ୍ଗାପାଣି', 'ସଙ୍ଗାତ' ଏବଂ 'ଅଭଡ଼ା' ଚରିତ୍ରଗୁଡ଼ିକ ଆଖିରେ ଅଶ୍ରୁ ଆଣିଦିଏ ।

**'ଅଶୋକା', 'ବଉଳ' ଏବଂ 'ଶ୍ୱେତାମ୍ବରୀ' ଚରିତ୍ରଗୁଡ଼ିକ କି ଜୀବନ୍ତ ଭାବେ ଉପସ୍ଥାପିତ ନ ହୋଇଚି ପୁସ୍ତକର ପୃଷ୍ଠା ମାନଙ୍କରେ ।**

'ମଦାଳସା' ଗୋଟିଏ ଚମତ୍କାର ଗଳ୍ପ ଯାହା ପାଠକମାନଙ୍କୁ ଅଭିଭୂତ **କରେ । ଜୀବନ ପ୍ରଭାତରେ ଯେଉଁ ସଂଗିନୀ ମାନଙ୍କର ସହ ସେ ଏକାତ୍ମ ହୋଇଥିଲେ, ଜୀବନ ସଂଧ୍ୟାରେ ସେମାନଙ୍କ ଜୀବନ ବୈଚିତ୍ର୍ୟ ଗାଳ୍ପିକାଙ୍କୁ ଭାବମୁଗ୍ଧ କରିଛି ଓ ସଙ୍ଗେ ସଙ୍ଗେ ସେ ମଧ ଭାବୁଥିବେ ତାଙ୍କ ଜୀବନର ଅନ୍ତିମ ପର୍ଯ୍ୟାୟର ସ୍ୱରୂପ କେଉଁଭଳି ହେବ କେଜାଣି !**

ଆଜିର ଅଧିକାଂଶ କବିତା ଯେପରି ଦୁର୍ବୋଧ, ଅଜସ୍ର ଗଳ୍ପ ମଧ୍ୟ ଅବୋଧ ସେହିପରି । ଆଧୁନିକ ଗାଳ୍ପିକମାନଙ୍କର ଚିନ୍ତାରେ ସ୍ଥୈର୍ଯ୍ୟ ନାହିଁ, ଭାବନାରେ ଶୃଙ୍ଖଳା ନାହିଁ, ନିରୀକ୍ଷଣରେ ନିବିଡ଼ତା ନାହିଁ, ତେଣୁ ଗଳ୍ପଗୁଡ଼ିକ ପାଠକମାନଙ୍କୁ କ୍ଲାନ୍ତ ଓ ଅବସନ୍ନ କରୁଛି ।

ଗାଳ୍ପିକାଙ୍କର ଗଳ୍ପଗୁଡ଼ିକରେ କିନ୍ତୁ ପାଠକମାନଙ୍କ ପାଇଁ ସେ ଯନ୍ତ୍ରଣା ନାହିଁ । ଜୀବନକୁ ସେ ନିବିଡ଼ ଭାବେ ବୁଝିଛନ୍ତି ଓ ଉପସ୍ଥାପନ କରିଛନ୍ତି ।

ଗାଳ୍ପିକାଙ୍କୁ ସାମାନ୍ୟ ଅନୁରୋଧ ମୋର, ସେ ଟିକିଏ ଶବ୍ଦ ସଚେତନ ହୁଅନ୍ତୁ, ଗଳ୍ପର ଶୈଳୀ ଅଧିକ ପ୍ରାଞ୍ଜଳ ହେଉ ଏବଂ ଯେତେଦୂର ସମ୍ଭବ ସେ ସଂକ୍ଷେପରେ ନିଜର ବକ୍ତବ୍ୟ ବାଢ଼ନ୍ତୁ ।

ସ୍ୱଳ୍ପ ଶବ୍ଦ ସମ୍ଭାରରେ ନିଜର ଭାବନାକୁ ବ୍ୟକ୍ତ କରିବାରେ ବାହାଦୂରୀ ଅଧିକ ।

ଗାଳ୍ପିକାଙ୍କ ଲେଖନୀର ଜୟ ହେଉ ।।

- ବିଜୟକୃଷ୍ଣ ମହାନ୍ତି

# ନିଜ କଥା

ଏ କାଳ, ସେ କାଳ, ପୁଣି ଅନ୍ତରାଳ କେଜାଣି କାହିଁକି ଏଇ ପୁରୁଣା କାଳିଆ ମନଟା ସବୁବେଳେ ଖୋଜେ ସେଇ ଅତୀତର ପୁରୁଣା କାଳକୁ । ପୁଣି ତା'ର ଗଭୀର ଅନ୍ତରାଳକୁ । ଅବଶ୍ୟ ଏ କାଳର ତ ଅନ୍ତରାଳ ନାହିଁ ! ସବୁ କଥା ତ ଦାଣ୍ଡେ ପଡି ହାଟେ ଗଡ ଗଡଉଚି । ନଜାଣିଲା ବାଲାଙ୍କୁ ଜଣାଇ ଦେଉଛି, ନଶିଖିଲା ବାଲାଙ୍କୁ ଶିଖାଇ ଦେଉଚି । ଖବର କାଗଜରେ ପଢ଼ାଇ ଦେଉଛି ତ, ରେଡିଓରେ ଶୁଣାଇ ଦେଉଛି । ଶେଷରେ ଦୁର ଦର୍ଶନରେ ପ୍ରାଞ୍ଜଳ ଭାବରେ ଦେଖାଇ ଦେଉଛି । ତଥାପି ସେତେବେଳର ବନ୍ଧନ ଜୀବନ, ଏତେବେଳର ସ୍ୱାଧୀନ ଜୀବନଠାରୁ କେଉଁ ଗୁଣରେ ଊଣା ଲାଗେନି । ଖାଲି ଯାହା ସେତେବେଳର ଅଫିଟା ମୁହଁଟା ଏବେ ଚିକ୍କାର କରୁଛି । ପ୍ରତିକାର ବଦଳରେ ପ୍ରଚାର କରୁଛି । ଖୁବ୍ ଶୀଘ୍ର ବ୍ୟାପକ ଭାବରେ ବ୍ୟାପିଯାଉଛି । ଯେତିକି ପ୍ରଭାବିତ କରୁଛି, ସେତିକି ପ୍ରତାରିତ କରୁଛି ।

ଅତି ସହଜରେ ଅସଂଯତ ଆଉ ବିଶୃଙ୍ଖଳିତ କରିପକାଉଛି । ଅଧିକାଂଶ ସ୍ୱାଧୀନତାର ସ୍ୱାଦ ଚାଖିବାକୁ ବ୍ୟାକୁଳ ହୋଇ ଉଠୁଛନ୍ତି । ଜନସଂଖ୍ୟା ବୃଦ୍ଧି ଆଉ ଅଶିକ୍ଷା ଦୁହେଁ ହାତ ଧରା ଧରି ହୋଇ ନାଚି ଉଠୁଛନ୍ତି । ବିଶେଷରେ ଅର୍ଦ୍ଧ ଶିକ୍ଷିତଙ୍କ ଦେହରେ ବୁଦ୍ଧି ଅପେକ୍ଷା ଉଇ ପରି ପକ୍ଷୀ ଲାଗି ଝଡି ପୋକ ପରି ଉଡିବାକୁ ଚେଷ୍ଟା କରୁଛନ୍ତି । କଥାରେ କହନ୍ତି-( ଦୃଢ଼େ ତରନ୍ତି ନାହିଁତ ମୂଢ଼େ ତରନ୍ତି, କିନ୍ତୁ ମଝି ମଝିଆ ବୁଡି ମରନ୍ତି)

ବାସ୍ତବିକ୍ ଆଜିକାଲିର ପ୍ରାୟ ତରୁଣ- ତରୁଣୀ, ଯୁବକ- ଯୁବତୀ, ପ୍ରୌଢତ୍ୱ ପର୍ଯ୍ୟନ୍ତ କେବଳ ଦୂରଦର୍ଶନ ଆଉ ସିନେମାର ଅଙ୍ଗୁଳି ନିର୍ଦ୍ଦେଶରେ ଆଗକୁ ମାଡି ଯାଉଛନ୍ତି । ଏ ଦୁନିଆ ସ୍ୱାର୍ଥପରତା ଆଉ ସ୍ୱେଚ୍ଛାଚାରିତାରେ ବୁଡି ଗଲାଣି । ନା ଅଛି ଗୁରୁଜନଙ୍କୁ ଭକ୍ତି ନା ଅଛି ସମାଜକୁ ଭୟ । ନୂଆମାନେ ପକ୍ଷୀ ଲାଗି ଉଡିଲା ବେଳକୁ, ପୁରୁଣା ମାନେ ସାତ ପୁରୁଷପାଇଁ ସାଇତିବାରେ ଲାଗି ଯାଉଛନ୍ତି । ଅତି ପୁରୁଣାମାନେ ଦୀର୍ଘ ନିଃଶ୍ୱାସ ଛାଡି କର୍ମକୁ ଆଦରି ରହିଛନ୍ତି । ସେଇଥିପାଇଁ ବୋଧେ ମୋର ସେତେବେଳର ନିରୀହ ମୁହଁ ଗୁଡିକ ଆଖି ଆଗକୁ ଚାଲି ଆସୁଛନ୍ତି । ସେତେବେଳେ ନୂଆ ନିରୀହଟିକୁ ପୁରୁଣା ନିରୀହ ବେଳେବେଳେ ନିର୍ଯ୍ୟାତନା ଦିଅନ୍ତି ସିନା,ଅତ୍ୟାଚାର କରିବାର ଚତୁରତା ଜାଣିନଥାନ୍ତି । ଯୌତୁକ ଲୋଭରେ ବୋହୂର ବାପ ଭାଇଙ୍କି ଗାଳି, ବୋହୂକୁ ବାପ ଘରକୁ ନ ଛାଡିବା, କଥା କଥାକେ ନିମୁଳି ଘର ଝିଅ ବୋଲି ଖୁଣ୍ଟଣା ଦେବା ଥିଲା ସିନା, ବଧୂ

ହତ୍ୟା ବା ବୋହୂ ପୋଡି ନଥିଲା । ଦରିଦ୍ର ଦୋଷରେ ବଳାତ୍କାର ଥିଲେ ବି, ନିଜର ଦୋଷ ଲୁଚାଇବା ପାଇଁ ନାରୀ ହତ୍ୟା, ପଦ ପଦବୀ ଲାଳସାରେ ଜନ ହତ୍ୟା ଦାରିଦ୍ର୍ୟର କଷାଘାତରେ ଶିଶୁ ହତ୍ୟା, ଦୈବୀ ଶକ୍ତି ପ୍ରାପ୍ତିରେ ନରହତ୍ୟା, ପ୍ରେମ ଜନିତ ନିଶାରେ ସ୍ୱାମୀର ସ୍ତ୍ରୀ, ବା ସ୍ତ୍ରୀର ସ୍ୱାମୀ ହତ୍ୟା ପରି ଜଘନ୍ୟ ହତ୍ୟାମାନ ଦେଖିବା ତ ଦୂରର କଥା, ଶୁଣିବାକୁ ମିଳୁ ନଥିଲା । ବିଶେଷକରି ସ୍ତ୍ରୀ ଜାତି ଅତି ଦୁଃଖରେ ଅସହ୍ୟ ଯନ୍ତ୍ରଣା ସହି ନପାରି ନିଜର ଜୀବନ ତ୍ୟାଗ କରିଦେଉଥିଲେ ସିନା ଅନ୍ୟକୁ ମାରିଦେବା କଥା ଚିନ୍ତା କରିପାରୁନଥିଲେ । ବିଶେଷ ଭାବରେ ନିଜେ ନିଜର ଆତ୍ମାହୂତି ଦେଉଥିଲେ । ଯଦି ବା କାଁ ଭାଁ ଏପରି ଗୋଟିଏ ଗୋଟିଏ ଅଘଟଣ ଘଟୁଥିଲା, ତେବେ ସାରା ସମାଜ ତାକୁ ଏପରି ଆଙ୍ଗୁଠି ଦେଖେଇ ବତେଇ ଦେଉଥିଲା ଯେ ତୁ ଅମଣିଷ, ତୋର ମଣିଷ ସମାଜରେ ସ୍ଥାନ ବହୁତ ତଳେ । ସେ ବଞ୍ଚୁଥିଲା ସତ, କିନ୍ତୁ ବହୁତ ନ୍ୟୁନ ଅବସ୍ଥାରେ ।

ଏତେବେଳର ସମାଜ ପ୍ରାୟ ଦୁର୍ନୀତିଗ୍ରସ୍ଥ । ତେଣୁ ଜଣକୁ ଗୋଟିଏ ଆଙ୍ଗୁଠି ଦେଖେଇଲେ ନିଜ ଆଡ଼କୁ ତିନୋଟି ଆଙ୍ଗୁଠି ଚାଲି ଆସୁଛି । ବର୍ତ୍ତମାନ ଅପରିଣାମ-ଦର୍ଶିତା ଓ ସ୍ୱେଚ୍ଛାଚାରିତା ଏ ସମାଜର ଶ୍ୱାସ ରୁଦ୍ଧ କରି ବସିଲାଣି । ଶିକ୍ଷା ସହିତ ସଂଯମ ଆଉ ସଂଜତ ଠିକ୍ ରହିଲେ ଏ ଜାତି ରକ୍ଷା ପାଇଯାଆନ୍ତା ।

ବଳ ଯାହାର ରାଜ୍ୟ ତା'ର । ନେଇ ଆଣି ଥୋଇ ଜାଣିଲେ ଚୋରିବିଦ୍ୟା ଭଲରେ ଯାଇଛି । ଆଇନ୍ ଶୃଙ୍ଖଳାତ ସବୁ ପ୍ରତିଷ୍ଠିତ ଲୋକଙ୍କ ହାତ ମୁଠାରେ ।

ଏହି ପୁସ୍ତକ ଖଣ୍ଡିକ ପ୍ରକାଶ ପାଇବାରେ ସମ୍ମାନନୀୟ ପ୍ରବୀଣ ଗାଳ୍ପିକ ଶ୍ରୀଯୁକ୍ତ ବିଜୟକୃଷ୍ଣ ମହାନ୍ତି ଏବଂ 'ପ୍ରିୟପତ୍ର'ର ସମ୍ପାଦକ, ସୁଲେଖକ ଓକିଲ ବିପିନବିହାରୀ ଦଳାଇଙ୍କ ଦାନ ଅତୁଳନୀୟ । ଏହି ଦୁଇ ଜଣଙ୍କର ସାହାଯ୍ୟ ଓ ସହଯୋଗ ଯାହାକି ମୋ ପାଇଁ ଭୁଲିବାର ନୁହଁ । ତେଣୁ ମୁଁ ତାଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ମୁଁ କିଛି ଲେଖା ଲେଖି କରେ ବୋଲି ଯିଏ ସବୁବେଳେ ମୋତେ ଅନୁରୋଧ କରୁଥିଲେ ସେଇ ମୋ' ସ୍ୱାମୀ ଦ୍ୱାରକାନାଥ ଦାସ । ଭକ୍ତିପୂତ ପ୍ରଣାମ ସହିତ ତାଙ୍କରି ପଦ କମଳରେ (ଏଇ ନାରୀ)କୁ ଅର୍ପଣ କରୁଛି ।।

*ପ୍ରଣତା*

**ରମା**

# ସୂଚୀପତ୍ର

# ଶ୍ୱେତାମ୍ବରୀ

ମୁଁ ଉମାଦେବୀ । କଳିଷଠା ଷାଠିଏ । ଗୋଟି ଗୋଟି ହୋଇ ଷାଠିଏଟି ବସନ୍ତ ବିତିଗଲାଣି ମୋ ଉପରେ । ଏଇ କେତେ ଦିନ ହେଲା ନିଃସଙ୍ଗ ଦିନଗୁଡ଼ିକୁ ଛାଡ଼ିଦେଲେ, ବାକି ସବୁ ଜନ୍ମ ଦିନର ଆନନ୍ଦ ମୁଖରିତ ଦିନ ଗୁଡ଼ିକ ଗୋଟି ଗୋଟି ହୋଇ ଧାଡ଼ି ଲଗେଇ ଦଉଡ଼ୁଛନ୍ତି ! ମତେ ଯେମିତି ତା'ପଛକୁ ତା'ପଛ । ସବୁତ ପ୍ରାୟ ମନେ ପଡ଼ୁଛି । ସେଇ ଅବୋଧ ବେଳାର ଚାରି ପାଞ୍ଚଟି ଜନ୍ମଦିନ ଛାଡ଼ି । ସେତ ଅଜ୍ଞାନ ବେଳ । ଯେଉଁ ବେଳାରେ ମଣିଷ ଜ୍ଞାନ ପାଇ ନଥାଏ । ଯେତେବେଳେ ପୂର୍ଣ୍ଣ ଜ୍ଞାନ ପାଇଯାଏ ସେତେବେଳେ ତା' ଉପରେ ଲଦି ହୋଇଯାଏ କେତେ ନାଇ କେତେ ଦାୟୀତ୍ୱ । ସେଇ ଦାୟୀତ୍ୱ ବୋଧଟି କାହାକୁ ଯେ କେଉଁ ବାଟରେ ଭସାଇ ଦିଏ । ବାପ, ମା', ଭାଇ, ଭଉଣୀ, ପୁଣି ସ୍ୱାମୀ, ଶାଶୁ, ଶ୍ୱଶୁର । ସନ୍ତାନ ଆଉ ପରିଜନଙ୍କ ମେଳରେ । ତା'ରି ଭିତରୁ ପିଞ୍ଜରାକୁ ଦୋହଲାଇ, ମୁହଁଟିଏ ଦିଶିଯାଏ । ବାର୍ଦ୍ଧକ୍ୟର ଦୁର୍ଦ୍ଦିନରେ ଚାପି ହୋଇ ଭାଙ୍ଗି ପଡ଼ିଥିବା, ଲୋକଟି ଯନ୍ତ୍ରଣାଦାୟକ ପେଟଟିକି ଚିପି ଧରି, ବାଡ଼ି ଓଳେଇ, ଓଳେଇ, ଏ ଖୁଣ୍ଟରୁ, ସେ ଖୁଣ୍ଟରେ, ଛେଳିମାନଙ୍କୁ ବାନ୍ଧି, କାହାକୁ କେଜାଣି, ଅଭିଶାପ ଦେଇ, ଦେଇ, ଭୁଟୁରୁ, ଭୁଟୁରୁ ହେଉଥିବା, ଶ୍ୱେତମ୍ବରୀର ସେଇ ନାରୀ ଦେହଟି । ସେ କଥା ପଛକୁ ଠେଲିଦେଇ, ପୁଣି ଭାବିଚାଲେ ।

ଏଇ ଜରଦ୍‌ଗବପରି ଜରା ସମୟଟି । ବଡ଼ କଷ୍ଟ ଦାୟକ । ମୁଁ ଚେଷ୍ଟାକରେ ସେତେବେଳଟାକୁ ମନରୁ ତଡି ଦେବାକୁ । ଛାଡ଼, ଶିଶୁ କୈଶୋର, ଯୌବନ, ଜରା, ଏଇ ଚାରି ଅବସ୍ଥାରୁ, ମୋତେ ସେ କୈଶରର ଉମାଟା ସବୁବେଳେ ଅଭିଭୂତ କରି ପକାଏ । ସେ ଆନନ୍ଦ ଆଉ ଏ ଜୀବନରେ ଆସିନି । ଏଇ ବୃଦ୍ଧୀ ଉମାଦେବୀ, ସବୁବେଳେ ଖୋଜନ୍ତି ସେଇ କିଶୋର ବେଳର ନବ କିଷଳୟ ଭରା ଦିନଗୁଡ଼ିକ । ଯେଉଁଠି ଟିକେ ମାତ୍ର ଦୁଃଖର ସ୍ପର୍ଶ ନଥାଏ । ଖାଲି ଆନନ୍ଦ ଆଉ ଆନନ୍ଦ ସେତେବେଳେ ମୁଁ କିଏ ? ସେ ମୁଁ'ଟି ହୋଇଥାଏ ଆଉ ଜଣଙ୍କର, ସେଇ ମୁଁ'ଟା ଚଳ ଅଂଚଳ ହୁଏ [illegible] ନିର୍ଦ୍ଦେଶରେ । ଟିକିଏ ଯେମିତି ବେମାର ହେଲେ, ସବୁ [illegible] ଆଉ ତଳକୁ ଓହ୍ଲାଇବନି । ନ ଖାଇ ରାତିରେ ଶୋଇ ପଡ଼ିଲେ, [illegible], ଖୁଆଇ ମୁହଁ ଧୋଇ ଶୁଆଇଦିଏ । ରାତିରେ ଖାଇନି ବୋଲି ସକାଳୁ [illegible] ମନେ ପକାଇ ଦେବାକୁ [illegible]

ଉପରଓଳି । ବିଶେଷ କରି କେଉଁଠି ଖେଳୁଛି, କେଉଁଠି ବୁଲୁଛି, କ'ଣ କରୁଛି ? ଦୁଇଟା ସତର୍କ ଆଖି, ସତେ ଅବା ପଛେ, ପଛେ ଧାଇଁଥାଏ । ଏମିତି ନିରାପଦ ଜୀବନ । କାଇଁ ଆଉତ କେବେ ଆସିନି । ସେଥିପାଇଁ ଏଇ ମନଟା, ସବୁବେଳେ ତା'ରି କୋଡ଼କୁ ଧାଇଁ ଯାଏ । ସେଇ ବୋଉ ତାରି ବଳୟ ଭିତରେ ଏ ମନଟା ଆବଦ୍ଧ ହୋଇଯାଏ । କାରଣ ସେଇଟା ନିରୁ ତା' ସୁଖମୟ ଜୀବନ । ତା'ପର ସୁଖ ଦୁଃଖର ଗୋଳିଆଘଣ୍ଟା ଜୀବନଟା ଆଉ ଶୁଭଙ୍କର ଲାଗେନି । ଟିକିଏ ସୁଖ ଚିନ୍ତାକଲେ, ଦୁଃଖଗୁଡ଼ାକ କୁଆଡୁ ମାଡ଼ିଆସି, ଜାଲ ଘେରେଇ ବାନ୍ଧି ପକାଏ ।

ସେଇଥିପାଇଁ ସେ କିଶୋରୀ ମନ ଭିତରେ, ଆକତା ମାକତା ହେବାକୁ ଭଲ ପାଉଥିଲା ସେତେବେଳର ଉମା । ଆଜିର ଉମାଦେବୀ, ବୁଡ଼ିଯାଆନ୍ତି ପୁଣି ଭାବନା ରାଜ୍ୟରେ । ସାଙ୍ଗ ସୁଖଙ୍କ କଥା ଭାବିଲାବେଳେ, ସେହି କୁନି ଉମାର ନାନୀ ଦି'ଟା ଠିଆ ହୋଇଯାଆନ୍ତି ଦୁଇପଟରେ । ସେଇ ବଡ଼ନାନୀ ବରଦା ଯାହା କହନ୍ତି କେଞ୍ଝେଡ଼ି ପାକଳ । କେଡ଼େ ପିଲାଦିନୁ ସେ କେଡ଼େ ଜାଣିବାର ଯେ, ମୁଁ ଯେମିତି ତା' ପାଖ ମାଡ଼ିପାରିବିନି । କିନ୍ତୁ ସାନ ନାନୀ ମନ୍ଦିରାଟା, ଖାଲି ସହୋଦରା ନୁହେଁ ସାଙ୍ଗ ବି । ମୁଁ ତା' ଜୀବନ ହେଲେ ସେ ମୋ' ପ୍ରାଣ । ବୋଉ ବଡ଼ନାନୀକି ଶାସନ କରେ ସିନା, ତା' ଚାଲାକିରେ ହାର ମାନିଯାଏ । ସେ ଯେ କୌଣସି କୌଶଳରେ, ବୋଉକୁ ତା' କଥାରେ ମନେଇନେବ ।

ଆଗରେ ବିଗିଡ଼ିଲେବି, ପଛରେ ବୋଉ ତାକୁ ତାରିଫ୍ କରୁଥିବ । ଖାଲି ଘରେ ନୁହେଁ, ବଡ଼ଠୁ ସାନ କାମଯାଏ, ସେ ଚାରି ସାହିର ମୁରବି । ମାଇପି ମହଲରେ ବରୋଦା ନାନୀ କାଟେତି ବେଶି । ଯଦି କେଉଁ ଆଖପାଖ ଗାଁକୁ ଦାସକାଠିଆ କି ଯାତ୍ରାଦଳ ଆସିଲା, ଆଗ ଖବର ପାଇବ ବଡ଼ନାନୀ । ଆଗ ବୁଝିଯିବ ସେମାନେ କେଉଁ କେଉଁ ସୁଆଙ୍ଗ କରୁଛନ୍ତି । କେତେଜଣ ଆସିଛନ୍ତି । ତାଙ୍କର ରାତିକି ପାଉଣା କେତେ ? ପୁଣି ବଡ଼ କାମ ହେଲା, ସାହିର କିଏ ପରିବାର ବାହାରେ ଅଛନ୍ତି । ତାଙ୍କ ଘର ଚାବି କାହା ପାଖରେ । ବେଶ୍ ସେତିକି । ସେ ଯାତ୍ରା ନିଶ୍ଚୟ ଆମ ସାହିରେ ହେବ । ସବୁ ଭାଉଜ, ଖୁଡ଼ି, ଦେଠେଇ, ମା', ମାଉସୀଙ୍କି ଲଗେଇ, ଆଗ ପଇସାଟା ଉଠେଇଦିଏ । ଦାସକାଠିଆ ହେଲେତ ଚିନ୍ତା ନାହିଁ । ମାତ୍ର ଦି'ଜଣ ନାଚିବେ । ମଜୁରୀ ପୁଣି ଦି'ଟଙ୍କା । ଯାତ୍ରା ଦିନ କାହାଘରେ ଖାଇବେ । ଆଉ ରହିବାକୁ ତ ନଥିବା ଲୋକର ଦାଣ୍ଡଘରଟି ଯଥେଷ୍ଟ । କିନ୍ତୁ ଅନ୍ୟ ସୁଆଙ୍ଗ ଦଳ ଆସିଲେ, ନାନୀ ଟିକିଏ ଚିନ୍ତାରେ ପଡ଼ିଯାଏ । ଯାତ୍ରା-ପାଟି, କେଳା-କେଳୁଣୀ, ପାଟୁଆନାଚ, ରାମଲୀଳାଦଳ, ଏମିତିମାନଙ୍କର ଖର୍ଚ୍ଚ ଟିକିଏ ବେଶୀ । ସେଇ ଅଣ୍ଟ-ନିଅଣ୍ଟ ପାଇଁ, ନାନୀ ଲାଗିଯାଏ ବୋଉ ସାଙ୍ଗରେ । ବୋଉକୁ ବାର ପ୍ରକାର ନଜିର୍ ଦେଖାଇ କହିବ, ଦେଖିଲୁ ପାରି ଭାଉଜର କେହି ନାହିଁ । ତା'ଘରେ ଦି'ଜଣ ଖାଇବେ । ସେ ପୁଣି ଟଙ୍କେ ଚାନ୍ଦା ଦେବ ବୋଲି କହିଛି । ସେ ବାରମ୍ବାର କରି କହିଛି ଝିଅ, (ମୁଁ ପକେଇଲା ଛେପ ଢୋକିବିନି) ନିଶ୍ଚେ ଦେବି ଯେ, ଏଇଲେ ନାହିଁ । ତୁ ଚଳେଇ ନେଉଥା । ଆଉ

ପଡ଼ାକୁ ନଡ଼ିଆ ତୋଳା ହେଲେ ଦେବି । ପାରି ଭାଉଜ ପରି ଏମିତି ଅନେକେ ପ୍ରତିଶ୍ରୁତି ଦିଅନ୍ତି । ନାନୀ ବୋଉ ସଙ୍ଗେ ଲାଗି କାମ ଚଳେଇନିଏ । ''(ଭିଆ ସଇଲେ ଦେବୀ ମୁହଁ ପୋଡ଼ପରି)'' ଅନେକ ପକେଇଲା ଛେପ ଢ଼ୋକି ଦିଅନ୍ତି । ଅନେକ ସୁଆଙ୍ଗକୁ ସମାଲୋଚନା କରି ତୁନି ରହିଯାଆନ୍ତି । ସେକଥା ପରେ ନାନୀ ଆଉ ବୋଉ ଦୁହେଁ ଭୁଲି ଯାଆନ୍ତି ।

ପୁଣି ଆରଥରକୁ ବୋଉ ବିଚାରୀ ବିରକ୍ତ ହୋଇ କହିବ, ଏ ଯାତ୍ରା ସେ ଦଳଙ୍କର ନୁହେଁ ଯେ, ସବୁ ଯାତ୍ରା ତୋରି । ତା' ସାଙ୍ଗକୁ ଆସି ପହଞ୍ଚିଯାଏ, ବାଣପୁରିଆ ସୁନାବେପାରୀ ସହଦେବ ପାତ୍ର । ସେ ଆସି ବସିବ ଆମରି ପିଣ୍ଡାରେ । ହସ, ହସ ମୁହଁରେ ଆଗ ଖୋଜିବ, ବରୋଦା ମା' କାହାନ୍ତି କି ? ପୁଣି ଚାଲିଲା ନାରୀ-ମହଲର ଭଙ୍ଗା-ଗଢ଼ା ଆନ୍ଦୋଳନ । କାହାର ଶାଶୁ ଅମଳର କାପ-ଗଣ୍ଡିଆତ, କାହାର ଫିରି-ଫିରା, କାହାର ବଉଳି-ଫାଶିଆ, ମଲ୍ଲି-କଢ଼ରୁ, କାନ-ଅଳଙ୍କାର ସହିତ ଲୋଥ, ଗୁଣା, ବସୁଣୀ, ଦଣ୍ଡୀ, ନାକ ଅଳଙ୍କାରଗୁଡ଼ିକର ରୂପ ବଦଳାଇ ଦିଏ ନାନୀ । ଟିକିଏ ବଇଶିଆ ମାଇପିଙ୍କର କାନଫୁଲ, କାନ ଫାଶା, ସାଧା କି ପଥରବସା ନାକ ଫୁଲ । ବୟସ ଥିଲାବାଲାଙ୍କର କାନ ଫୁଲପେଣ୍ଡୀ, ପ୍ରଜାପତି ଡୁଲ, ଝରାଲଗା କାନ ଫାଶା, ନାକର ଆମ୍ବଡ଼ାଳି ଠାରୁ ମାଛି ପର୍ଯ୍ୟନ୍ତ । ସବୁରି ରୂପକୁ ରୂପାନ୍ତର କରାଇଦିଏ, ନାନୀ ସାହାଯ୍ୟରେ, ସହଦେବ ପାତ୍ର ।

ବୋଉ କିନ୍ତୁ ଭାରି ବିଗିଡ଼େ । ମୁହଁ ଫଣ-ଫଣ କରି ନାନୀକି କହେ, ଦେଖ୍ ତୋ'ର ଏ ଫାଜିଲାମି ଗୁଡ଼ାକ ମୋତେ ଜମା ଭଲଲାଗୁନି । ତୁ କ'ଣ ତାଙ୍କ ମୁରବୀ । ତାଙ୍କର ବରମାନେ ଘରେ ଅଛନ୍ତି ? ମୁରବୀ ଶାଶୁ-ଶ୍ୱଶୁର ଅଛନ୍ତି । ତୁ କ'ଣ ଓଜନ ଜାଣୁ ? ବଣିଆ ପାଟିରେ ସୁନା ଶୋଶିନେଇ ପାଇଖିନାରେ କାଢ଼େ । କଥାରେ ଅଛି, ''(ବାଘ ନ ଦେଖିଲେ ବିରାଡ଼ି ଦେଖ । ଠକ ନ ଦେଖିଲେ ବଣିଆ ଦେଖ)'' ନାନୀ ବଡ଼ ନ୍ୟାହିଲି-କୋଇଲି ହୋଇ କହେ, ବୋଉ ଏକଥା କିଏ ନ ଜାଣେ କହିଲୁ ? ତାଙ୍କ ବର-ଘର ରାଜି ନ ହେଲେ କ'ଣ ? ସେମାନେ ମୋତେ କହନ୍ତେ ? ଚତୁରତା ଭରା ଭଙ୍ଗିରେ କହେ ।

ମୁଁ ତାଙ୍କୁ ଆଗରୁ କହିଦେଇଥାଏ ପରା । ସେଇ ସହଦେବ ଆଗରେ ସେମାନେ ମୋତେ ପଚାରନ୍ତି । ସୁନା ଭଲଟି ? ମୁଁ ତାଙ୍କୁ କହେ, ଆମ ବଣିଆ-ସାହିର ବୁରୁନ୍ଦା ବଣିଆକୁ ଡକେଇ, ଭଲ-ମନ୍ଦ ଦେଖି ନେବାନି ? ସହଦେବ ପାତ୍ରଟା ବଣିଆ ନୁହେଁ ଲୋ ? ସେ କୁମୁଟି ବେପାରୀ । ଭଲ ଜିନିଷ ଦେଖି କିଣିଆଣି ବେପାର କରେ । ସେ କ'ଣ ଗଢ଼େ ? ମଜୁରୀରେ ଯାହା ତାହାର ଲାଭ । ଭାରୀ ଭଲ ଲୋକ । ମୁଁ ତା' କଣ୍ଠକୁ ବରାବର ଚାହିଁଥାଏ । ବୋଉ ବିଗିଡ଼ା ମୁହଁରେ କହେ, ସିଏ ତୋର ଶ୍ୱଶୁର । ନାନୀ ହସି ଦେଇ କହିବ, ତା'ହେଲେ ତ ଆଉ ଜମା ଠକିବନି । ବୋଉ ଚାଲିଗଲା ପରେ, ନାନୀ ପୁଣି ଲାଗିଯାଏ ତା' କାମରେ । ରୂପାର ବଳା, ପାହୁଡ଼, ଘାଗୁଡ଼ି, ଗୋଡ଼ ଖଡୁ, ଗୁଡାଡ଼

ପାଏ, ସବୁ ପାଉଚ୍ଛିରେ ହିଁ ପରିଣତ ହୋଇଯାଏ । ସାଗୁ ପାଉଁଛି, ଝରା-ପାଉଁଛି ବ୍ୟାଟ
ଦିଆ ବାଙ୍କେଣୀ ପାଉଁଛି, ଯାହା ବୟସକୁ ଚାହିଁ ନାନୀର ପସନ୍ଦ ଅନୁସାରେ କିଣାହୁଏ
ନାନୀ ବୋଉକୁ ବୁଝେଇ ଦିଏ, ରୂପା ଜିନିଷରେ କେତେ ଠକିବ ? ଠକିଲେ ମାଣ୍ଡ ଚାରି
ଟଙ୍କା ଠକୁଥିବ । ଲୁଗା ଖଣ୍ଡେ କିଣି ପିନ୍ଧିଲେତ, କପାସିଆ ଛ-ମାସିଆ । ପୁଣି ଛ'ମାସରେ
ଚିରି ଯାଉଛି ? ଏ ସହଦେବ ପାତ୍ର ସବୁବେଳେ ଆସୁଛି ପରା । ବୋଉ ପୁଣି ତା'ର
ସ୍ୱଭାବ-ସୁଲଭ ଢଙ୍ଗରେ କହେ, ତୋ'ସହଦେବ ପାତ୍ର ଲାଗି, ଆମ ବଣିଆ ସାହିର,
ବଣିଆ ବଉଁଶ ଲୋପ ହୋଇଯିବେ । ସେମାନେ ପୁଣି କ'ଣ ଖାଇବେ ? ନାନୀ ତତ୍‌କ୍ଷଣାତ୍
ଉତ୍ତର ଦିଏ, ଆଲୋ ରୂପା-କାଟ, ରୁପା-ଖଡୁ, ଗୋଡ଼-ମୁଦି, ଅଣ୍ଟା-ବିଛା, ଏ ଛୋଟିଆ
ଜିନିଷଗୁଡ଼ାକ ସେ ଗଢ଼ିବେନି ? ବୋଉ ତା' କଥାରେ ଚୁପ୍ ହୋଇଯାଏ ।

ଏଇ କାରବାର ବେଳେ, ଏପଟ-ସେପଟ ହେଉଥିବା, ଗୋଟିଏ ଚଞ୍ଚଳିଆ ମୁହଁ ଭାସିଉଠେ, ସାନ-ନାନୀ ମନ୍ଦିରାର । ମୋ' ସାନ-ନାନୀଟା ଗୋଟେ ହୁଣ୍ଡୀ କହିଲେ ଚଳେ । ସେ ନବାବ ପୁଅକୁ ଜବାବ ଦେବ । କହା ଧୋଇରେ ନାହିଁକି ମରୁଡ଼ିରେ ନାହିଁ । ଯାହା ତା' ମନ ହେବ ସେ ନିଶ୍ଚୟ କରିବ । କିନ୍ତୁ ମୁଁ ଭାରି ଚୁପ-ସଇତାନ । ଜାଣ ତା'ପାଇଁ ଗୋଟେ ଗୁପ୍ତଚର । ଆମେ ତଳ-ଉପର ନା, ସେ ହୁଣ୍ଡୀ ମୋତେ ସାଙ୍ଗରେ ନ ନେଲେ ପାଦେ ଆଗକୁ ଯିବନି । ଚବିଶି ଘଣ୍ଟା ତା' ପାଟି ଚୁଲୁଥିବ । କିନ୍ତୁ ବିଷରୁ-ଅମୃତ ଯାଏଁ ଯାହା ଖାଉଥିବ, ସେଥିରୁ ମୋର ଅଂଶ ନିଶ୍ଚୟ ରଖିଥିବ । ନାନୀ ନଈ ପହରାରୁ, ଗଛଚଢ଼ା ଯାଏଁ ସବୁଥିରେ ଧୁରନ୍ଧର । ବୋଉ ସିନ୍ଦୁକରୁ ଦି'ଟା ପଇସା ଖସେଇବାକୁ ଥିଲେ, ମୁଁ ତା' ସାଙ୍ଗରେ ନିଶ୍ଚୟ ଥିବି । ବୋଉ କେତେବେଳେ କାନିରେ ପଇସା ବାନ୍ଧି ଭୁଲିଗଲେ, ମୁଁ ନାନୀକି ବତେଇ ଦେବି । ଗାଁ ମୁଣ୍ଡ ଚାଉଳିଆ ଲୋକା ଘରକୁ ଚାଉଳିଆ କିଣି ଗଲେ, ମୁଁ ତା'ସାଙ୍ଗରେ ଯିବି । ଆଉ ବେଳେ ବେଳେ, ଏଇ ଚାଉଳିଆଟାକୁ କାହିଁକି ଆଣିଲୁ ? ମୁଁ କହୁଥିଲି ସେଇଟାକୁ ଆଣିଲୁନି ବୋଲି, ମନ ଟିକିଏ ଅମେଳ ହେଲେ, ତା' ନାଁରେ ବୋଉକୁ ସିଧା ରିପୋର୍ଟ କରିବି । ଯଦି ଗଛରେ ଚଢ଼ି ଅନ୍ୟ ସାଙ୍ଗକୁ, ମେହେଙ୍ଗା-କୋଳି ଦି'ଟା ତୋଳି ଦେଲାକି ? ନଈରେ ପହଁରି କାହା ପାଇଁ କଇଁ ଫୁଲ ଦି'ଟା ଆଣିଲା, ମୋର ରାଗତ, ପଞ୍ଚମକୁ ଉଠିଯାଏ । ସତେ ଯେମିତି ତା'ପାଖରେ ମୋର ଗଚ୍ଛିତ ଥିବା ସମ୍ପତ୍ତିକି, ସେ ଆଉ କାହାକୁ ଦେଇ ଦଉଛି ପରି ମୋତେ ଲାଗେ । ମୁଁ ଜମା ସହି ପାରେନି ।

ଏମିତି ଜମେଇ ବୋଉକୁ କହିବି ଯେ, ବୋଉଲୋ ! ଆଜି ଆଉ ତୋ' ଝିଅକୁ ଦେଖି ନଥାନ୍ତୁ । ତା'କୁ କୁମ୍ଭୀର ଖାଇଥାଆନ୍ତା କି, ଆମ ମାହାନ୍ତି ସାହି ରାଜୁ ମହାନ୍ତି ପରି, ବୁଡ଼ି ମରିଥାଆନ୍ତା । ସବୁଦିନତ ମୁଁ ବୋଉର କୋଡ଼ପଟେ, ସେ ବୋଉର ପିଠି-ପଟେ ସୁଏ । ତାକୁ ନିଦ ଲାଗିଗଲେ, ବୋଉକୁ ଚୁନି ଚୁନି କହେ, ଆଜି ଏଡ଼ିକି ଉଚ୍ଚ ଗଛରେ ଚଢ଼ିଥିଲା ଲୋ ! ଯଦି ଟିକିଏ ଆଉ ଗୋଡ଼ ଖସିଯାଇଥାଆନ୍ତା, ଗୋଡ଼ ହାଡ଼ ଭାଙ୍ଗି ମେଞ୍ଚା ହୋଇ ଯାଇଥାଆନ୍ତା । ଗୋଡ଼ ଖସୁ ଖସୁ ଭଗବାନେ ରଖିଦେଲେ ବୋଲି

ସିନା ? ଦେଖତ୍ ବୋଉର ରାଗ । ଯାହାତ ତାକୁ ଶାସନ କରିବ କରିବ, ତା' ସାଙ୍ଗେ ସାଙ୍ଗେ ମୋ' ପ୍ରଶଂସାରେ ସତମୁଖ ହୋଇ ଉଠିବ । ମୁଁ ତ ବୋଉର ବୋଡ଼ପୋଛା ଗେଲ ବସର ଝିଅ । ତେଣୁ ମୋତେ ଯେତେ ବୟସ ହେଲେ ବି ବୋଉ ଜାଣି ପାରେନି । କହିବ ଏଡ଼ିକି ବକଟେ ପିଲା । ତା'ର ଯାହା ବୁଦ୍ଧି, ତୁ ଦରବୁଢ଼ୀ ହେଲୁଣି, ତୋ' ବୁଦ୍ଧି କୁଆଡ଼େ ପୋଡ଼ି ଯାଉଛି ?

ବୋଉ ଆମର ଗାଳି ଦେଲାବେଳେ ନିଶ୍ଚୟ, ସବୁରି କିଛି କିଛି ବୟସ ବଢ଼ିଯାଏ । ସେମିତି ଖାଲିରେ ସାନ ନାନୀ, ମୋଠାରୁ ଜମା ଦି' ବରଷ ବଡ଼ । ମୁଁ ବକଟେ ପିଲାବେଳକୁ ସେ ବୋଉ ଗଳିରେ ଦରବୁଢ଼ି ହୋଇଯାଏ । ହେଲେ ବି କିଏ ଶୁଣେ । ସେ ବଢ଼ିଆ ବେପରୁଆ ଝିଅଟେ । ଏତେକଥା ପରେ ବି ସବୁ ଭୁଲିଯାଏ । ଧନ ଉମି, ଉମୁଲୋ, ବୋଲି ମୋତେ ସାଙ୍ଗରେ ନେବା ନିଶ୍ଚିତ । ସାଙ୍ଗ-ସୁଖ ମେଳରେ, ଆମ୍ବ ଛେଚା କି କଇଁଆ ଚଟଣୀ ଟିକିଏ କଲେ, ମୋ' ଭାଗ କେମିତି ଟିକିଏ ଅଧିକ ହେବ ବୋଲି, ସାଙ୍ଗମାନଙ୍କୁ ତୁନି ତୁନି କହିବ । "(ଖେଣ୍ଟେଇ ଖେଣ୍ଟୁଣୀ ଲାଉ ସାଗ, ଖେଣ୍ଟେଇକି ଦିଅ ବଡ଼ଭାଗ, ନହେଲେ ଖେଣ୍ଟେଇ କହିଦେବ)" ମୋ' କାନ ଦି'ଟାତ ସବୁବେଳେ ତାରି ପଟକୁ ପିଛା କରିଥାଏ । ମୁଁ କି ଯା'ପରେ ଆଉ ସମ୍ଭାଳେ ? ରାଗ ତମ ତମରେ ଯେମିତି ଉଠିବି, ଦେଖତ ନାନୀ ସହିତେ ତା' ସାଙ୍ଗମାନଙ୍କର ଖୁସାମତ । କିଏ ହାତ ଭିଡ଼ି ଡ଼ରିଥିବତ, କିଏ କୁଣ୍ଡେଇ ପକେଇ, ମୁହଁ ପିଠି ଆଉଁସି ଦେଉଥିବ । କିଏ ଏକାଥରେ ରାଣ ପକାଇ, ଦୁଆର ମୁହଁରୁ ଓଟାଳି ଧରିବ । କେଜାଣି କାହିଁକି ଏ ସବୁଥିରେ, ମୋତେ ଭାରି ଆନନ୍ଦ ଲାଗେ । ସବୁ ସବୁଳେ ଟିକିଏ କିଛି ପାନରୁ ଚୁନ ଖସିଗଲେ ବୋଉକୁ କହିବାର ଧମକ ଦେଇ ତାକୁ ଡରେଇବା ମୋର ଅଭ୍ୟାସ ।

ଆଉ ଟିକିଏ ବୟସ ବଢ଼ିଯିବା ସଙ୍ଗେ ସଙ୍ଗେ ନାନୀର ବଡ଼ ସାଙ୍ଗମାନେ କଟିଯାଇ, ନାନୀ ସହିତେ ଅନ୍ୟ ସାଙ୍ଗଗୁଡ଼ାକ ସମସ୍ତେ ମୋର ହୋଇଗଲେ । ଯୁଆଡ଼େ ଯିବୁ ଦୁମ ଦୁମ ହୋଇ ଧାଡ଼ିଏ ଝିଅ ଦଉଡ଼ୁଥିବୁ । ଆମ ପଡ଼ିଶାଘର ଦଦେଇ ଥା'ନ୍ତି ଭାରି ଚିଡ଼ି ଚିଡ଼ା, ନବେ ବର୍ଷର ବୁଢ଼ା । ତାଙ୍କ ଘର ଭିତରେ ପଶି ଦାଣ୍ଡକୁ ଦଉଡ଼ି ପଳେଇଲେ କି, ତାଙ୍କ ଦାଣ୍ଡ କମଳା ଗଛରୁ ଗୋଟେ କଣ୍ଟା ଭିଡ଼ିନେଲେ, କେଉଁକାଳରୁ ଦାଣ୍ଡରେ ଗଦା ହୋଇ ମାଟିରେ ମିଶି ଯାଇଥିବା, ଖୁଣ୍ଟେଇଖେଳ ପାଇଁ କଳା ଗୋଡ଼ିରୁ ପାଞ୍ଚୋଟି ନେଇଗଲେ, ବୁଢ଼ାଙ୍କ ରାଗ ବ୍ରହ୍ମ ଚଣ୍ଡାଳ ହୋଇଯାଏ । ବୁଢ଼ା ଥର ଥର ପାଟିରେ ଗର୍ଜି ଉଠି କହନ୍ତି, ଏଥିରୁ ଚାରିହଳ କଣ୍ଟ-ତରୁଣୀଝିଅ, ମଣିଷକୁ ଆଉ ରଖେଇ ଦେବେନି । ଆମ ଘରୁ ଏଥିରୁ ଯୋଡ଼େ, ଶୋଭା-ଉଷା, ଆଗଦୁଆରୁ ମଧୁ ହୋତାର ଯୋଡ଼େ, ଚାନ୍ଦ-କନକ । ନରହରିର ଯୋଡ଼େ ତାରା-କୁନ୍ତଳା । ଆଉ କଣ୍ଟର ଯୋଡ଼େ ଉମା-ମନ୍ଦିରା । ଆଉ ମାଙ୍କ ସାଙ୍ଗେ ଗୋଟିକିଆ କ'ଣ କମ ? ନିଆସୀ, ରମା, ହାରା, ନିଶା ଏଗୁଡ଼ାକ

ଯୁଆଡ଼େ ଯାଉଛନ୍ତି, ଧାଡ଼ିଏ ମାଲଗାଡ଼ି ପରି ଘର ଦୁମୁକୁ ଉଠୁଛି । ରହ ତୁମ ବାପାମାନଙ୍କୁ କହି ତୁମକୁ ସାଧ୍ୟ କରୁଛି ।

ଏ ଗାଳିରେ ଆମର ଭୟ ବଦଳରେ, ତାସଲ୍ୟ ଥାଏ ଅଧିକ । କାରଣ ନବେ ବର୍ଷର ବୁଢ଼ା । ଅଥର୍ବ ଗୋଟିଏ ଶାଗୁଣା ପରି କେବଳ ବସି ରହି, କଟର କଟର ହେଉଥାନ୍ତି । ସ୍ତ୍ରୀ ତ ବହୁ କାଳରୁ ବିଦାୟ ନେଇଛନ୍ତି । କିନ୍ତୁ ଦୁଇ ପୁଅଙ୍କ ଖାତିରିରେ, ବୋହୂ ଦୁହେଁ, ଅତି ଭକ୍ତିର ସହିତ ସେବାଯତ୍ନ କରୁଥାନ୍ତି । ଧରା ଧରି କରି ଦାନ୍ତ ଘଷେଇବା ଠାରୁ ଶୁଆଇବା ପର୍ଯ୍ୟନ୍ତ ସବୁ କାମ ସାରି ନିଦ ଲାଗିବାଯାଏଁ, ଦାଣ୍ଡ ପିଣ୍ଡାରେ ଆରାମ ଚଉକିରେ ବସେଇ ଦେଇଥା'ନ୍ତି । ବୁଢ଼ା ପୁଣି ଭୟଙ୍କର ଶ୍ୱାସ-ରୋଗୀ । ଟିକିଏ ଗର୍ଜି କଥା କହିଲେ ଅଧଘଣ୍ଟେ ପେଲି ହୁଅନ୍ତି । ମୋତେ ସେ ବୁଢ଼ା ଜମା ସୁଖ ଲାଗନ୍ତିନି । ମୁଁ ବେଳେ ବେଳେ ଶୋଭାକୁ କହେ ଶୋଭା ଲୋ ! ତୋ' ବାପା ମରିଯାନ୍ତେ ହେଲେ, ଶୋଭା ବିଚାରୀ ସାଙ୍ଗେ ସାଙ୍ଗେ ମୁହଁ ଶୁଖାଇ କହେ, କାହିଁକି କ'ଣ ହେଲାକି ? ମୁଁ କଥାର ମୋଡ଼ ବଦଳାଇ କହେ, ଶ୍ୱାସ ରୋଗରେ କେତେ଼ କଷ୍ଟ ଭୋଗୁଛନ୍ତି ଦେଖି ସହି ହେଉନି । ଆସିତ ନବେ ବର୍ଷ ହେଲାଣି । ଆଉ କାହିଁକି ଭଗବାନ କଷ୍ଟ ଦେଉଛନ୍ତି । ଶୋଭା ଯେତେ ମୋ' କାଥାକୁ ମାନିନେଲେ ବି, ତା' ବାପାଙ୍କ କଥାରେ ସେ ବୁହଁଟିକୁ ଶୁଖାଇ ଦେଇ, ଆଖି ଦୁଇଟି ଛଳ, ଛଳ କରିଦିଏ ।

ମୋ ମନଟା ବି ଟିକିଏ ଦୁଃଖି ଦୁଃଖି ହୋଇଯାଏ । ମୁଁ ଦିନେ ତାକୁ ମୋ'ଅଜା କହିଥିବା ଗୋଟିଏ ମଜାକଥା କହି, ତା' ମନଟାକୁ ଭୁଲାଇ ଦେବାକୁ ଚେଷ୍ଟା କଲି । ମୁଁ କହିଲି ଆଲୋ ଶୁଣ, ଆମ ଅଜା କହୁଥିଲେ, ସତ୍ୟ ଯୁଗରେ ମଣିଷର ଆୟୁଷ ଥିଲା ଶହେଅଶୀ ବର୍ଷ । ଯେମିତି କଳିଯୁଗ ହେଲା, ଯମ ସେ ଆୟୁଷ ଟିକକ ନେଇ ସମସ୍ତଙ୍କୁ ବାଣ୍ଟିବାରେ ଲାଗିଲା । ଆଗ ଘୋଡ଼ାକୁ ଦେଖି ତାକୁ ଚାଳିଶ ବର୍ଷ ହେଇଦେଲା । ତା'ପରେ ବଳଦକୁ ବି ଚାଳିଶ ବର୍ଷ । ପୁଣି କୁକୁରକୁ ବି ଚାଳିଶ ବର୍ଷ । ପଛରେ ଶାଗୁଣାକୁ ଦେଖି ତାକୁ ଯେମିତି ଚାଳିଷି ବର୍ଷ ଦେଇଛି, ଏ ମଣିଷ ଜାଣିପାରି ଯମ ପାଖେ ପହଞ୍ଚିଲା ବେଳକୁ ଆଉ ମାତ୍ର କୋଡ଼ିଏ ବର୍ଷ ବଳିଛି । ମଣିଷ ମାଗିବାରୁ ତାକୁ ମାତ୍ର କୋଡ଼ିଏଟି ବର୍ଷ ଦେଲା । ମଣିଷ କାନ୍ଦି ବୋବେଇ ଯମ ପାଖେ ଗଡ଼ାତଡ଼ା କଲା । କହିଲା ଆଜ୍ଞା କୋଡ଼ିଏ ବର୍ଷତ ମୋର ବାଳକାଳ । ମୁଁ ଆଉ କେତେବେଳେ କ'ଣ କରିବି ? ଯମ ସେଠୁ ବ୍ୟସ୍ତ ହୋଇ କହିଲା ତାହାଲେ ତୁ ଯାଆ ।

ଶୋଭା ସତେ ଯେମିତି ମୋ କଥାଗୁଡ଼ାକ ଆଁ କରି ଗିଳିଯାଉଥାଏ । ତା' ମନଟା ପୁରାପୁରି ପରିବର୍ତ୍ତନ ହୋଇଯିବା ଦେଖି, ମୁଁ ମହା ଆନନ୍ଦରେ ପୁଣି ଗପ ଜମେଇ ଦେଲି । କହିଲି ମଣିଷ ଯମଠଉଁ ସେତକ ଶୁଣି ଦଉଡ଼ିଲା । ଘୋଡ଼ା ପାଖକୁ । ଘୋଡ଼ା ମଣିଷ କଥା ଶୁଣି ଭାରି ଖୁସି ହୋଇ କହିଲା, ଭାଇ ମୋତେ ରକ୍ଷା କଲୁ । ମୁଁ ତ ଦିନଯାକ

ଧାଇଁବି । ରାତିରେ କାଳେ ଆଣ୍ଠୁ ଭାଙ୍ଗି ଶୋଇପଡ଼ିବି ବୋଲି ଆଣ୍ଟୁରେ ମାଲିକ କଟ କଟି ବସେଇଦବ । ଆଣ୍ଠୁଭାଙ୍ଗି ଶୋଇ ପଡ଼ିଲେ କୁଆଡ଼େ, ମୋ ଦଉଡ଼ାର ବେଗ କମିଯିବ । ଭାଇ କୋଡ଼ିଏ ବର୍ଷ ହେଲେ ଠିଆରେ ଶୁଏ । ତୁ ଆଉ କୋଡ଼ିଏ ବର୍ଷ ମୋଠୁ ନେଇଯାଆ ।

ମଣିଷ ଏତେ ସୁବିଧାରେ ବୟସତିକ ପାଇ, ପୁଣି ଦଉଡ଼ିଲା ବଳଦ ପାଖକୁ । ବଳଦବି ଠିକ୍ ସେମିତି କହିଲା । ମୁଁ ତ ଅଣ୍ଡିରା ନୁହଁ କି ମାଈ ନୁହେଁ, ହଡ଼ା ହେବା ଯାଏଁ ଭଡ଼ା ବୋହି ବୋହି ଜୀବନ ସରିଯିବ । ଯେତେ ତଞ୍ଚଳ ପାର ମୋର କୋଡିଏ ବର୍ଷ ନେଇଯାଅ । ମଣିଷର ଲୋଭ ତ ବେଶୀ, ସେ ଯାଇ ପୁଣି କୁକୁର ପାଖେ ପହଞ୍ଚିଲା । କୁକୁର ବି ସେହିଭଳି ବେକକୁ ଦେଖାଇ କହିଲା, ଦେଖ ଭାଇ ! ଦିନ ଯାକ ବେକରେ ଫାଶି ଲଗା ହେବ । ରାତି ଯାକ ଅନିଦ୍ରା ହୋଇ ଚୋର ଜଗା ହେବ । ଏ କଳବଳରୁ ଅଧେ ବୟସ ନେଇଯାଅ । ସବୁରି ଆଗ୍ରହ ଦେଖି, ମଣିଷ ଯାଇ ଶାଗୁଣା ପାଖରେ ପହଞ୍ଚିଲା । ଶାଗୁଣା ନିଜର ଅଧେ ଆୟୁଷ ଦେଇ ମଣିଷକୁ ଚେତାଇ ଦେଲା । କହିଲା ଆଉ ଯାହାର ନେଲୁ ନେଲୁ, ମୋଠୁ ଯାହା ନେଲୁ ଭୋଗିଲା ବେଳେ ପଛରେ ମନେପକେଇବୁ । ମୁଁ ସହଜରେ ଦେଲା ବାଲା ନୁହେଁ ।

କହିସାରି ମୁଁ ଟିକିଏ ତୁନି ହୋଇ ଗଲାବେଳକୁ ଶୋଭା ଆଉ ମୋତେ ରଖେଇଦେବା ଉପରେ ନାହିଁ । ମୋତେ କହିଲା, ତାପ୍‌ରେ କଣ ହେଲା, କହୁନୁ । ମୁଁ କହିଲି, ଆଉ ହବ କଣ ମଣିଷ ତା କୋଡିଏ ବର୍ଷ ମହା ଆନନ୍ଦରେ କଟେଇଦେଲା ସିନା, ଯେମିତି କୋଡିଏ ବର୍ଷ ଡେଇଁଗଲା, ମନରେ ନାନା ଚିନ୍ତା ,ଘର-ପରିବାର, ଚାକିରୀ, ରୋଜଗାର କାହା ପାଇଁ କଣ କରିବ ? ଏମିତି ସବୁରି ଚିନ୍ତାରେ ଦିନ ରାତି ଅବିଶ୍ରାନ୍ତ ଘୋଡା ପରି ଦଉଡି, ଦଉଡ଼ି ଜମା ଆଉ ଖର୍ଚ୍ଚରେ ଲାଗିଗଲା ।

ପୁଣି ଚାଳିଶି ଡେଇଁଗଲା ପରେ ଭାବିଲା, ଏଇଟା ତ ବାର୍ଦ୍ଧକ୍ୟର ବାଲ୍ୟ ଅବସ୍ଥା ଆସିଗଲା । ପୁଣି ବୁଢ଼ା ବେଳକୁ କଣ କରିବି ? ତାପରେ ହଡା ବଳଦ ପରି ଭଡା ବୋହି ସାଇତି ବାରେ ଲାଗିଲା । ପୁଣି ଷାଠିଏ ବର୍ଷ ବେଳକୁ ପିଲା-ପିଲି, ନାତି-ନାତୁଣୀ, ସ୍ତ୍ରୀ ପର୍ଯ୍ୟନ୍ତ ସମସ୍ତେ ଖର୍ଚ୍ଚ କରିବାକୁ ଧମକେଇଲେ । ବୁଢ଼ା ଦେଖିଲା ନ ପାରିଲା ବେଳକୁ ଏମାନେ ତ ଏମିତି କରିବେ, ଧନକୁ ପ୍ରାଣ ପଣେ ଜଗି ବସି ଯିଏ ବୁଢ଼ା ଧନ ଉପରେ ଆଖି ଦେଲା ତାକୁ କୁକୁର ପରି ଭାଉ ଭାଉ ହୋଇ କାମୁଡି ଗୋଡେଇଲା ସିନା ଆଉ ଅଶୀ ବର୍ଷ ବେଳକୁ ତାକୁ ମାନେ କିଏ ? ଆଉ ତ କିଛି କରିପାରିବନି, ଖାଲି ହାଡ କୁଢ଼ ରୋଗୀଣା ହୋଇ ବସି, ଶାଗୁଣା ପରି ବେକ ଉପରକୁ ମୁହଁଟି ଟେକି କେଁ କେଁ ହେଉଥିବ । ଲୋକମାନେ ଘୃଣା ଆଉ ବେଖାତିରରେ ପଚାରୁନଥିବେ, ଆଉ ସେ ଜୀବନରେ କିଛି ମୂଲ୍ୟ ନଥାଇ, ଖାଲି ବଞ୍ଚି, କଷ୍ଟ ଅପମାନରେ କଟର କଟର ହୋଇଦିନ ସରିବ । ସେଇଥିପାଇଁ ପୁରାଣରେ ଅଛି, ଚଉରାଅଶୀ ବର୍ଷରୁ ଆଉ ବେଶୀ ବଞ୍ଚିଲେ, ମଣିଷର

ଉ ଗୋଟେ ଜନ୍ମ ଭୋଗ ହେଲା । ସିଏ ସହସ୍ର ଚନ୍ଦ୍ର ଦେଖିଲାଣି । ତାର ଆଉ ପୁର୍ନଜନ୍ମ ନାହିଁ । ମୁଁ ସେଇ ଅଜାଙ୍କ କଥା ଶୁଣି କହୁଥିଲିନା, ତୁ ମନ ଦୁଃଖ କଲୁକି ? ଶୋଭା ଅଙ୍ଗେ ସାଙ୍ଗେ ସବୁ ଭୁଲି କହିଲା, ନାଇଁ ମ , ସତ କଥା ତ , ମୋ ମନ କାହିଁକି ଖରାପ କରିବି ? ଯାହା ହେଉ ମୋର ସେହି ଚୁମ୍ବକ ପରି ସାଙ୍ଗଟାର ମନ ଖୁସି କରିଦେଇ, ମୋ ମନଟା ବୋଧ ହୋଇଗଲା । ମୋ ଅଜା ଖରାଦିନ ଖରାବେଳେ ଆମ ଦି ଭଉଣୀକି ମାଡିବସି ଶୁଆଉବାକୁ ବରାବର ଏମିତି ଗୋଟେ ଗୋଟେ ଗପର ଲାଞ୍ଚ ଦେଉଥିଲେ ।

ମୋ ସାଙ୍ଗଗୁଡାକଙ୍କର ବହୁତ ଭଲ ଗୁଣ ଥିଲା । ମତେ ସମସ୍ତେ ଭାରି ସୁଖ ପାଆନ୍ତି । ମୋ ନାନୀଙ୍କୁ ମନ୍ଦିରା ନାନୀ କିଲୋ କହିଲେ, ମୋର ସଙ୍ଗାତ ବଉଳ ଦୁର୍ଲଭା, ଅଶୋକା, ଅଭଡା, ଗଙ୍ଗାପାଣି ଏମିତି ସୂର୍ଯ୍ୟବନ୍ଧୁ ବସି ତାଙ୍କର ମୋର ତୁ ତା ସମ୍ବନ୍ଧ ନଥାଏ । କେବଳ ଶୋଭାକୁ ଛାଡିଦେଲେ ଅନେକ ମିତ ନଥାଇ ବି ମତେ କିଲୋ ନକହି, କିଓ କହନ୍ତି । ସେଇଥି ପାଇଁ କି କଣ ତାସ କି କଉଡି ଖେଳ ବେଳେ ଟିକିଏ ଭୁଲ କରିଦେଲେ, ସେମାନଙ୍କ ଉପରେ ସାନ ନାନୀ ଭାରି ରାଗେ । ଯାହା ତୁଣ୍ଡକୁ ଆସେ ଗାଳିଦିଏ । ମୁଁ କିନ୍ତୁ ଠିକ୍ ସେତିକିବେଳ ମଉକା ଦେଖି ସେମାନେ ଭଲ ନ କଲେ ବି ତାଙ୍କ ପକ୍ଷ ସମର୍ଥନ କରିନିଏ । ତାଙ୍କର ସବୁ ଦୋଷ ଘୋଡାଇ ନାନୀକି ଆକଟ ଭଙ୍ଗୀରେ କହେ, ଖେଳନ୍ତି ସିନା ଆନନ୍ଦ ପାଇଁକି, ତୁ ତାଙ୍କୁ ଏତେ ବକିଲୁ ସେମାନେ ମନ ଦୁଃଖରେ ଘରକୁ ଯିବେ । ସେଥିରୁ କଣ ଲାଭ ହେଲା କହିଲୁ ।

ନାନୀ କିନ୍ତୁ ଠିକ ମୋ ନାଡି ଚିପିଥାଏ, ମତେ ମୁଁହ ଫଣ ଫଣ କରି କହେ, ତୋ ପରି ଏମିତି ଖୁସାମତିଆ କଥା କହି ମୋର ଆଞ୍ଚା ଆପଣ ଶୁଣିବା ଦରକାର ନାହିଁ । ଯିଏ ଭୁଲ ସିଏ ଭୁଲ । ତାକୁ ସୁଧାରିଦେବେନି ତ ପୁଣ କେମିତି ଖେଳିବେ । ମୁଁ ଅଭିମାନରେ କହେ, ଖାଲି କଣ ଖେଳିବା ସେମାନେ ନ ଆସିଲେ ଦେବୀଙ୍କ ପାଇଁ ଆଶ୍ୱିନ ମାସରେ ଅଠର ହାତିଆ ମାଳ କେମିତି ଗୁନ୍ଥାହେବ ? ନାନୀ କହେ ପୁଅ ପିଲା କାଳିଆ, ମହୀ, ବାଆଜି,ଘେରିକାତ ଫୁଲ ଆଣି ଦେଉଛନ୍ତି । ମୁଁ ତାଙ୍କରି ସାଙ୍ଗରେ ବସି ସବୁ ଗୁନ୍ଥିଦେବି । ମୁଁ କହେ ଆଉ ଅଶିଣ ମାସ ବଳି ପୁଜା ବେଳକୁ ଫୁଲ-ଅଞ୍ଜୁଳି ପାଇଁ ଜହ୍ନି ଫୁଲ କିଏ ଆଣିବ ? ମୁରୁଜରେ କୋଠି କିଏ କରିବ ? ବଳି ଗୀତ କିଏ ବୋଲିବ ? ନାନୀର ସାଙ୍ଗେ ସାଙ୍ଗେ ଉତ୍ତର ଆଲୋ ! ହେ ମତେ ସବୁ ଆସେ ଲୋ ! ସେମାନେ ମନଦୁଃଖ କରିବେ ବୋଲି , ତାଙ୍କ ହାତେ କରାଏ ନା । ମୋଠୁ କିଏ ସୁନ୍ଦର ମୁରୁଜରେ କୋଠି କରିବ ନା ଗୀତ ବୋଲିବ ? ତତେ ନ ଆସିଲେ ମୋଠୁ ଶିଖି । କୋଠି ମାନ କରିଦେଇ ତା ଦେହରେ ତିନିଟା ଠା କରିଦେଇ ଜହ୍ନି ପତ୍ରରେ ଗଣ୍ଡିଏ ଗଣ୍ଡିଏ ଜହ୍ନି ଫୁଲ ଥୋଇଦେବୁ । ଗଣ୍ଡେ ଚୁଡା କି ଚିନି ନହେଲେ ନଡିଆ କୋରା ଟିକିଏ ଠାକୁରାଣୀଙ୍କ ନାଁରେ ପାଣି ଛଡେଇ ଦେବୁ । ସେହି ଜହ୍ନି ଫୁଲକୁ ଆଞ୍ଜୁଳାରେ ଧରି ପୂର୍ବ ଆଡିକି ମୁହଁ କରି ଗୀତ ବୋଲିବୁ ।

" ଜହ୍ନି ଜହ୍ନି ଆଞ୍ଜୁଳି
ନିତି ଫୁଟେ ତିନି ଆଞ୍ଜୁଳି,
ଦୋଳିରେ ଯାଏ ଦୋଳିରେ ଆସେ,
ପାଟ ପିଢ଼ା ଖଣ୍ଡି ମାଡି ବସେ
ମୋ ବୋହୂ ମୋ କୋଡରେ ବସେ
ନାତୁଣୀ ବୋହୂ ଯେ ଭାତ ପରଶେ
ହାଣ୍ଡି ପୋଛା ଭାତ ଦିଏ
ଆଟିକା ପୋଛା ତିଅଣ ଦିଏ
ଦହି ନଉତିରେ ଆଣ୍ଡୁବୁଡୁ
ଗୋବର ଖାତରେ ଗଣ୍ଡିବୁଡୁ
ରଜା ଗଲେ ଦାଣ୍ଡେ
ତା ନ ଶୁଣଇ କାନେ ।"

ପୁଣି ଆଉ ମୁଠେ ଧରି ବୋଲିବୁ-

" ବଳିରେ ବଳୀ ନକର କଳି
କାଲି ଆଣଦେବି ସରୁ ଚକୁଳି
ସରୁ ଚକୁଳିର ଓପର ମହୁ
ଧୂପ ଖଟି ଗଲେ ରଜାଙ୍କ ବୋହୂ
ରଜାଙ୍କ ବୋହୂ ଯେ ବଡ ଦୁଲଣୀ
ଟେକି ଧରିଥାନ୍ତି ସପତ ଫେଣୀ
ମାଇନ କଲେ କି ଥାଇନ କଲେ
ମୁଣ୍ଡ ପୋତି କରି ସ୍ନାହାନ କଲେ ।"

ଏତିକି ବୋଲି କରି ଟାଳ ଡିଆଁଇ ତ ଜହ୍ନି ଫୁଲକୁ ଫୋପାଡି ଦେବୁ । କଣ ଏଥର ମୋ ଉପରେ ବିଶ୍ୱାସ ହେଲା ତ ? ମୁଁ କି ତାକୁ ସହଜରେ ଛାଡ଼ିବାବାଲା । ମୁଁ କହେ, ଆଉ କୁଆଁର ପୂନିଅଁ ଦିନ ପୁଚିଖେଳ ଗୀତ, ନାନୀ କି ଆଉ ସମ୍ଭାଳେ । କହେ ତୁ ମୋତେ କ'ଣ ଭାବିଛୁକି ? ହଉଲୋ ଆଗ ତ ଡାକିବ,

"କୁଆଁର ପୁନିଅଁ ଜହ ଗୋ ଫୁଲ ବଉଳବେଣୀ,
ଆସ ଗୋ ସଙ୍ଗାତ ପୁଚି ଖେଳିବା,
ରାତିରେ ନହେବ ନିଦ ଗୋ,
ଢାଲି ପଡା ଭା[illegible]ଦେଣ୍ଡୁ ଆଣିବେ
ମୋ ପାଇଁ ସୁନ୍ଦର ଚିଜ ଗୋ,
ଫୁଲ ବଉଳ ବେଣୀ ।"

କହି ଦିଦି ଜଣିଆ ହୋଇ ବର୍ଷନ୍ତାନ୍ତ, ଚାଲିବ ଲଢେଇ କିଏ କେତେ ବେଳ ଯାଏଁ ଖେଳି ପାରୁଛି । ଏଣେ ଖେଳୁଥିବ, ତେଣେ ବୋଲୁଥିବ ।

''ପୁଚିଲୋ, ଯା' ଯା' ତୁ ଘୁଞ୍ଚିଲୋ,
ଗହିରି ବିଲରେ ମଇଁଷି ଲୋ,
ଧାନ କେଣ୍ଡି କେଣ୍ଡି ଖାଉଚିଲୋ,
ଭଡାଇ ଦେବି ତୋ, ଭାଇ ବେହେରା,
ବୋହୂ ବାପଘର ଅଠର ନଳା,
ବୋହୂ ବାପଘର ଯାଇଛି ଲୋ,
କଳା କଳା ବାଇଗଣ ଧଳା ଧଳା କଉଡି,
ନେଇ ଯାଆ ତୋ ବାଇଗଣ, ଦେଇ ଯା ମୋ କଉଡି ।''

ମୁଁ ସାଙ୍ଗେ ସାଙ୍ଗେ କହେ ଆଉ ଠିଆ ପୁଚି । ନାନୀ କହେ ଓହୋ ଭାରିତ ଗୋଟେ ବଡ କଥା କହିଲା, ହଉ ଶୁଣ,

''ଠିଆ ପୁଚି ନାରଙ୍ଗ, ଗୋଡ ଯୋଡାକ ସାରଙ୍ଗ,
ସାରଙ୍ଗ ବଣକୁ ଯାଇଥିଲି, ଚିଙ୍ଗୁଡି ଶୁଖୁଆ ପାଇଥିଲି,
ଅଧେ କଲି କଞ୍ଚା ଲୋ, ଅଧେ କଲି ଭଜା,
ତୋ ଭଉଣୀ ରାଣୀ ହେଲେ,
ମୋ ଭାଇଟି ରଜା ।''

ମୁ ନାନୀ ପାଖେ ହାର୍ ମାନିଯାଏ । ମୋ ମନଟା ଭାରିଦୁଃଖ ହୋଇଯାଏ । ସତରେ ମୋ ସାଙ୍ଗମାନେ ଯଦି ନ ଆସିବେ, ତାହେଲେ କୁଆଁର ପୂନିଅଁ ଗଲେ ତ କାର୍ତ୍ତିକ ଅମାବାସ୍ୟାରେ ଶ୍ରାଦ୍ଧ ସରିଲେ, ସେଇ ତୁଳସି ମୂଳେ ମୁରୁଜରେ ବୋଇତ ଲେଖା ହେବ । ତା' ଦେହରେ ପାଞ୍ଚଟା କୋଠି ହୋଇ, ମଝି କୋଠିରେ ଖାଲି ସୁନା-ରୂପାର ଅଳଙ୍କାର ମାନ ଲେଖା ହେବ । ଆଉ ଚାରିଟାରୁ ଗୋଟାକରେ ଧାନ, ମୁଗ, ବିରିର ଓଳିଆ ବସ୍ତାମାନଙ୍କରେ କୋଠିଟି ଭର୍ତ୍ତି ହେବ । ଆଉ ଗୋଟାକରେ ସବୁ ପ୍ରକାର କଂସା ବାସନ ରହିବ । ପୁଣି ଗୋଟାକରେ ଖଟ ପଲଙ୍କ, ଆଲମାରୀ, ସିନ୍ଦୁକ, ପେଟେରା ଏମିତି ଲେଖାହେବ । ବାକି ଗୋଟାକ ଘର ବୋଇତିକଖାରୁ, କଦଳୀ ପେଣ୍ଡା, ଏମିତି ପରିବା ପତ୍ରରେ ପୂର୍ଣ୍ଣ ହେବ । ନାନୀ କହେ, ସେଗୁଡାକ କାହିଁକି ହୁଏ ଜାଣୁ ? ସେଦିନ ସାଧବ ପୁଅର ବୋଇତ ଘରକୁ ଆସେ । ପୁଣି ପନ୍ଦର ଦିନ ଘରେ ରହି ପୂନିଅଁ ଦିନ କଦଳି ବାସୁଙ୍ଗା ଡଙ୍ଗାଭସା ହୁଏନି ? ସାଧବପୁଅମାନେ ପୁଣି ସେହିଦିନ ବିଦେଶ ଯାଆନ୍ତି । ତୁ କାହିଁକି ମନ ଦୁଃଖ କରୁଛୁ ; ସେଦିନ ତ ସବୁ ଝିଅ ବାଧରେ ନଇ କୂଳକୁ ରାତି ଦି ଘଡିରୁ ଯାଇ ହାଜର ହେବେ । ବୁଡ ପକେଇ ଡଙ୍ଗା ଭସେଇ, ''ଆ-କା-ମା-ବୈ, ପାନ,ଗୁଆ ଖାଇ, ପାନ ଗୁଆ ତୋର, ମାସକ ଧରମ ମୋର ।''

ସେମାନେ କରିବେ କି ନାହିଁ କହ ? ନଇଲେ, ଆ'ରୁ ଆଁଶାଢ, କାରୁ କାର୍ତ୍ତିକ, ମା'ରୁ ମାଘ, ବୈରୁ ବୈଶାଖ, ଏଇ ଚାରିଟା ଧର୍ମ ମାସ । ଏଥିରୁ ଟିକିଏ ବି ଧର୍ମ ତାଙ୍କର ହେବନି । ତଥାପି ମୁଁ ନଛୋଡ ବନ୍ଧା । ମୁଁ କହିଲି, ଆଉ ସେ ଖୁଦୁରୁକୁଣୀ ଓଷା ବେଳେ ? ମାହାନ୍ତି ସାହି ପିଲାଙ୍କ ସାଙ୍ଗେ ଗୀତ ବୋଲା ପାଲା କେମିତି ହେବ ? ନାନୀ ହସି ହସି କହିଲା, ମତେ ପରୀକ୍ଷା କରୁଛୁ ନାଇଁ ? ଆଚ୍ଛା କହିଲୁ ସେଇଟା କ'ଣ ଭଲ କଥା । ଆମ ବ୍ରାହ୍ମଣ ଘରେ ସେ ପର୍ବ ନାହିଁ । ଖାଲି ତାଙ୍କ ସାଙ୍ଗେ କଳି କରିବାକୁ ଭୋରରୁ ଯାଇ, ନଈକୂଳେ ସମସ୍ତେ ପାଳା କରିବା କଥା । ମୁଁ କହିଲି ଆଚ୍ଛା କହିଲୁ ? ଗୀତକୁ ଗୀତରେ କଟା କଟି ହେବାଟା କେଡେ ଆନନ୍ଦ ଲାଗେ । ନାନୀ କହିଲା, ଯାଉନୁ, ଆନନ୍ଦ ନା ଛତୁ । ମତେ କ'ଣ ଆସେନି ବୋଲି ଭାବିଛୁ, ନଈ ଆରପାରିରେ ସେମାନେ ଭାଲୁକୁଣୀ ଭସାଇ, ଯେତେବେଳେ ଗୀତ ବୋଲନ୍ତି, ଏପଟେ ଗଛ ମୂଳରେ ଲୁଚି ତୋ, ସାଙ୍ଗମାନେ କ'ଣ ବୋଲନ୍ତି ଶୁଣ ।

ସେମାନେ ବୋଲନ୍ତି:-

''ମାରକଣ୍ଡ କୂଳ ଚକା ପଥର ଲୋ,
ରଗଡିଲି ମୁଗ ଢାଇ,
ସେ ମୁଗଢାଇ କି ପଇତି କଲିଲୋ
ଖାଇଥିଲେ ବୋପା ଭାଇ ।''

ଏପଟରୁ କେହି ଆଗକୁ ଯିବେନି, ଲୁଚି ଲୁଚି କରି ବୋଲିବେ ।

''ବୋପା ଭାଇ ଖାଇ କିସ କରିବେ ଲୋ,
ଖଣ୍ଡେ ଅଧେ ଅବା ଦେବେ,
ପର ପୁଅ ସିନା ଦିନେ ଖାଇଲେ ଲୋ
ସବୁଦିନ ପୋଷୁ ଥିବେ ।''

ସେମାନେ ସେଥିରୁ ତାଙ୍କ ଗୀତକୁ ବଦଳେଇ ଦେଇ ବୋଲିବେ,

''ଶୁଆରେ ଶୁଆ ନଖରେ ଭାଙ୍ଗିଲୁ
ନଖଣ୍ଡି ଗୁଆ ।
ସାଇକି ଦେଲୁ କି ଭାଇକି ଦେଲୁ,
ଆଉ ଚାରି ଖଣ୍ଡି ଫୋପାଡି ଦେଲୁ ।''

ସେଥିରୁ ଏମାନେ ଆଉ ପାଳି ଧରିବେ ।

''କିଏ ସେ ଯାଉଛ ଭୁବନେଶ୍ୱରଲୋ,
ମୋଠଉଁ ବାରତା ନିଅ,
ପାନ ବୋଡିକର, ଗୁଆବୋଡିକର
ମୋ ନନା ଛାମୁରେ ଦିଅ ।''

ମାହାନ୍ତି ସାହି ଝିଅ ରାଗି କରି କ'ଣ ବୋଲନ୍ତି କହିଲୁ !

''ନନା ବସିଥିବେ ଦାଣ୍ଡ ପିଣ୍ଡାରେ ଲୋ
ଭଉଣୀ ବସିବେ ତଳେ,
ପାନ ଖାଇ ପିକ ପକାଇ ଦେବେ ଲୋ
ପଡିବ ଭଉଣୀ ଶିରେ ।''

ଏଗୁଡାକ ଭାରି ଭଲ କଥା, ଖାଲି ତୋ' ସାଙ୍ଗ ଜାଣିଛନ୍ତି, ଆଉ କାହାକୁ ଆସେନି । ତୁ ଶୁଣ ରଜ ଦୋଳି ଗୀତ ବି ସବୁ ମୋର ମୁଖସ୍ତ । ଏଗୁଡାକ ବୋଲିବାକୁ ମୋତେ ଭଲ ଲାଗେନି । ଆଉ କ'ଣ ଆମେ କୁନି ପିଲା ହେଇଥେଇଁ । ପଦେ କହୁଛି ଶୁଣ,

''ରଜ ଦୋଳି କଟ କଟ,
ମୋ ଭାଇ ମୁଣ୍ଡରେ ସୁନା ମୁକୁଟ ଲୋ
ଦିଶୁଥାଇ ଝଟ ଝଟ ।''

ସେତିକିରେ ମୋ' ମନଟା ଭାରି ମଉଳିଗଲା ।

ଯାହା ହେଉ ଏତେବେଳେ ଖୋଜିଲାବେଳକୁ ଏଇ ସାଙ୍ଗମାନଙ୍କ ଭିତରୁ ଜଣେ ଅଧେ ମରିଗଲେଣି ତ, ଅନେକ ଦୀର୍ଘଦିନ ହେଲା ହଜିଗଲେଣି । ତାଙ୍କରି ଭିତରୁ ଯେଉଁ ଦିଓଟି ରହିଯାଇଛନ୍ତି, ସେଥିରୁ ଗୋଟିଏ ଦୁର୍ଲଭ ସାଙ୍ଗ । ସେଇଟି ମୋର ବନ୍ଧୁ ଦୁର୍ଲଭା । ଯାହା ସାଥିରେ ବନ୍ଧୁତ୍ୱ ଦିନକୁ ଦିନ ନିବିଡରୁ ନିବିଡତର ହୋଇଥିଲା । ଯାହାର ଦିନକର ବିଚ୍ଛେଦ ମୋ ପାଇଁ ବର୍ଷଟିଏ ପରି ଲାଗୁଥିଲା । ସିଏ ମୋର ସମବୟସୀ ହେଲେ ସୁଦ୍ଧା, ମୋର ବହୁତ ଆଗରୁ ତାର ବିଭାଘର ହୋଇ ଯାଇଥିଲା । ନାଁଟି ତାର ହୀରା । ସିଏ ଥିଲା ତିନି ଭାଇରେ ଗୋଟିଏ ସୁନାନାକୀ ଝିଅ ତା' ବୋଉ ଅପେକ୍ଷା, ସେ ତାର ନନାଙ୍କର ଗେହ୍ଲା ଝିଅ । ପାଟିରୁ କଥା ବାହାରିଲେ ନନା ତା'ର ତଳେ ପକାନ୍ତିନି । ଝିଅର ମାଛ ଖାଇବାକୁ ମନ ହେଲେ, ନନା ତାର ପାହାନ୍ତିଆରୁ ଉଠି, କୋଉଠି ବନ୍‌ଶୀ ପଡୁଛିତ, କିଏ କାନିଖିଅ ଧରୁଛି, କି କେଉଁଠି ଅନ୍ଧୁଣୀ ବସିଛି । ସବୁୟାଡ଼େ ପ୍ରସ୍ତେ ଖେଦିଯିବେ । ବଡ଼ମାଛ ନ ପାଇଲେ ସୁଦ୍ଧା ଚୁନା କେରାଣ୍ଡି, ଦଣ୍ଡକେଲିରୁ ଦି'ଟା ଧରି ନିଶ୍ଚେ ଆସିବେ । ଏଇ ଦୁର୍ଲଭାଟିର ସେଇ ବୟସରୁ, ଘରକରଣା ସହିତ, ସାଂସାରିକ ଜ୍ଞାନ ଥିଲା ବହୁତ ଅଧିକ । ତାଙ୍କ ନନା ତାଙ୍କର ବିଭାଘର ବି ଅତି ଚଞ୍ଚଳ କରିଦେଇଥିଲେ । ସାରଦା ଆଇନ ପାଇଁ ତାଙ୍କୁ ଚଉଦ ବର୍ଷ ନହେଇଥିଲେ ବି, ଜ୍ଞାନ, ଗାରିମା, ସ୍ୱାସ୍ଥ୍ୟ, ଏସବୁଥିରେ କେତୋଟା ଷୋଳବରଷିକି ଗିଳିପକେଇବେ । ତାଙ୍କ ବରଘର ଆମ ଗାଁର ପାଖାପାଖି ଗାଁରେ । ଅଠର ବରଷର ପୁଅ, ଚଳନ୍ତି ସମ୍ପତ୍ତି ବାଡ଼ି ଅଛି । ପୁଅ ମାଟ୍ରିକ୍ ପଢୁଛି । ଦେଖିବାକୁ ରୂପର ପଟାନ୍ତର ନାହିଁ । ଦୁର୍ଲଭା ବରଠାରୁ ରୂପରେ ଊଣା ହେଲେ କ'ଣ ହେଲା ? ଦୁର୍ଲଭାଙ୍କ ନନା ଥିଲେ ରଣପୁର ରାଜାଙ୍କର, ଆଖେଡ଼ା ଦଳର ଗୁରୁ । ସେଇଥି ପାଇଁ ମୋ ଦୁର୍ଲଭା ଥିଲେ ଗାନବତୀ । ନାନାଦି ବାଦ୍ୟଯନ୍ତ୍ରରେ ପାରଙ୍ଗମା । ବହୁ

ପ୍ରତିଯୋଗିତାରେ ପୁରସ୍କାର ପ୍ରାପ୍ତା । ସେ ହାରମୋନିୟମ ଖଣ୍ଡିଏ ଧରି ଗୀତ ବୋଲିଲେ, ଆମ ଗାଁର ସମସ୍ତେ ମୁଗ୍ଧ ହୋଇଯାଉଥିଲେ । ତେଣୁ ତାଙ୍କ ଶାଶୁଘର ମୁଣ୍ଡେଇ କରି ନେଇଯାଇଥିଲେ ବୋହୂ କରି । ତାଙ୍କ ଶାଶୁ ଶ୍ୱଶୁରଙ୍କର ଲକ୍ଷେ ଦିଅଁ ଦେବତାର ଫଳ ସେ ପୁଅଟି । ତା' ପାଇଁ ଏପରି ଗାରିମାମୟୀ ବୋହୂ, ସେ ଛାଡ଼ନ୍ତେ ବା କିଆଁ ? କିନ୍ତୁ ଶାଶୁଘର ଯାଇ ଗୀତ, ବାଦ୍ୟ, କଳାର, ପୁନରାବୃତ୍ତି ହୋଇନଥିଲା ସିନା, ଘରକରଣାରେ ଖୁଣିବାକୁ କେହିଁ ନଥିଲା ।

ତାଙ୍କ ବିଭାଘର ପୂର୍ବରୁ ସେ ମୋତେ ଦିନେ ବିଶ୍ୱାସରେ କହିଥିଲେ, ଦେଖିବ ଦୁର୍ଲଭା ଆମଲତ କେତେ ବନ୍ଧୁ-ବାନ୍ଧବ ଆସିବେ । ଆଉ ଜଣେ ନୂଆ ବନ୍ଧୁ ଆସେବେ, ତାଙ୍କ ନାଁ ଶ୍ୱେତାମ୍ବରୀ । ସେ ଆମ ପଟର ନୁହଁ । ତାଙ୍କ ଘର ପଟରୁ ବନ୍ଧୁ । ସେ ଭାରି ବଡ଼ଲୋକ । ବିଧବା ହେଲେବି ଭାରି ସୁନ୍ଦରୀ । ଆଉ ତାଙ୍କର ଗୋଟିଏ ପୋଷିଆଁ ପୁଅ ତା ନାଁ ଜଗନ୍ନାଥ । ସେ ମାଇପି ହୋଇ ବରଯାତ୍ରୀରେ କାହିଁକି ଆସିବେ ଜଣିଛ ? ଶ୍ୱେତାମ୍ବରୀ ପୁଅକୁ ଏକୁଟିଆ କୁଆଡ଼େ ଛାଡ଼ନ୍ତିନି । ପୁଅ ବି ଏକାରେ କୁଆଡ଼େ ଯିବାକୁ ମଙ୍ଗେନି । କିନ୍ତୁ ଆମଘରକୁ ବରଯାତ୍ରୀ ହୋଇ ଆସିବାକୁ ପୁଅ ଜିଦ୍ ଧରିଛି । ସେଇଥିପାଇଁ ସିଏ ତାଙ୍କୁ ସାଙ୍ଗରେ ଘେନି ଆସିବେ । ତୁମେ କିନ୍ତୁ ଦୁର୍ଲଭା ତାଙ୍କୁ ନିଶ୍ଚେ ଦେଖିବ । ଏହା ଦୁର୍ଲଭାଙ୍କ ବିଚାରରେ, ବୋଧହୁଏ ତାଙ୍କ ବିଭାଘରର ଗୋଟିଏ ବିଶିଷ୍ଟ ଅଙ୍ଗ ଥିଲା । ଦୁର୍ଲଭା ତ ବନ୍ଧନରେ ସେଦିନ ବେଦୀରେ ରହିଗଲେ ।

ବାସ୍ତବରେ ସେ ଭଦ୍ର ମହିଳା ପୁଅସହ ସେଦିନ ଆସି ଶଗଡ଼ ଗାଡ଼ିରେ ପହଞ୍ଚିଲେ । ମୁଁ ଭାରି ଆଗ୍ରହରେ ଯାଇ ତାଙ୍କୁ ଦେଖିଦେଲି । ମୋତେ ଆଶ୍ଚର୍ଯ୍ୟ ଲାଗିଲା । ଦୁର୍ଲଭାଙ୍କ କଥା ଅକ୍ଷରେ ଅକ୍ଷରେ ସତ । ଦୁର୍ଲଭାଙ୍କ ବୋଉ ଦାଣ୍ଡରୁ, ଶଗଡ଼ ଭିତରୁ ତାଙ୍କ ହାତ ଧରି ଆଣି, ତଳ ଘର ପିଣ୍ଡାରେ, ଶଅପ ମସିଣା ଖଣ୍ଡିକରେ ବସେଇଦେଲେ । ମୋତେ ଲାଗିଲା, ଏତେ ଲୋକ ଗହଳି ଭିତରେ, ସୁବଠାରୁ ଅତି ଆଶ୍ଚର୍ଯ୍ୟ ପଦାର୍ଥଟିଏ, ପିଣ୍ଡାରେ ଅବା ଥୁଆ ହୋଇଛି ।

ବର୍ଣ୍ଣତ ତକ-ତକ ଗୋରା । ମୁଣ୍ଡର ବାଳ ମିଚି ମିଚି କଳା, ଭାରି ଚିକ୍କଣ । ମୁଣ୍ଡ ଉପରେ ଅଙ୍କ ବାଁ-ପଟକୁ ସରୁ ଧଳା ସୁନ୍ଥା । ଚିକ୍କଣ ଘାସ କିଆରୀରେ, ସରୁ ଚଲା ରାସ୍ତା ପରି ଚିକ୍ ଚିକ୍ କରୁଛି । ଡ଼ାହାଣ ପଟ କପାଳରେ, ଚାରୋଟି କୁଞ୍ଚୁ କୁଞ୍ଚୁଆ ଭାଙ୍ଗ ପକା ପାତା । ଆଉ ବାଁ ପଟେ ତିନୋଟି ପାତା ପଡ଼ି, ବାଳରେ କମକରା ସୁନ୍ଦର କପାଳ । ମଝିରେ ଗୋଟିଏ ମଧ ଭଳିଆ ଚାନ୍ଦକଳାର ଟୋପା । ସେତେବେଳର ବିଧବା ପାଇଁ ଅସଙ୍ଗତ ହେଲେବି, ମୋ' ଆଖିକୁ ଭାରି ସୁନ୍ଦର ଦିଶୁଥିଲା । ବେକରେ ଆଙ୍ଗୁଠି ଓସାରର ଗୋଟିଏ କଣ୍ଠୀ ବିଛାର ହାର । ମଝିରେ ପାନ ପରି ଧଳା ପଥରବସା ପଦକ । ଇଞ୍ଚେ ଚଉଡ଼ାର କଳା ଧଡ଼ି ଥାଇ, ପିନ୍ଧିଥାଏ ଫିନ୍ ଫିନ୍ ଧଳା ଶାଢ଼ୀ ସାଙ୍ଗକୁ ଲେସ୍ ଦିଆ ଧଳା

ହାତକଟା ବ୍ଲାଉଜ । ଶାଢ଼ୀ ଭିତରୁ ଧଳା ସାୟାର ଲେସ୍, ବେଶ୍ ବାରି ହେଉଥାଏ ଉପରକୁ । ସବୁବେଳେ ହାତ ଯୋଡ଼ିକ ଲୁଗା ଭିତରେ ଘୋଡ଼ାଇ ରଖିଥାଏ । କିଛି ସମୟ ନିରେଖି ଦେଖିଲାପରେ ଜାଣିପାରିଲି, ବାଁ ହାତରେ ଗୋଟିଏ ଧଳା ପଥର ବସା ସୁନା ବ୍ୟାଣ୍ଡ ଦିଆ ଘଣ୍ଟା । ହାତ ଆଙ୍ଗୁଠିରେ ଦୁଇଟି ବଡ଼ ବଡ଼ ଧଳା ପଥର ମୁଦି ।

ମୋର ଧାରଣା ଥିଲା, ନାନା ବିରଙ୍ଗବେରଙ୍ଗରେ ସୌନ୍ଦର୍ଯ୍ୟ ଥାଏ । କିନ୍ତୁ ସାଧାରଣ ଧଳାରେ, ଏପରି ସୌନ୍ଦର୍ଯ୍ୟ ମୁଁ ଆଗରୁ କେବେ ଅନୁଭବ କରିନଥିଲି । ଯଥାର୍ଥରେ ଶ୍ୱେତାମ୍ବରୀ । ପାଖରେ ଠିଆ ହେଲେ ଅପୂର୍ବ ସୁଗନ୍ଧରେ ମନ ମହକି ଉଠୁଥାଏ । ପୁଅଟିର ଅଳ୍ପ ଶ୍ୟାମଳ ବର୍ଣ୍ଣ ହେଲେବି, ହୃଷ୍ଟପୃଷ୍ଟ ଚେହେରାକୁ, ଧଳା-ହ୍ୟାପ୍ ପ୍ୟାଣ୍ଟ, ଧଳା ଅଧା ସ୍ୟାର୍ଟ, ଅଣ୍ଟାରେ ସୁନାର ବେଲ୍ଟ । ବେକରେ ତିନିସୋରା ଲମ୍ବା ସୁନା ସୂତା । ଦୁଇ ହାତରେ ଦୁଇଟା ସୁନା ମୁଦି । ବାଁ ହାତରେ କଳା ବ୍ୟାଣ୍ଡର ସୁନେଲି ଘଣ୍ଟା ଭାରି ମାନୁଥାଏ । ଦୁହିଁଙ୍କ ଚେହେରା ସେତେବେଳେ ମଫସଲ ଗାଁରେ, ସବୁଦିନ ମନରେ ଆଙ୍କି ହୋଇଗଲା ପରି । ଦୁର୍ଲଭାଙ୍କ ଠାରୁ ଆଉ କିଛି ଖବର ଜାଣିବା ପୂର୍ବରୁ, ସେ ବାହୁଡ଼ା ବର-କନ୍ୟା ହୋଇ, ଏକା ପାଲିଙ୍କିରେ ସ୍ୱାମୀ ସଙ୍ଗେ ବସି, ଚାଲିଯାଇଥିଲେ ଶାଶୁ ଘରକୁ ।

ଏଇ ବୟସର ଖୋଳ ଭିତରୁ ପୁଣି ଉଠି, ସେତେବେଳେର ମନଟା ଦୁର୍ଲଭାକୁ ନପାଇ ଜଣ ଜଣ କରି ସବୁ ସାଙ୍ଗକୁ ବୁହେ ଖୋଜି ପକାଇଲା ତ ହେଲେ କଣ ହେବ, ସେତେବେଳର ସେ କିଶୋରୀ ସାଙ୍ଗ ଗୁଡାକ, ଏତେବେଳକୁ ତାଙ୍କ ଜୀବନ ଯାକର ଖେଳ ଟାଙ୍ଗୁଡି ଗୁଡିକୁ ଧରି ଗୋଟିକ ପରେ ଗୋଟିଏ ମୋ ଆଖି ଆଗରେ ଅଡାଡି ଦେଇଗଲେ । ପୁଣି କିଏ ଖଣ୍ଡିଏ ବାଡି ଧରି ଚାଲିଲା ତ କିଏ ଛ କଣ୍ଠ କାଠ ଧରି ଚାଲି ଗଲା, ମୋ ସଙ୍ଗାତ ପରି । ଯେତେ ସେ ବାର୍ଦ୍ଧକ୍ୟକୁ ଲୁଚି ଲୁଚି କିଶୋରୀ ଗୁଡାକୁ ଖୋଜିଲି, ସବୁ ତଡି ଦେଇ ମନ ରାଇଜକୁ ମାଡି ଆସିଲା ଶ୍ୱେତାମ୍ବରୀ । ଜାଣିଥିଲି ସେ ଆମ ସାନ ମାଉସୀ ଶାଶୁ ଘର ଗାଁର । ଆମ ସାନ ମାଉସୀର ପ୍ରାୟ ପ୍ରତିବର୍ଷ ଗୋଟିଏ ଗୋଟିଏ ପିଲା ଜନ୍ମ ହୁଅନ୍ତି । ସବୁ ତକ ଆମରି ଘରେ ।

ଥରେ ପୋଖତି ହେବାକୁ ଆସିଲେ, ମାଉସୀ ପିଲାକୁ ଦୁଇ ମାସ ହେଲେ ତା ଘରକୁ ଯାଏ । ଦିନେ ଦିଦିନ ପରେ ସାନ ମାଉସୀ ପୋଖତି ଘର ପାଇଁ ଆସିଥିଲା ଆମ ଘରକୁ । ମୋ ବୋଉ ଆଗରୁ ଶ୍ୱେତାମ୍ବରୀ ନାଁ ଶୁଣିଥିଲା । କିନ୍ତୁ ଦୁର୍ଲଭାଙ୍କ ବିଭାଘର ବେଳେ ତାକୁ ଥରେ ଦେଖିଲା ପରେ ବୋଉର ବି କିଛି କୁତୁହଳ ମନରେ ଜାତ ହୋଇଥିଲା । ସେ ସେଦିନ ମାଉସୀ ସାଙ୍ଗେ ଶ୍ୱେତାମ୍ବରୀ ବିଷୟରେ କଥାବାର୍ତ୍ତା ହେଲାବେଳେ ମୋର ପୂର୍ବର ଆଗ୍ରହ ତାଙ୍କ କଥା ବାର୍ତ୍ତାକୁ ପୂର୍ଣ୍ଣମାତ୍ରାରେ ଗିଳି ଦେବାକୁ ତାଙ୍କ ଆଡିକି ଟାଣି ହୋଇ ଯାଇଥିଲା ।

ବୋଉ ମାଉସୀକି ପଚାରିଲା, ହଇଲୋ ସୁଲକ୍ଷଣା ଶ୍ୱେତାମ୍ବରୀ କଣ ତା ଶାଶୁ ଘରକୁ ଆଉ ଜମା ଗଲାନି ? ତାର କଣ ଆଉ ସେଠି କେହି ନାହାନ୍ତି ? ମାଉସୀ ଶ୍ୱେତାମ୍ବରୀର ଗୋଟିଏ ପୁରା ପୁରି ଚିତ୍ର ଟାଣି ଦେଇଥିଲା, ବୋଉ ଆଗରେ ଯେତିକି ନୁହେଁ, ମୋ ମନରେ ସେତିକି ବେଶି । ମାଉସୀ କହିଲା- କେହି ନାହାନ୍ତି କଣ କିଲୋ ? ତାର ପରା ଛଟା ନଣନ୍ଦରେ ତାର ବର ଲିଙ୍ଗରାଜ ଗୋଟିଏ ପୁଅ । ଇଏ ଶାଶୁଘରକୁ ଗଲାବେଳକୁ ଛଟାରୁ ଯୋଡେ ନଣନ୍ଦ ମରିଥିଲେ । ଆଉ ଥିଲେ ଚାରିଟା ଝିଅ । ବେଙ୍ଗ, ମୂଷା, ତୁଙ୍ଗେଇ, ଗୁଣ୍ଡୁଚି । ତା ଗୋସେଇଁ ଶଶୁରର ବାପ ଥିଲା ମାନଗୋବିନ୍ଦ ଦାସ । କହନ୍ତି ସିଏ କୁଆଡେ ଗୋଟେ ଯଖ ମାରି ବହୁତ ସୁନା ପାଇଥିଲା ।

ମୁଁ ତ ଯଖ କଥା ଆଗରୁ ଶୁଣିଥିଲି । ବଡ ବଡ ଲୋକମାନେ ସୁନା ସବୁ ତଳେ ପୋତି ରଖିଥାନ୍ତି । ସେ ମରିଗଲା ପରେ ଯଦି ତାର ପୁଅ ନାତି, ଅଣନାତି, ପଣନାତି ନରହି ବଉଁଶ ବୁଡିଯାଏ, ଘର ଦୁଆର ଭାଙ୍ଗିଯାଏ,ସେହି ସୁନାତକ ସେ ମାଟିତଳେଯଖପରି ଜଗି ରହେ । ନିଶା ରାତି ହେଲେ ଆପେ ଆପେ ମାଟିତଳୁ ବାହାରି ଗୋଟେ ନିଆଁ ପିଣ୍ଡୁଳା ହୋଇ ଗଡି ଗଡି ପାଣି ପିଇବାକୁ ଯାଏ । ସେଇ ଯିବା ଆସିବା ବାଟରେ ଯଦି କିଏ ଲୋକ ହାବୁଡି ଯିବ, ସେ ଯଖ ନିଆଁଟା ତା ପୁଡା ତଳେ ଗଳି ଆରପଟକୁ ପଳେଇ ଯାଏ । ତାହାହେଲେ ସେ ଲୋକଟା ସେଇଠି ରକ୍ତବାନ୍ତି କରି ପଡି ମରିଯିବ । ନାହିଁ ଯଦି କିଏ ଚତୁର ଲୋକ ହୋଇଥିବ ସେ ଦୁଇ ଗୋଡ ଛନ୍ଦି ଡେଇଁ ଡେଇଁ ଯିବ । ଯଖ ତାକୁ ଗୋଡେଇ ଗୋଡେଇ ଯିବ । ଲୋକଟା ଯଦି ଗୋବର ଖାତ କି ଧାନ ଉଷୁଆଁ ଚୁଲି ଡେଇଁଯିବ, ଯଖ ଗଡି ଗଡି ତା ଭିତରେ ପଡିଗଲେ ସୁନା ମୁଣ୍ଡା ହୋଇଯିବ । ନାହିଁ ଯଦି ସେ ପୁଡା ତଳେ ଗଳିଲା ବେଳେ ତା ଉପରେ ପରିସ୍ରା କରି ଦେବ, ତାହେଲେ ବି ଯଖ ମରି ସୁନା ହୋଇଯିବ ।

ମୁଁ ଏଗୁଡାକ ଗପ ବୋଲି ଜାଣିଥିଲି । ପୁଣି ମାଉସୀ ଠାରୁ ଶୁଣି ମତେ ବଡ ଆଶ୍ଚର୍ଯ୍ୟ ଲାଗିଲା । ମୁଁ ପଚାରିଲି, ବୋଉ ଇଏ କଣ ସତ କଥା ? ବୋଉ କହିଲା ମୁଁ ସତ ବୋଲି କେମିତି କହିବି ? ମୁଁ ଏମିତି ତୋରି ପରି ଶୁଣିଛି । ସତରେ କିଏ କରିବା ମୁଁ ଜାଣିନି । କିଛି ନଥାଇ ଯଦି କାହାର ଟିକିଏ ବେଶୀ ଧନ ହୋଇଗଲା, ଲୋକ କହନ୍ତି ସେ ଯଖ ପାଇଗଲା । ମତେ କିନ୍ତୁ ସତ ଲାଗେନି । ମାଉସୀ କହିଲା- ସେ ବୁଢ଼ା ପରା ନିଜେ ଯଖ ଲୋ, ଅଇଁଠା ହାତରେ କୁଆ ଉଡେଇବନି, ସେ ବାପ ତା ପୁଅ ରାମ ଦୁହେଁ ବଙ୍ଗଳା ବାଟ କରୁଥିଲେ । ଦି ପୁରୁଷର ଧନ ଏମିତି ମାଡି ଗଲାଯେ, ଏକର ଯାଗାରେ ଖାଲି ପଥର ଘର । ଘର ତଳ ଖୋଳା ହୋଇ ତା ଭିତରେ ଘର ମାନଙ୍କରେ କୁହାଛନ୍ତି, ଆଉ କଡି ପଡି ଶିକୁଳି ଲାଗି ଟଙ୍କା ମାନ ହଣ୍ଡା ହାଣ୍ଡିରେ ଝୁଲା ହୋଇଥାଏ ବୋଲି ଶୁଣିଛି । ଦିନରେ ଆଲୁଅ ଧରି ବାପ ପୁଅ ସେ ଭିତରକୁ ଯାଆନ୍ତି । ରାମର ବି ଗୋଟିଏ ପୁଅ ବିଶ୍ୱନାଥ , ତାର କଣ ହେଲା କେଜାଣି ନା ପାଠ ନା ସମ୍ପତ୍ତି କେଉଁଥିରେ ମନ ଦେଲାନି । ମାଟିରେ

ବାଟୁଳି କରି , ଗୋଟିଏ ବାଟୁଳି ଖଡା ନାଇଁ ତ ଫେଡି ଧରି ମାଙ୍କଡ ଠାରୁ କୁଆ, ଗୁଣ୍ଡୁଚି ମୂଷା ଯାଏ ନିପାତ କରି ଲାଗିଲା । ଏଣେ ମାଇପ ଗେଣ୍ଡାମାଳ ପରି ମାଳେ ଝିଅ ଜନ୍ମ କରିବାରେ ଲାଗିଲା । ଗୋସେଇଁ ମା ମନ ବିରକ୍ତରେ ମୂଷା ଡୁଙ୍ଗେଇ କରି ନା ମାନ ଦେଲେ ।

ତେଣୁ ବାପର ଭାଳେଣି ପଡ଼ିଗଲା । ଭାବିଲା ପୁଅର ଏ କର୍ମ ଲାଗି, ଏଇ ପୁରୁଷରେ ବୋଧେ ବଉଁଶ ବୁଡ଼ିଗଲା । ଏତେ ସମ୍ପତ୍ତିରେ କାହାକୁ ବା କୂଳକୁ ଆଣିବି ? ତେଣେ ବଡ଼ ଝିଅ ବେଙ୍ଗ ବାଞ୍ଛା ମୂଷା ସେଇଠି ଗାଁ ପାଖ, ଗୁଣଦେଇପୁରେ ବଡ଼ ଜମିଦାର ଘରେ ବିଭା ହୋଇଛି । ଗାଁର ଦେଉଳ ଜଗନ୍ନାଥ, ସବୁ ସେଇ ଜୋଇଁଙ୍କର । ସ୍ନାନ ପୂର୍ଣ୍ଣିମାକୁ ଗାଁରେ ଦାରୀନାଚ ହୁଏ । ଦାରୀଆଣୀମାନେ ଆସି, ତାଙ୍କରି ଖମାରରେ ରହନ୍ତି । ମୂଷାର ଯଦି ଦାରୀ ସେବାରେ ଟିକିଏ ଊଣା ହୋଇଯିବ, ତା' ବରଙ୍କର ତା' ଉପରେ ବୁହେ ଉତ୍ତମ ମଧ୍ୟମ ହୋଇଯିବ । ହେଲେ ତା'ବର ଗାଁର ମାମଲତକାର । ନିଶା, ପଶା, ଦାରୀନାଚରେ ଦିନ ଯାଏ ସିନା, ତାଙ୍କ ବିନା ନ୍ୟାୟ ନିଷାପ ହୁଏନି ।

ମୂଷାତ ମଲା ମାଛିକୁ ମ'କହିବନି । ମୂଷାର ପୁଣି ଦି'ଝିଅ । ଡୁଙ୍ଗେଇର ଯାଡ଼େ ବିଭାଘର ଲାଗିଲାଣି । ଖାଲିଝିଅ ହେଲାରୁ ରାମଦାସ ବୁଢ଼ା, ବୋହୂ ଆଉ ନିଜ ସ୍ତ୍ରୀକୁ ଧରି ଅଶୋକାଷ୍ଟମୀ ପୂର୍ବ ଦିନ ଭୁବନେଶ୍ୱର ବାହାରିଲା । ଶଗଡ଼ ରାତି ଦି'ଘଡ଼ିରେ କେଦାରଗୌରୀ ପୋଖରୀ ଠାରେ ପହଞ୍ଚିଲା । ବୁଢ଼ା ମରିଚୀ କୁଣ୍ଡର ପଣ୍ଡାକୁ ଧରି, ପ୍ରଥମ ଗରା ପାଣି, ଛ'କୋଡ଼ି ଟଙ୍କା ଦେଇ କିଣି ପଣ୍ଡା କଥା ମୁତାବକ ଶାଶୁ ସେ ବୋହୂକୁ ଗାଧୋଇ ଦେଲା । ବୋହୂର ଗାଧୁଆ ନୂଆ ଲୁଗା ଖଣ୍ଡ ସେଠି ବାରିକାଣୀ ନେଲା । ଯାହା ଯେମିତି ଭୋଗରାଗ କରି, ଲିଙ୍ଗରାଜ ମନ୍ଦିରରେ ଅଭଡ଼ା ଖାଇ, ପୁଣି ରାତି ପାହିଲା ବେଳକୁ, ଘରେ ହାଜର ।

ସତକୁ ସତ ସେଇ ଗର୍ଭକୁ ଏଇ ଲିଙ୍ଗରାଜ ଜନ୍ମ ହେଲା । ନାନୀ ଲୋ' ଲୋକ କହନ୍ତି ନାହିଁ ନଥିଲା ରୂପ, ସାକ୍ଷାତ ଶିବ କି ଶିବ । ପୁଣି ସେଇ ବର୍ଷ ଡୁଙ୍ଗେଇର ବିଭାଘର । ବିଭାଘର ଦି'ମାସରେ ଜେଜେ ବାପା ମଲେ । ବର୍ଷ ଛ'ଟା ଯାଇଛି କି ନାହିଁ କଲେରାରେ ଡୁଙ୍ଗେଇ ବର ମରିଗଲା । ଡୁଙ୍ଗେଇ ଯେମିତି ରାଣ୍ଡ ହୋଇଛି, ମୂଷା ବର ଆଉ ତାକୁ ଘରେ ରଖେଇ ଦେଲାନି । ଡୁଙ୍ଗେଇ ବରର ପାଞ୍ଚବାଟି ସମ୍ପତ୍ତି ଥିଲା । ସବୁ ବୁଝା ବୁଝିକରି ଦେବ ବୋଲି କହି ଡୁଙ୍ଗେଇକି ପାଖରେ ରଖିଲା । ମୂଷା ସିନା ସାବେନି ଫିମ୍ପି କାଠିଆ ହୋଇ ଛୋଟିଆ ମାଇପିଟିଏ । ଡୁଙ୍ଗେଇର ତ କଞ୍ଚା ଭୁଆଷୁଣୀ ବେଳ । ଆଉଟା ସୁନା ପରି ସତେ ଯେମିତି ରୂପ ଜଳୁଥାଏ । ନାନୀ କି ସାହାଯ୍ୟ କରିବ ବୋଲି, ନାନୀ ଘରେ ଆସି ରହିଲା । ହେଲେ ଘର କାମରେ ନାନୀକି ଯାହା ସାହାଯ୍ୟ କରେ ନକରେ, ନାନୀ ହାତରେ କିନ୍ତୁ ଭିଣେଇଙ୍କ କାମ ଲଗେଇ ଦିଏନି ।

ସତେ ଯେମିତି ରଜାଘରର ଦିହଲାଗି ଦାସୀ । କେତେବେଳେ ପାନ, କେତେବେଳେ ପାଣି, ଦିନକୁ ଦି'ବେଳା ଭାଙ୍ଗବଟା, ଦାଣ୍ଡରୁ ଅଇଲା ବେଳକୁ ପାଣିଢ଼ାଳ ଗାମୁଛା ଧରି,

ଗୋଡ଼ ଧୋଇବାକୁ ହାଜର । ଶୋଇଲା ବେଳକୁ ଖଟରେ ଶେଯ କରି, ମଲ୍ଲିଫୁଲ, ବିଞ୍ଚଣାଠାରୁ ଜାଇଫଳର ଘସା ଜଳ ପାଖେ ପାଖେ ଗିଲାସ, କିଛି ଖୋଜିବାକୁ ନଥିବ ଭିଣେଇ ବି ଡୁଙ୍ଗେଇକି ଦଣ୍ଡେ ନ ଦେଖିଲେ ବାଉଳା ।

ମୃଷାତ ଘର ଗୋଟାକର କାମ ଗୋଟଉ ଗୋଟଉ ନାକ ପୋଛିବାକୁ ବେଳ ନ ଥାଏ । ସେଥିରେ ପୁଣି ପାନର ଚୂନ ଖସିଗଲେ ଘଇତାଙ୍କ ହାତ ଉଠିଯିବ । ଭଉଣୀ ଆସିଲା ଦିନଠାରୁ ସେ ଜଞ୍ଜାଳରୁ ମୃଷା ମୁକ୍ତି ପାଇଗଲା ଜାଣ । ଏଣେ ('ଅଣ୍ଟି ଛୁରୀ ତଣ୍ଟି କାଟୁଛି') ଜାଣି ସୁଧା ତା'ର ଖାତିର ନଥାଏ । (ଆପଣା ସୁନା ତ ଭେଣ୍ଡି) ଆଉ କହିବ କାହାକୁ । ଏଣେ ଭିଣେଇ ବି ମାମଲତକାରଙ୍କୁ ଲଗେଇ ଶାଳୀ ଶାଶୁ ଘର ଗାଁରେ ନ୍ୟାୟ ନିଶାପ କରେଇ ଭିଣେଇ ଶାଳୀ ପାଇଁ ଗୁଡ଼େ ସମ୍ପତ୍ତି ନିଜ ନାଁରେ କରେଇ ଆଣିଲେ । କିନ୍ତୁ କ'ଣ ହେବ ଲୋ ନାନୀ, ସେ ସମ୍ପତ୍ତି ଆଉ ଡୁଙ୍ଗେଇ ମୁଣ୍ଡକୁ ଗଲାନି । ପୁଣି ଦଇବ ଯୋଗକୁ ବର୍ଷ କେତୋଟାରେ ମାଇକିନିଆ ଝିଅ ଯୋଡ଼ାକୁ ଛାଡ଼ିଦେଇ ମୃଷା ମରିଗଲା । ଭିଣେଇକି ଆସି ବୟସ ପଚାଶ ହେବଣି । ପୁଣି ଗୋଟେ ରାଣ୍ଡ ମା'ର ଷୋଳ ବରଷି ଝିଅ ପଛରେ ଲାଗିଗଲା କି ?

ସେ ଝିଅତ ଏକାଳ ଝିଅ । ବୁଢ଼ାବର ଜାଣି କନ୍ଦାକଟା କରି ତା'ମାମୁଁ ଘରେ ଲୁଚିଥିଲା । ମୃଷାବର କି ଛାଡ଼ିବା ଜନ୍ତୁ । ହରିପୁର ମଙ୍ଗଳା, ରାଇପୁର ବନ୍ଧ ଉପର ଖୁନ୍ତୁଖୁରି ଠାକୁରାଣୀ, ନରସିଂହପୁର କାମାକ୍ଷା, ଏମିତି କେତେକୁଆଡ଼େ ଲୋକ ପଠେଇ, ଯନ୍ତ୍ର ମନ୍ତ୍ର ଗୁଣି ଟୁଣି କରି, ଯନ୍ତ୍ର ନେଇ ରାତିରେ କାହା ହାତରେ ତା' ମାମୁଁଘର ଚାଳରେ ବାନ୍ଧିଦେଇ ଆସିଲା । ଆଉ ଗୁନିଆଁ ଠାକୁରାଣୀଙ୍କ ଠଉଁ ମନ୍ତୁରେଇ କରି, ଖଣ୍ଡେ ଲୁଗା, ଗୋଟେ ସୁନାମୁଦି, କେମିତି ଯୋଗାଡ଼ ଯନ୍ତ୍ର କରି, ତା' ବୋଉ ପାଖକୁ ପଠେଇ ଦେଲା । ଓଷୁଅ, କାଟପାଣିର ମହିମାତ ପୁଣି ଅଛି । ସବୁ ଓଲଟି ଗଲା, ସେ ଝିଅ କୁଆଡ଼େ ଏକାଜିଦ୍ କଲା ମୁଁ ଏଇଠି ବିଭାହେବି । ସେ ପଛ ମାଇପ ଶାଶୁ ଘରକୁ ଆସିଲା ସିନା, ଆଉ ଦଶନଖ ତଳେ ଦେଲାନି । ଡୁଙ୍ଗେଇର ତା'ର ଆଉ ଜମା ପଡ଼ିଲାନି । କନିଆ ମାଇପର ଆଗଝିଅ ମରି, ପୁଣି ଲାଗ୍ ଲାଗ୍ ଦି, ପୁଅ ହେଲେ । ଯାହା କହନ୍ତି କନିଆ ମାଇପ ମୁଣ୍ଡରେ ବସିଲା । ସେଇ ଭିଣେଇ ପୁଣି ବଡ଼ କଷ୍ଟରେ ସେଇ ଗାଁରେ ବଖରେ ଘର ଡୁଙ୍ଗେଇ ନାଁରେ ଭସ୍ମ କବଲା କରିଦେଲା । ଯାଙ୍କରି ଘରୁ ମୁଠେ ଭାତ ଗଲେ ସେ ଖାଏ । ଏମିତି ବାର ନାରଖାର ହୋଇ ଗଡ଼ି ଗଡ଼ି ମଲାଯେ ଦି'ଦିନରେ ଦୁଆର ଫିଟିଲା । ଲୋକେ କହନ୍ତି କ'ଣ ଖାଇଦେଲା ବୋଲି । ଏହାତ ପାପତ ସେ ହାତ ନବନି । ସେ ବୁଢ଼ାର ବି ସେମିତି କ'ଣ ବେମାର ହେଇ, ପେଟରୁ ଜନ୍ତୁ (ପୋକ) ଗଳିଲେ । ପାପ କୁଆଡ଼େ ଯିବ, ହଁ ଆଉ ଯେଉଁ ଭଉଣୀ ଗୁଣ୍ଡୁଚି, ତାର ପହଲି, ଧ୍ରୁବ ବୋଲି ଯୋଡ଼ିଏ ପୁଅଥିଲେ । ସେଇଥିରୁ ଗୋଟିଏ ବଡ଼ ଭଉଣୀ ବେଙ୍ଗକୁ ଦେଲା ।

ବୋଉ ସେତେବେଳକୁ ଦମ୍ଭର ସହିତ ସବୁକଥା ଶୁଣି, ଆଉ ଥରେ ଶ୍ୱେତାମ୍ବରୀ କଥା ପାଖକୁ ଫେରିଆସି ପଚାରିଲା । ଆଲୋ ଶ୍ୱେତାମ୍ବରୀର କ'ଣ ହେଲା । ମାଉସୀ ବୋଉ କାନ ପାଖକୁ ଟିକେ ମୁହଁ ଲଗେଇ, ଅତି ଆସ୍ତେ ଆସ୍ତେ ସାମାନ୍ୟ ନାକ ଟେକି କହିଲା, ତାକୁ ବି ତା'ଭିଣେଇ ରଖିଛି । ବୋଉତ ଆମର ଅଥୟ ଲୋକ । ସେଇଲେ ଖମାରେଇ ଆସି ଡ଼ାକିଲା, ସାଆନ୍ତାଣୀ ଆସ କୋଠିରୁ ଧାନ କଢ଼ା ହେଲେ ଲୋକ ମୂଲ ନେବେ । ନଡ଼ିଆ ଶଗଡ଼ଲାଗି ଗଲାଣି । ମୂଲ ଦେଇ ସାରି ନଡ଼ିଆ ଗଣା ହେବ । ଗାଈ ଜଗା ଟୋକାକୁ ପଇସା ଦିଅ, କୁଣ୍ଡା ସରିଯାଇଛି । ତୁମେ ଖମାର ଘରକୁ ଯାଅ, ମତେ ଯୋଡ଼େ ପଇସା ଦେଇଥାଅ । ମୁଁ ଦୋକାନରୁ ପାନ ନେଇ କରି ପଛେ ପଛେ ଯାଉଛି ।

ଆମ ଟ୍ରେଜେରୀ ଘର ଟିକେ ଅନ୍ଧାରିଆ । ମୋର, ସାନ ନାନୀର ଦରକାର ବେଳେ ଗୋଟେ ଦୀପ ଆଉ ଛାଞ୍ଚୁଣୀ ନେଇ ଟ୍ରେଜେରୀ ତଳ ଓଳେଇଦେଲେ ପଇସେ, ଦି'ପଇସା ନିଶ୍ଚେ ମିଳିବ । ବୋଉର ଗୋଟେ ଅଭ୍ୟାସ ଯୋଡ଼େ ପଇସା ଦରକାର ହେଲେ ବି, ସେ ଟ୍ରେଜେରୀ ଘରେ ପଶି, ତା'ଟ୍ରେଜେରୀକୁ ଧଡ଼ କରି ଖୋଲିବ । କାରଣ ସେ କାନିବନ୍ଧା ପଇସା ସବୁବେଳେ ଭୁଲିଯାଏ । ବୋଉ ଦିନକୁ ଯେତେଥର ଟ୍ରେଜେରୀ ପାଖକୁ ଯାଇ ଖୋଲେ ତାକୁ ମାପିଲେ ବାଟ ଦଶ ମାଇଲରୁ କମ୍ ହେବନି । ପୁଣି ଉଠାବସାର ଦଣ୍ଡ ବୈଠକି ଦିନ ଭିତରେ କେତେ ଶହଥର ହେବ କେଜାଣି ? ସେଥିରେ ତା'ର ସାମାନ୍ୟତମ ଅଳସ ନଥାଏ । ଆଉ ତ ପୁଣି ଅନ୍ୟାନ୍ୟ କାମ ସବୁବେଳେ ଲାଗିରହିଥାଏ ।

ସେଦିନ କିନ୍ତୁ ମୋ'ମନଟା ଦୁଃଖ ହୋଇଗଲା । ବୋଉ ଉଠି ଯିବା ସାଙ୍ଗେ ସାଙ୍ଗେ ମାଉସୀର ଦୁର୍ଲଭ ଗପଟି ବନ୍ଦହୋଇଗଲା । ମାଉସୀର ଶେଷ ପଦ କଥାରେ କ'ଣ ଥିଲା କେଜାଣି, ମୁଁ ସେ ପଦକ କଥା ଅନେକ ଦିନ ପର୍ଯ୍ୟନ୍ତ ଭାବିଲି । କିନ୍ତୁ ମୋ' ବୟସର ସାହାସ ହୋଇନି । ମା'ମାଉସୀ ସହିତ ସେ ବିଷୟରେ ଗପ ଜମେଇବାକୁ । ବଡ଼ନାନୀ ହେଲେ ଠିକ୍ ପାରିଥାନ୍ତା । ମୁଁତ ମାଉସୀର ଝିଅ ଭଳିଆ । ପୁଣି ଦୁର୍ଲଭା ସେ ବିଷୟରେ କିଛି ଗୁପ୍ତ ତଥ୍ୟ କହିବେ ବୋଲି ମୋର ଧାରଣା ତେଣୁ ଏପରି କଥା ମାଉସୀ ଠାରୁ ବୁଝିବାକୁ ମୁଁ ସାହାସ କଲିନି । ତା'ର ସେଇ ମୁହଁର ଭାବ ଭଙ୍ଗି ସହ ''ରଖିଛି'' ପଦର ଅର୍ଥ ମୁଁ ଅତି ସାନ ପିଲା ନ ଥିଲେ ବି ବଡ଼ ପିଲା ବି ନୁହେଁ । ବାରମ୍ବାର ସେ ପଦକ କଥା ମୋ ମନକୁ ଆନ୍ଦୋଳିତ କରୁଥାଏ । ବିରାଡ଼ି, କୁକୁର, ଚାକର, ଏମିତି କେତେ କାହା ସାଙ୍ଗରେ ସେ ଶବ୍ଦକୁ ମିଶାଇ, ମୁଁ ତା'ର ସିଦ୍ଧାନ୍ତ କରି ପାରିନଥିଲି । ତା' କହିବା ଭଙ୍ଗୀରେ ''ରଖିଛି'' ଶବ୍ଦର ହୀନ ମନ୍ୟତା ନିଶ୍ଚୟ କିଛି ଅଛି ବୋଲି, ମୋର ଦୃଢ଼ ଧାରଣା ଜନ୍ମିଥିଲା । ମଣିଷ ମନର ଗୋଟିଏ ଅଭ୍ୟାସ, ତୁମେ ଯେଉଁ କଥାକୁ ମନ ଭିତରୁ ଯେତେ ତଡ଼ିବାକୁ ଚେଷ୍ଟା କରିବ, ସେଇ ଶୂନ୍ୟସ୍ଥାନଟିକ ମାଡ଼ି ବସିବାକୁ ସେ ସେମିତି ସୁଯୋଗ ଉଣ୍ଡୁଥିବ । ସେଇ ଦୁର୍ଲଭାଟା ଯେକି ଶ୍ୱେତାମ୍ବରୀ ସାଙ୍ଗେ ଅଙ୍ଗାଅଙ୍ଗି ଜଡ଼ିତ ସେ ପୁଣି ଫେରି ଆସିଲା ତା ଶାଶୁଘରୁ ପ୍ରାୟେ ମାସେ ଖଣ୍ଡେ ପରେ ।

ତା'ର ଶଶୁର, ଖୁଡୁତାଶୁର, ଆଉ ଶାଶୁ, ଖୁଡ଼ିଶାଶୁ ଦିଅର ନଣନ୍ଦ ମିଶି ପରିପୂର୍ଣ୍ଣ ସଂସାରଟିଏ ହେଲେବି, ତାର ଖୁଡ଼ିଶାଶୁ ନିଃସନ୍ତାନ । ଦୁର୍ଲଭାର ବଡ଼ ନଣନ୍ଦଟି ଅତି ସୁନ୍ଦରୀ । ଆଖପାଖ ଗାଁରେ ନାଁ କଲାଭଳି ରୂପ । ହେଲେ କ'ଣ ହେବ ସେଇ ଝିଅର ବିଭାଘର ବୟସ ଯାଏଁ, ତାର ଆଉ ଭାଉ ଭଉଣୀ ହେଲାନି । ଲୋକେ ସିନା କଥାରେ କହନ୍ତି ପୁଅଟିଏ ହେବାକୁ, ସେ ଗୁହରୁ ପୋକ ଖାଇଥିଲା । କିନ୍ତୁ ଦୁର୍ଲଭାଙ୍କ ଶାଶୁ ବାସ୍ତବରେ ପୁଅ ପାଇଁ ଏଇପରି କାର୍ଯ୍ୟ କରିଥିଲେ ବୋଲି ଶୁଣାଯାଏ । ସେଇ ପୁଅକୁ ଦଶବର୍ଷ ପରେ ପୁଣି ଆଉ ଗୋଟିଏ ଝିଅ । ସେଇ ଝିଅକୁ ବର୍ଷେ ଦି'ବର୍ଷ ବେଳକୁ ଆଉ ଗୋଟିଏ ପୁଅ ହେଲା । ସାନ ପୁଅ ଝିଅ ଦି'ଜଣକୁ ଜନ୍ମରୁ ବଡ଼ ଯା' ସାନ ଯା'କୁ ଫୁଲନାଡ଼ କରି ଟେକି ଦେଇଥିଲା ।

ସାନ ପୁଅ ଝିଅ ଯୋଡ଼ିକ କକେଇ ଖୁଡ଼ିଙ୍କୁ ନାନା ବୋଉ ବୋଲି ପିଲାଦିନୁ ଜାଣିଥିଲେ । କକେଇ ଖୁଡ଼ିବି ଠିକ୍ ନିଜର ପିଲାଭଳି ପାଳିଲେ । ତେଣୁ ଦି'ଭାଗରେ ଗୋଟିଏ ମନ, ଗୋଟିଏ ହାଣ୍ଡିରେ ସବୁଦିନ କଟିଗଲା । ସେଇ ଦି ଶାଶୁ, ଦି' ଶ୍ୱଶୁରରେ ଦୁର୍ଲଭା ଗୋଟିଏ ବୋଲି ବୋହୂ ହୋଇଥାନ୍ତି । ତେଣୁ ଶାଶୁଘରୁ ଫେରିବାରେ ଯେତିକି ଡ଼େରି ହେଉଥାଏ । ମୋ ମନ ବି ୟାଡ଼େ ସେତିକି ତହଳ ବିକଳ ହେଉଥାଏ । ଯା ହେଉ ଟିକିଏ ଡେରିରେ ଶାଶୁ ଘରୁ ଫେରିଲେ ।

ହେଲେ ଯେତେବେଳେ ଆମେ ଦି'ସାଙ୍ଗ ଏକାଠି ହେଉ, ତାଙ୍କ ଶାଶୁଘରର ଆଦର ଅଭ୍ୟର୍ଥନାରେ ଦୁର୍ଲଭା ଏକବାରେ ଶତମୁଖ । ମୋତେ ଲାଗୁଥାଏ ସତରେ ମାସଟିଏ ବୋହୂ ହେଉ ହେଉ ମୋର ତାଙ୍କର ଆକାଶ ପାତାଳ ପ୍ରଭେଦ ହୋଇଗଲା । ସେ ଏତେ ବୁଦ୍ଧି ଜ୍ଞାନ କେଉଁଠୁ ପାଇଲେ । ପାହାନ୍ତିଆରୁ ଉଠିବାଠୁ, ଦୁଆର ଲିପି ଚିତା ଦେବାଠୁଁ, ଦି' ଶାଶୁ ଗାଧୋଇ ଆସିଲାବେଳକୁ ତାଙ୍କ ହାତରୁ ଓଦାଲୁଗା ନେଇ, ତାଙ୍କ ମୁଣ୍ଡରେ ସିନ୍ଦୁର ଲଗେଇ, ତାଙ୍କୁ ଓଳିଗି ହେବା, ମାଇପି ଖିଆକୁ ଖୁଡ଼ିଶାଶୁ ପଖାଳ କଂସା ବାଢ଼ିଲା ବେଳକୁ, ଇଏପିଣ୍ଡା ଓଳେଇ ପାଣି ଛିଞ୍ଚି, ମୁରୁଜରେ ମୁଣ୍ଡଳା କାଟି, ଖୁଡ଼ି ଶାଶୁ ହାତରୁ ଭାତ କଂସା ଆଣି ଥୋଇ ଦେବେ । ଏମିତି ନାନାଦି ବୋହୂ ପାଣିଆରେ ସିଦ୍ଧହସ୍ତା । ପୁଣି ଖୁଡ଼ିଶାଶୁଙ୍କ ଆଦର ତ ସୀମା ଡ଼େଇଁ ଯାଉଥାଏ । ଯାହାହେଲେ ବି ଖୁଡ଼ିଶାଶୁ ଚୁଲିମୁଣ୍ଡକୁ ଛାଡ଼ନ୍ତିନି । କେତେବେଳେ କେମିତି ସୁବିଧା ଅସୁବିଧାରେ ବରଡ଼ା ବିଡ଼ାଟିଏ, କି କାଠ ଖଣ୍ଡିଏ ଚୁଲିକି ବଢ଼େଇଦେବେ । ବୁଧବାର ଦିନ ଦୁର୍ଲଭା ହାଣ୍ଡି ଧୋଇ, ହାଣ୍ଡିଶାଳ ଲିପିବାକୁ ଗଲେ, ଖୁଡ଼ିଶାଶୁ ସବୁ କରିଦେଇ କହିବେ ତୁ ଖାଲି ମୁରୁଜ ପକେଇ ଦେ । ମୁଁ ଯା'ଙ୍କୁ କହିଦେବି ସବୁ ତୁ କରିଛୁ ବୋଲି । ସେ ମୋ ମୁରୁଜ ଚିହ୍ନିଦେବେନା ? ଏଇ ସବୁ କଥା କହିଲା ବେଳେ, ମୁଁ ଦୁର୍ଲଭାଙ୍କ ମୁହଁକୁ ବକ୍‌ବକ୍ କରି ଚାହିଁଥାଏ । ଏତିକି ଦିନ ମଧ୍ୟରେ ତାଙ୍କର କେତେ ଯେ ଦେହ ମନର ପରିବର୍ତ୍ତନ ହୋଇ ଯାଇଛି, କଥାରେ ତ ଫୁଲ ଝରିପଡୁଛି । ଆଉ ରୂପ ଗଞ୍ଜ ଜଙ୍ଗଲର ସରୁ ଚଲାପଥଟିରେ ସତେ ଅବା ନୂଆ ନାଳି

ଗୋଡ଼ି ସୁରୁକି ପଡ଼ିଲା ପରି ନାଲିଆ ସୁନ୍ଦାଟିଏ । ତଳକୁ ଚକ ଚକିଆ ନାଲିଆ ସିନ୍ଦୁର ଟୋପାଟିଏ । ଆଖିରେ ସରୁ କଜ୍ଜଳ ଗାର । ଦଣ୍ଡି ନାକରେ, ଛୋଟ ଡାଇମଣ୍ଡ କଟା ନୋଲି ଟିଲକଏ, ଶୋରିଷ ଠାରୁ ଟିକିଏ ବଡ଼ ବଡ଼ ଦି ନାକ ପୁଡ଼ାରେ ଦିଓଟି ସୁନା ଡିମ୍ବ । କାନରେ ଚେନ୍‌ଲଗା ଶଙ୍ଖ ପଦ୍ମ ବସା ଦୁଲ, ବେକରେ କଡ଼ି ବିଛା, ହାତରେ ତିନି ତିନି ପଟ ସୁନା କାଚ ସାଙ୍ଗରେ ଗୋଛେ ଗୋଛେ ନାଲି ପାଣିକାଚ । ଗୋଡ଼ରେ ଚିଡ଼ିଆ ବସା ଝୁଣ୍ଟିଆ ସାଙ୍ଗେ, ଝୁମୁରୁ ଝୁମୁରୁ ବାଜୁଥିବା ଘୁଙ୍ଗୁର ଲଗା ପାଉଁଜି । ଲୁଗା ପିନ୍ଧାର ଠାଣି ବଦଳି ଯାଇଛି । ସଂସାରର ସମସ୍ତ ଭାର ଧରି ଓଢ଼ଣାଟି ସବୁବେଳେ ମୁଣ୍ଡ ଉପରେ ସତେ ଯେମିତି ଚାପି ହୋଇ ରହିଛି, ମତେ ଲାଗିଲା ଦୁର୍ଲଭା ମୋ ଠାରୁ କେତେ ଦୂରକୁ ଘୁଞ୍ଚି ଯାଉଛନ୍ତି । ଯେଉଁ ଦୁର୍ଲଭାର ଦୁର୍ଲଭ ସାନିଧକୁ ମୁଁ ଏଡ଼େ ବ୍ୟାକୁଳ ଭାବରେ ଚାହିଁ ବସିଥିଲି, ସେ ସେଇ ଦୁର୍ଲଭା ହୋଇ ଆଉ ନାହାନ୍ତି ।

ହଁ ଦୁର୍ଲଭା କେତେଦିନ ଟିକିଏ ବଡ଼ ବଡ଼ଙ୍କ ଆଡ଼କୁ ଢ଼ଳିଲେ । କାରଣ ଭାଉଜ ଠାରୁ ଖୁଡ଼ି ଦେଢେଇମାନେ ଯିଏ ଯେତେବେଳେ ହେଲେ ସୁଦ୍ଧା ତାଙ୍କ ସାଙ୍ଗେ ତାଙ୍କ ଶାଶୁଘର ବିଷୟରେ ଆଲୋଚନା କରନ୍ତି । କହିନ୍ତି ''କିଲୋ ! ଶାଶୁ ଭଲଟି ? ନଣନ୍ଦ କେମିତି ? ଖୁଡ଼ିଶାଶୁ କିଛି କହନ୍ତିନି ତ ? ଏତିକିରେ ଦୁଲ୍ଲଭା ଗାଇ ଯାଆନ୍ତି ତାଙ୍କର ଆଦର ଯତ୍ନ ନିତି,ମୁଣ୍ଡ କୁଣ୍ଡା, ହଳଦୀ ଲଗା, ଗୋଡ଼ରେ ଅଳତା ଗାରଠାରୁ, ମୁଣ୍ଡରେ ବଉଳମାଳ, କେତେବେଳେ ଅଁଳା ଫୁଲମାଳତ କେତେବେଳେ ମଲ୍ଲୀମାଳ ଦେଇ ଗଡା ସଢ଼ଡ଼ା । ନିଇତି ପିଠା, ଖେଚେଡ଼ି, କୋଳି, ତାଳ ସତେ ଯେମିତି ସ୍ନେହ ଆଦରଗୁଡ଼ାକ ଆଜିସୁଦ୍ଧା ତାଙ୍କ ଦିହରୁ ଉତୁରି ପଶୁଛି । ସମସ୍ତେ କହନ୍ତି ଭାଗ୍ୟରେ ଥିଲେ ଏମିତି ଶାଶୁଘର ମିଳେ ।

ପୁଣି ଆଠ ଦିନକୁ ଆଠ ଦିନ ଶାଶୁଘରର ଭୋଇଆଣିଟା ବଡ଼ ଖଙ୍ଗା କି ଇଲିଶି ଶୁଖୁଆଟେ, କି ବଡ଼ ଫଡ଼ା ଚିଙ୍ଗୁଡ଼ି ଶୁଖୁଆରୁ ବିଶେ । ଅଁଳା ଫୁଲ କି ବଉଳ ଫୁଲ ମାଳଟେ ଧରି ଆସିବ ବୋହୂକୁ ଦେଖି ! ଦୁର୍ଲ୍ଲଭାଙ୍କ ବୋଉକୁ କହିବ, ଆଠଦିନ ହୋଇଗଲେ ବୋହୂକୁ ଟିକେ ନ ଦେଖିଲେ ସାଆନ୍ତାଣୀଙ୍କ ମନ ବୁଝେନି । ଦୁର୍ଲ୍ଲଭା ପୁଣି ମୁଣ୍ଡ ଉପରକୁ ଓଢ଼ଣା ଭଲ କରି ଟାଣି ବାଡି ଘରେ କଦଳୀ ପତ୍ରରେ ଭୋଇଆଣୀକି ଖେଚେଡି ଭାତ ଡାଲି ତରକାରୀ ଶୁଖୁଆ ଭଜା ବାଢ଼ିବେ । ଆଉ ସେ ଫେରି ନ ଯିବା ଯାଏଁ ଦୁର୍ଲ୍ଲଭା ବାଡି ଇରୁଣ୍ଡି ବନ୍ଧ ଡେଇଁବେନି । ପୁଣି କେଉଁଦିନ ଆରିସା ଗଣ୍ଡେ କି ତାଳ ପୋଡ଼ ପିଠାଟେ ଧରି ବୋହୂକୁ ଦେଖିବାକୁ କେଉଁ ପ୍ରଜାର ପୁଅ ଆସିବନି ? ତା ଖାଇବା ପିଇବା ଭଲ ମନ୍ଦ ବୁଝା ହୋଇ, ସେ ଯିବା ଯାଏଁ ତାକୁ ଦେଖା ନଦେଲେ ବି ଦୁର୍ଲ୍ଲଭା ଘରୁ ନ ବାହାରନ୍ତି । ଦୁର୍ଲ୍ଲଭାଙ୍କ ବୁଢ଼ୀ ମାର ଏ ସବୁଥିରେ ଭାରି ନଜର । ସେ ପାଟି କରନ୍ତି । କିଲୋ ନନା ତ ବାଟ ଦି କୋଷରେ ଶାଶୁ ଘର କଲା । ତୁ ଏମିତି ଉଦ୍ଦଣ୍ଡୀ ହୋଇ ବୋପା ମା ଙ୍କର ନାଁ ପକେଇବୁ କି ? ଦୁର୍ଲ୍ଲଭାଙ୍କ ବୋଉ ଶାଶୁଙ୍କ ଉପରେ ଗଜ ଗଜ ହୋଇ କହନ୍ତି, ସତରେ ଦୂରବନ୍ଧୁସୁନ୍ଦର ।ନହେଲେଦୂରପର୍ବତସୁନ୍ଦର । ଏଥିରୁ ଗୋଟିଏ ଗାଁ ମୁଣ୍ଡରେ ଶାଶୁଘର ହୋଇ ଝିଅଟା ନକଲା ଅବସ୍ଥା ହେଲାଣି ।

ଏମିତି ପ୍ରାୟ ଦୁଇଟା ମାସ ପରେ , ଦୁର୍ଲ୍ଲଭା ପୁଣି ମୋ ଆଡକୁ ମୁହାଁଇଲେ । ତାଙ୍କ ଶାଶୁଘର କଥା ମୋତେ ଶୁଣାଇଲା ବେଳେ, ସେ ଗୁଡାକ ମୋତେ ଜମା ସୁଖ ଲାଗେନି । ଏକାନରେ ପଶି, ସେ କାନରେ ବାହାରି ଗଲେ ସୁଦ୍ଧା ବେଳେବେଳେ ଖୋସାମତିଆ ପ୍ରଶଂସା ବି କରେ । କିନ୍ତୁ ମୋର ଅସଲ କଥା ଶ୍ୱେତାମ୍ବରୀ । ଦୈବ ଯୋଗକୁ ଦିନେ ଦୁହେଁ ବହୁତ ଡେରିରେ ଗାଧୋଇବାକୁ ନଈ ତୁଠରେ ପହଞ୍ଚିଲୁ । ସେତେବେଳକୁ ପ୍ରାୟ ମିଣିପି ଗାଧୁଆ ବେଳ । ମାଇପେ କେହି ଆଉ ମାଇପି ତୁଠରେ ନାହାନ୍ତି । ଆମେ ଦୁହେଁ ପାଣିରେ ବସି ଗପ ସପ ଆରମ୍ଭ କଲୁ । ସେହିଦିନ ଦୁର୍ଲ୍ଲଭା ମୋତେ ଏକାନ୍ତରେ ପାଇ ତାଙ୍କ ମନର ଗୋଟିଏ ଗୋପନ କଥାରୁ ପଦେ ମୋତେ କହିଲେ । ଯାହାକୁ କି ସେ ଖୁଡି ଦେଠେଇ ମା ମାଉସୀ ପିଇସୀ କାହାରି ଆଗରେ କହି ପାରିବେନି । ମତେ ଧୀରେ ଧୀରେ କହିଲେ, ଜାଣିଛ ଦୁର୍ଲ୍ଲଭା, ମୋର ଏବେ ପାନ ଅଭ୍ୟାସ ହୋଇଗଲାଣି । କାହିଁକି କହିଲ ? ମୁଁ କିଛି ନଭାବି ପଚାରିଲି, କାହିଁକି ? ତୁମ ଶାଶୁଘରେ ବୋଧେ ସମସ୍ତେ ପାନ ଖାଆନ୍ତି କି ? ସେ କହିଲେ, ସମସ୍ତେ ନୁହଁ ଦି ଶ୍ୱଶୁର ଖାଆନ୍ତି । ଆଉ ଇଏ ବି ଖାଆନ୍ତି ।

ଦିନେ ମୁହଁ ଅନ୍ଧାର ବେଳେ ମୁଁ ଉପର ଘର ପଞ୍ଜରକୁ ଧରି ଦାଣ୍ଡକୁ ଚାହିଁ ଆମ ଗାଁ କଥା ମନେ ପକଉଥିଲି, କାହିଁକି କେଜାଣି ସେଦିନ ତମ ମାନଙ୍କ କଥା ମନେ ପଡି, ମତେ କାହିଁକି ଖାଲି କାନ୍ଦ ମାଡୁଥିଲା । ମୁଁ ଜାଣି ପାରିଲିନି, ସିଏ କେତେବେଳେ ସେଇ ସନ୍ଧୁ ଅଢ଼ଙ୍ଗକୁ ଆସି ଝରକା ମିଶା ମୋ ହାତଟିକୁ ଧରି ପକେଇଲେ । ମତେ ବଡ ବ୍ୟସ୍ତ ଲାଗିଲା । ମୁଁ ହାତକୁ କାଢ଼ି ଆଣିଲା ବେଳକୁ ମୋତେ କହିଲେ, ତୁମେ ସବୁଦିନେ ଏତିକି ବେଳେ ଏଇଠିକି ଆସିବ । ମୁଁ ମନା କଲାରୁ ସେ କହିଲେ ତୁମକୁ ମୋ ରାଣ, କହି ପାନ ଖଣ୍ଡିକ ମୋ ହାତରେ ଗୁଞ୍ଜିଦେଇ ପଳେଇଗଲେ । କାଳେ ଶାଶୁ କି ନଣନ୍ଦ କିଏ ଦେଖିଦେବେ ବୋଲି ମୋ ଗୋଡ଼ହାତ ଥରିଲା ହେଲେ କ'ଣ କରିବି କହିଲ, ରାଣତ ପଡ଼ିଛି । ସବୁଦିନେ ସେତିକିବେଳେ, ସେଇଠି ଠିଆ ହେବିନି କି ? ସେହି ଦିନଠଉଁ ସବୁଦିନ ଖଣ୍ଡେ ଖଣ୍ଡେ ମିଠାପାନ, ମୋ' ପାଟିରେ ଦେଇଦେବେ । ମୁଁ ଯେତେ ଚଞ୍ଚଳ ପାରେ, ସେ ଖଣ୍ଡ ଚୋବେଇ ଦେଇ, ନଳାରେ କୁଳୁକୁଞ୍ଚା କରିଦିଏ ସିନା ? କିନ୍ତୁ ଏବେ ଖାଇସାରି ପାନ ଖଣ୍ଡେ ନ ଖାଇଲେ, ପାଟିଟା ଆଉ ଜମା ଭଲ ଲାଗୁନି । ମୁଁ ପାନ ଖାଉଛି ଜାଣିଲାରୁ ନନା ଏବେ ଖାଇସାରି ପାନ ଖାଇଲାବେଳେ, ମୋ' ପାଇଁ ପାନପେଡ଼ିରେ ଖଣ୍ଡେ ପାନ ଭାଙ୍ଗି ରଖିଦେଇ, ଗଞ୍ଜପା ଖେଳିବାକୁ ଯାଉଛନ୍ତି ।

କେଜାଣି କାହିଁକି, ଏହା ଆଗରୁ ସେ ତାଙ୍କ, ଶାଶୁଘର କଥା, ମୋତେ ଶୁଣାଇଲାବେଳେ, ମୋତେ ଯେତିକି ବିଶାଦ ଲାଗୁଥିଲା, ସେଦିନ ତାଙ୍କ ସ୍ୱାମୀଙ୍କ ଗୁପ୍ତ ସ୍ନେହ ଆଦର, ଆଉ ସ୍ୱାମୀଙ୍କ ରାଣର ପରାକାଷ୍ଠା, କଥାଗୁଡ଼ାକ ମୋତେ ଶୁଣିବାକୁ, ସେତିକି ସୁଆଦ ଲାଗିଲା । ସତେ ଯେମିତି, ମୋର ସେହି କିଶୋରୀ ଜୀବନଟା ହଜିଗଲା

ଆଉ ଗୋଟେ ଗୁପ୍ତ ରାଇଜରେ । ଯେଉଁଠି ଅନ୍ଧାରରେ ଲୁଚି ରହିଛି, ଅଫୁରନ୍ତ ଆନନ୍ଦ । ସ୍ନେହ, ଶ୍ରଦ୍ଧା, ଭକ୍ତି ଆଉ ପ୍ରତିଶ୍ରୁତିର ଦୃଢ଼ତା । ମୁଁ ସେଇ ଦିନଠାରୁ ତାଙ୍କର ସବୁଠାରୁ ବେଶୀ ଆପଣାର ହୋଇଗଲି । ମୋ' ମନର ଆନନ୍ଦରେ, ଆଗର ସବୁ ଅଭିମାନ, ସେଇ ନଈ ପାଣିରେ ମିଳେଇ ଯାଇ, ଦୁହିଁଙ୍କ ଭିତରେ ଚରମ ବନ୍ଧୁତ୍ୱର ବନ୍ଧ ବାନ୍ଧି ହୋଇଗଲା । ସେହି ଦିନଠାରୁ ଦୁହେଁ ଦୁହିଁଙ୍କର ଅତି ଅନ୍ତରଙ୍ଗ ବନ୍ଧୁ ହୋଇ ଯାଇଥିଲୁ । ଯେଉଁ କଥା ସିଏ ଆଉ ତାଙ୍କ ସ୍ୱାମୀଙ୍କ ବ୍ୟତୀତ ଆଉ କେହି ଜାଣି ନଥିଲେ । ସେହି ସବୁ କଥା ଶୁଣିବାର ଅଧିକାର ମୋର ଅଛି ବୋଲି, ମହା ଆନନ୍ଦରେ ମୁଁ ଫାଟି ପଡୁଥିଲି । ଏହିସବୁ ସତ୍ତ୍ୱେ ସେହି ଶ୍ୱେତାମ୍ବରୀର ''ରଖିଛି''ର ଗୋପନ ରହସ୍ୟ ମୋ ମନରୁ ଲିଭି ନଥିଲା ।

ଯେମିତି ସାପୁଆ କେଳା ସାପ ଖେଳାଇବା ଆଗରୁ, ପେଡ଼ିର ଗୋଟିଏ ପଟ ଟେକିଦେଇ ଦୁଇ ଥର ଫୁଙ୍କି ଦିଏ ତାପରେ ସେ ପେଡ଼ି ଭିତରୁ ସାପଙ୍କ ଗର୍ଜନ ଶୁଣି, ଶିଶୁ ମନରେ ସାପ ଦେଖାର ଉତ୍କଣ୍ଠା ବଢ଼ିଲା ପରି ଦୁର୍ଲଭାଙ୍କ ଅଧାକୁହା କଥାଗୁଡ଼ାକ, ମୋ ମନ ଚାଙ୍ଗୁଡ଼ି ଭିତରେ ସାପର ଗର୍ଜନ ପରି ମୋତେ ଅଥୟ କରି ପକାଉଥାଏ । ସବୁବେଳେ ମୋ ମନଟା, ତାଙ୍କ ପଛରେ ଗୋଡ଼ାଇ ଉହ୍ୟ ରହିଥିବା କଥା କହିବାର ଭଙ୍ଗି ଦେଖି ଆଉ ବହୁତ କିଛି ଶୁଣିବାର ଆକାଂକ୍ଷା ମୋତେ ବିଚଳିତ କରି କପାଉଥାଏ । ମୁଁ ସମବୟସି ହେଲେ ବି ନିଜକୁ ନ୍ୟୁନ ବିଚାରୁଥାଏ । ମୁଁ ବାହାନା ଖୋଜି ଲାଗିଥିଲି ଶ୍ୱେତମ୍ବରୀ ପାଇଁ । ପୁଣି କଥାର ଖିଅ ଧରି ପଚାରିଲି, ଦୁର୍ଲଭା ! ସେ ଶ୍ୱେତମ୍ବରୀ କ'ଣ ସତରେ ବିଧବା ?

ଦୁର୍ଲଭା ସଙ୍ଗେ ସଙ୍ଗେ ଗୋଟିଏ ଅତି ବିଜ୍ଞ ମଣିଷ ଠାଣିରେ ଗାମ୍ଭୀର୍ଯ୍ୟଭରା ମୁହଁଟିକୁ ଅଳ୍ପ ହଲେଇ କହିଲେ, ଖାଲି ବିଧବା ନୁହେଁ, ଦୁର୍ଲଭା । ବାଲ୍ୟ ବିଧବା ନ ହେଲେବି, ଷୋଳବରଷି ବିଧବା, ଶାଶୁଘରକୁ ଯିବାର ଦୁଇ ତିନିଟା ବର୍ଷ ନ ଯାଉଣୁ ବରକୁ ଖାଇଛି । ମୁଁ ପଚାରିଲି ସେ ତୁମର କ'ଣ ହୁଅନ୍ତି ? ତୁମ ଘରକୁ କାହିଁକି ଲୋଡ଼ା ହୋଇଥିଲେ । ସେ କହିଲେ ସେ ଆମର ଏପଟୁ କିଛି ନୁହଁନ୍ତି, ଶାଂଶୁଘର ଆଡୁ ବନ୍ଧୁ । ଆମ ଶାଶୁଘରେ ତାଙ୍କୁ ଭାରି ଖାତିର କରନ୍ତି । ସେ ଭାରି ବଡ଼ ଲୋକ ନାଁ । ମୋ ପିଇଶାଶୁଙ୍କ ସାନ ପୁଅକୁ ପୁଅ କରିଛନ୍ତି ।

ମୋ ଶ୍ୱଶୁର ତାଙ୍କ ପୁଅକୁ ବରଯାତ୍ରୀରେ ଲୋଡ଼ିଥିଲେ କିନ୍ତୁ ଶ୍ୱେତାମ୍ବରୀ ଜଗୁକୁ ଜମା ଏକୁଟିଆରେ କୁଆଡ଼େ ଛାଡ଼ିବେନି । କି, ଜଗୁ ଯଦି ଜିଦ୍ ଧରିଲା, ତାକୁ କେହି ଅଟକେଇ ପାରିବେନି । ଜଗୁ ଜିଦ୍ କଲା, କହିଲା ମୋ ବୋଉ ମୋ ସାଙ୍ଗରେ ଯିବ । ମୋ ଶ୍ୱଶୁରେ ସେ କଥା ନନାଙ୍କୁ କହିଥିଲେ । ଆଉ ଯାହାର ଯାହା ହେବ ସିନା । ଶ୍ୱେତାମ୍ବରୀଙ୍କ ସମ୍ମାନରେ ଯେମିତି ଟିକିଏ ଊଣା ନହୁଏ । ସେ ମା ପୁଅ କ'ଣ ଖାଇବେ ବୋଲି, ଆମ ଘରେ ପନ୍ଦର ଦିନ ଆଗରୁ ଚିନ୍ତା । ନବାତ ଚୁଡ଼ାଘଷା, ଖଇ, ଖିରି, କଦଳୀଚକଟା ହେବ ବୋଲି କଥା ହେବାକୁ ବୋଉ କହିଲା, ନହେଲେ ପୁରୀରୁ କାହା

ହାତେ ଅଭଡ଼ା ଆଣି, ପଖାଳି ଦେବା । ନନା ହସିଲେ, କହିଲେ (ଲୁଚିଚି ନା ଗୋଡ଼ ଯୋଡ଼ିକ ଦିଶୁଛି) ସେ ପରା ଦିନରେ ଖରା, ରାତିକି ତରା । ସେ କ'ଣ ଏମିତି ସେମିତି ଲୋକ । ସେ ପ୍ରହରାଜଙ୍କ ଶାଳୀଟି ।

ପ୍ରହରାଜେ ଯେତେ ଲେଖା ଲେଖି କରନ୍ତି ତାଙ୍କ ଘରେ ଯେତେ ଲୋକ ଖାଅ ପିଅ କରନ୍ତି । ପୂଜାରୀ, ଚାକର, ଟହଲିଆ, ଇଏ ସମସ୍ତଙ୍କର ମାଲିକ । ଏମିତି କେତେ କ'ଣ ବୋଉକୁ ନନା ବଙ୍କେଇ, ବଙ୍କେଇ କହିଲେ । ବୋଉ ହସିଲା । ମୁଁ ପଚାରିଲାରୁ କହିଲା, ସେଇଟା ଭଲ ମାଇପି ନୁହେଁ । ଛାଡ଼ ବନ୍ଧୁ ବାନ୍ଧବଙ୍କ କଥା ଆମର ସେଥିରେ କ'ଣ ଅଛି । ଜାଣିଲ ଦୁର୍ଲଭା, ମୁଁ ସିନା ଖାଲି ଭଲ ମଣିଷ ନୁହେଁ ବୋଲି ଜାଣିଥିଲି । ରାତିରେ ବଡ଼ ନଣନ୍ଦଙ୍କ ପାଖେ ଶୋଇଲାବେଳେ ଦିନେ ଦିନେ ଖୁଡ଼ିଶାଶୁ ଆମ ପାଖେ ଶୁଅନ୍ତି ।

କୁ କଥାରୁ ଦିନେ ଶ୍ୱେତାମ୍ବରୀଙ୍କ କଥା ପଡ଼ିଲା । ନଣନ୍ଦ କହିଲେ ଖୁଡ଼ି, ଜଗୁବୋଉ କେମିତି ବରଯାତ୍ରୀରେ ଗଲାକିଲୋ ସେତ ମାଇପିଟେ, ତାକୁ ଲାଜ ମାଡ଼ିଲାନି । ଯେତେ ହେଲେ ନୂଆ ବନ୍ଧୁ । ସେଇଠୁ ତ ଖୁଡ଼ିଶାଶୁ ଗାଇଲେ ତାଙ୍କ ଗୁଣ । କହିଲେ ହଇଲୋ ସେଇଟାକୁ କ'ଣ ଲାଜ ନା ବୋଝ । ସେ ନିୟଂଶ ଗାଦିକି ତୋ ଜେଜେ ନାନୀ, କେମିତି ପୁଅ ଦେଲେ କେଜାଣି । ବାପଘର କୂଳ ହେଲେ ରଖିଥାନ୍ତା । କ'ଣ ନା ଘଇତା ନଥାଇ ନିଜେ ପୁଅ କରିଛି । ଭିଣେଇତ ମୁଣ୍ଡେଇଛି । ବାପଘର କୂଳ ପଛେ ବୁଡୁ ।

ଦୁର୍ଲଭା କହିଲେ, ମୁଁ ନଣନ୍ଦଙ୍କୁ ସେଦିନ ପଚାରିଲି । ଏ ନୂଆ ଶାସନ କ'ଣ ତାଙ୍କ ବାପଘର ? ଖୁଡ଼ିଶାଶୁ କହିଲେ ହଅଲୋ ସେ ତା' ବୋପାଘର । ତିନି ଭଉଣୀରୁ କିଏ କୁଆଡ଼େ ଗଲେ । ମଝିଆଣୀ ହେଲା ସର୍ବେସର୍ବା । ବଡ଼ ପୀତାମ୍ବରୀ ଗୋବିନ୍ଦ ପ୍ରହରାଜଙ୍କୁ ଭିଆ ହୋଇଥିଲା । କୁଆଡ଼େ ତାଙ୍କ ଘର କଟକ ଆଡ଼େ । ଇଏ ହେଲା ଶ୍ୱେତାମ୍ବରୀ । ଯା'ଶାଶୁଘର ଢ଼ୋଲ ବୁଢ଼ା ସନ୍ଧ । ସାନ ନାଁ ମାହେଶ୍ୱରୀ । ସେ ଭିଆ ହେଇଥିଲା ପୁରସ୍ତମ ସତ୍ପଥିଶ୍ରୁ ଘରେ ଆଉ ଏ ଶ୍ୱେତାମ୍ବରୀ ରାଜପୁଅ ପରିବାର । ସତିଆନାସୀ ସବୁ ସାଇଲା । ଭିଣୋଇ କଥାରେ ବଉଁଶ ବୁଡ଼େଇ, ଥାନ ଉଠେଇଦେଲା ।

ବର ତାର ଗୋଟିଏ ପୁଅ । ଯେମିତି ମରିଗଲା, ଭିଣେଇ ଯାଇ ତାକୁ ବାପ ଘରକୁ ଘିନିଆସିଲା । ବାକି ଚାରି ନଣନ୍ଦରୁ ତ ଗୋଟେ ମରିଥିଲା । ପୁଣି ଭଉଣୀ ପାଖରେ ଗୋଟେ ମଲା । ରାଣ୍ଡ ଶାଶୁକୁ କିଛି ଦେଲାନି । ଆଉ ନଣନ୍ଦ ଯୋଡ଼ାକ କଥା କିଏ ପଚାରେ ? ଭିଣେଇତ କାହିଁରେ କ'ଣ ନାମଜାଦା ଲୋକ । ପୁଣି ବଡ଼ ଓକିଲ । କେତେ ଦିନକେ ଡହଳ ବିକଳ ହେଇ ହେଇ ଦର ପାଗେଲି ଶାଶୁ ମରିବାକୁ ପଡ଼ିଲା । ଯେତେ ଦେଖିବ ବୋଲି ବୋହୂକୁ ଖବର ଦେଲା, ବୋହୂତ ଗଲାନି । ତା' ଭିଣେଇ ଛାଡ଼ିଲାନି ।

ବୁଢ଼ୀ ନ ମରୁଣୁ ଲୋକେ ଘରଦ୍ୱାର, ପଥର ତାଡ଼ିନେଇ, ସାହି ପଡ଼ିଶା, କୋଠାବାଡ଼ି ତୋଳି ଦେଇଗଲେ । ଶାଳୀ ଭିଣେଇଙ୍କର ଯାଏ ଆସେ କେତେ ? କ'ଣ ଝାଳବୁହା ଧନ

ଯେ ବାଧିବ ? ଭିଣେଇ ଯାହା ଯେମିତି ବିକି କିଣି ସଫା କରିଦେଲା । ମୃଷାବର, ଶ୍ୱେତାମ୍ବରୀର ନଣନ୍ଦେଇ ଭଗି ଦାଶ କିଛି କମ୍ ଲୋକ ନୁହଁନ୍ତି । ସେନ୍ତ ତା' ଶାଳୀର ସବୁ ଜମି ବିକି, କିଣି ଖାଇ ଶାଳୀକି ଗଡ଼େଇ ମାରିଲା । ଏଣେ ଶଳା ଭାଉଜର ଭିଣେଇ, ପ୍ରହରାଜେ ସେ ପୁଣି ଓକିଲ । ତାଙ୍କୁ ବା କ'ଣ କହିବ ? ତାଙ୍କୁ ଭଗି ଦାଶର ଭାରି ଡର । କାଳେ କାହାକୁ କ'ଣ କହି ଯଦି ତା' ସାଙ୍ଗେ ଲାଗିଯିବ । ତେବେ ତା ଦଫାରଫା ହୋଇଯିବ ।

ସେ ଭଗିଦାଶ ବି ସବୁରି ସାଙ୍ଗରେ ମିଶି, କିଛି ଭଲ ପଥର ଦୁଆର ବନ୍ଧ, ଜଳାକବାଟି ତାଡ଼ିକରି ନେଇଗଲା । ନିଜେ ଗୁହାଳ କୋଠି ଘର ଘରିକା କଲା ସିନା, କିଛି କଉଡ଼ିଆ ଜିନିଷ ପାଇଲାନି । ପ୍ରହରାଜେ ତ ଶାଳିକି ହାତ କରି, ସବୁ ବୋହି ନେଇଥିଲେ । ଲୋକେ କହନ୍ତି ''ସୁନା ଇଟା କରି କାନ୍ଥମାନଙ୍କରେ ଗୁପ୍ତି କରି ରଖିଛନ୍ତି । କେବଳ ଶାଳୀ ଭିଣେଇ ଦିହେଁ ଜାଣନ୍ତି । ଏଇଲେ ଶ୍ୱେତାମ୍ବରୀର କ'ଣ ବେତେ ସୁନା ଅଳଙ୍କାର ନଥିବ ? କୁଆଡ଼େ ରାତିକି ସେତିକି ଲଦିହୁଏ । ଆଉ ରାତି ନ ପାହୁଣୁ କାଢ଼ି ଥୋଇଦିଏ । କାଳେ କାହା ହାବୁଡ଼େ ପଡ଼ିଯିବ ବୋଲି । ହାତ ଯୋଡ଼ାକ ଲୁଗା ଭିତରେ ଲୁଚେଇ, ଲୁଚେଇ ଅଭ୍ୟାସ ହୋଇ ଗଲାଣି ଯେ, ଆଉ ଦିନରେ କାହା ଆଗରେ ହାତ ଲୁଗାରୁ ବାହାରୁନି ।

ଆଉ ଏଠି ନୂଆ ଶାସନରେ କ'ଣ କମ୍ ସମ୍ପତ୍ତି ? ଶ୍ୱେତାମ୍ବରୀ ବାପରତ ମହାଜନୀ କାରବାର ଥିଲା । ଭଲ ଜମିଦାରୀ ବି ଥିଲା । ତିନିଟା ଝିଅଙ୍କୁ ତିନିଟା କୁଣ ରାଜାଙ୍କୁ ଦେଇଥିଲେ । ଭାବିଥିଲା କାହାଠୁ ଗୋଟେ ପୁଅ କରିବ । ବଡ଼ର ବର ପ୍ରହରାଜେ ଏତେ ବଡ଼ ଲୋକ ଯେ, କଟକରେ ପାଠ ପଢ଼ିଲା କାଳରୁ ଘର ତୋଳା ହୋଇ ଗୋଟିଏ ପୂଜାରୀ ରହି ପୁଅ ପାଠ ପଢ଼ିଲା ହେଲେ ମୋ ନଣନ୍ଦ କହନ୍ତି, ସେ ପ୍ରହରାଜଟା ପିଲା ଦିନରୁ ଭାରି ଛତରା । ତା' ବାପା ଯାଡ଼େ ଗୋଡ଼େ ଗୋଡ଼େ ଜଗି ଥାଏ । ଇଏତ ପାଠୁଆ ଟୋକା, କୋଉ ବାଟେ ବାପକୁ ଚିଟା କାଟି ତା ବାଟେ ସିଏ । ବାପ ବେଳେବେଳେ ରାଗି ତା ପାଠପଢ଼ା ବନ୍ଦ କରିଦିଏ । ହେଲେ ମାମୁଁ ଭଣଜାକୁ ମୁଣ୍ଡେଇ ଥାଏ । ଭଣଜା ଭଲ ପାଠ ପଢ଼େ ବୋଲି ମାମୁଁ ଗୋଡ଼ତଳେ ଲାଗେନି । ଭିଣେଇର ହାତଗୋଡ଼ ଧରି ମୁଁ ଜଗିବି କହି, ଭଣଜାକୁ ଆଖିରେ, ଆଖିରେ ରଖିଥାଏ । ହେଲେ ସେ (କୃଷ୍ଣ ଦି ପୁତ୍ର ବଳିୟାର) । ଏ ପାଠ ଲୋଭରେ ଆମ ନଣନ୍ଦଙ୍କ ଦେଢ଼ଶୁର ତାକୁ ଜୋଇଁ କରିଥିଲେ । ପୁଣି ଭାରି ବଡ଼ଲୋକ । ପୁଣି ଗୋଟିଏ ବୋଲି ପୁଅ । ସବୁ ବଦଗୁଣ ସେଇଥିରେ ଲୁଚିଗଲା ।

ଆଉ ଏ ଶ୍ୱେତାମ୍ବରୀ ତ ମଝିଆଁ । ବର କ'ଣ ଜାଣିଛିକି ନାହିଁ । ଦିନ କେତେଟାରେ ଛେଦା ପିନ୍ଧି ବାପ ଘରକୁ ଆସିଲା । ଆଉ ସଭା ସାନଝିଅ ମାହେଶ୍ୱରୀ । ସେ ପୁରସ୍ତମରେ ମିଶ୍ରଘରେ ଭିଆ ହୋଇଥିଲା । ଧନ ପିଢ଼ା ଫୁଟି ମାଡ଼ି ଯାଉଥିଲା । ସୁନା ଥାଳିରେ ଖାଇ, ରୂପା ଢ଼ାଳରେ ଆଞ୍ଚୋଉଥିଲା । ସିଏ କି ନିଶା ଧଇଲା କେଜାଣି । ତା'ଘର ଧନରେ ସାହି ପଡ଼ିଶା ଧନ କରିଗଲେ । ଯେଉଁ ବର ମୁଣ୍ଡେଇ ଥିଲା, ସେ ପୁଣି ମୁହଁ ଚାହିଁଲାନି ।

ତା'ର ଗୋଟିଏ ପୁଅ, ଗୋଟିଏ ଝିଅ । ତା' ବର ସେଇ ପୁଅ ଝିଅଙ୍କ ମୁହଁ ଚାହିଁ ରହିଲା । ଯେତେ ଯିଏ ଲଗେଇଲେ, ଆଉ ବିଭା ହେଲାନି । କହିଲା ଏଡ଼େ ସୁନ୍ଦର, ଏଡ଼େ ଗୁଣର ମାଇପ ଯଦି ଏମିତି ହେଲା, ଜାଣି ମୋ ଭାଗ୍ୟ । ଏମିତି କହି ସାନ ଛୋଇଁ ତା ପିଲାକୁ ଧରି ରହିଲାଯେ, ଏଣିକି ଆଉ ଚାହିଁଲାନି ।

ଯେତେକ ନାଟ ଏଇ ପ୍ରହରାଜର । ଯୁଆଡ଼େ ଯିବ ଶାଳିକି, ଶାଳି ପୁଅକୁ ସାଙ୍ଗରେ ନେବ । ପୁଅ କ'ଣ ଏବେ କଟକରେ ପାଠ ପଢୁଛି । ପ୍ରହରାଜଙ୍କୁ ତ ମଉସା ଡାକୁଛି । ପ୍ରାୟ ଅଧିକାଂଶବେଳେ ସମସ୍ତେ କଟକରେ ରହୁଛନ୍ତି । ମୋ ନଣନ୍ଦ କହିଲେ ଖୁଡ଼ି, ଗାଁ ଲୋକ କିଛି କହନ୍ତି ନି ?

ଖୁଡ଼ି କହିଲେ, ଆଲୋ ତାକୁ କିଏ କ'ଣ କହିବ ଗାଁକୁ ଆସିଲେତ ଲୋକେ କୃତ୍ୟ କୃତ୍ୟ ସବୁରି ଭଲ ମନ୍ଦ ବୁଝିବ । ସୁବିଧା ଅସୁବିଧାରେ ସାହାଯ୍ୟ ହେବା ତେଣେ କଟକରେ କ'ଣ ଗୋଟେ ବଡ଼ ବହି ଲେଖିଛି ଯେ, ସେମିତି ବହି ଆଉ ଖଣ୍ଡ ମଣ୍ଡଳରେ ନାହିଁ । ସେ ସାହି ଗୋଟିକୁ ଲୋକେ ସେ ବହି ନା'ରେ ଚିହ୍ନନ୍ତି । କେତେ ରାଜା, ମହାରାଜା ସବୁ ଟଙ୍କା ଦେଇ ସେ ବହି ଛପଉଛନ୍ତି । ଆମ ଏ ମୂଲକରେ ଯେତେ ବଡ଼ ବଡ଼ ମଣିଷ ଅଛନ୍ତି, ସମସ୍ତେ ତାକୁ ଧନ୍ୟ ଧନ୍ୟ କରୁଛନ୍ତି । ଆଉ ଏଣିକି କିଏ ଚାହୁଁଛି । ରାଣ୍ଡ ଶାଳୀତ ଭିଣେଇ ତାକୁ ସାହାଯ୍ୟ କରୁଛି । ପୁଣି ଶାଳୀ ଖଣ୍ଡିକ ସବୁ ଜଞ୍ଜାଳ ସମ୍ଭାଳୁଛି ।

ପ୍ରହରାଜର ମାଇପ ତେଣେ ଅଭିମାନରେ ଗାଁରେ ରହିଲା ଯେ, ବର ମାଇପଙ୍କର ଜମା ଦଣ୍ଡେ ପଡ଼େନି ବୋଲି କହନ୍ତି । ମାଇପତ ବୋପାଘର ବି ମାଡ଼େନି । କହିଲା ଜଣେତ ମଲା, ଜଣେ ଗଲା । ବାକି ସେଇ ଜଣକ ସବୁ ଭୋଗ କରୁ । ଦୁର୍ଲଭା ଏତିକି କହିଲେ, ଖୁଡ଼ି ଶାଶୁ ଆଉ ଅବା କ'ଣ କହିଥାନ୍ତେ । ମୋ ଶାଶୁ ଖୁଡ଼ିଶାଶୁଙ୍କୁ ବାରମ୍ବାର ମନା କରିଥିଲେ ଯେ, ପିଲା ବୋହୂ ହେଲେ କ'ଣ ହେଲା, ଯାହା କହିବ ନଣନ୍ଦକୁ କହିବ । ତତେ ଯେମିତି କଥା ନକହେ, ମୁଁ କିନ୍ତୁ ଖୁଡ଼ିଶାଶୁଙ୍କୁ ଲୁଚେଇ, ଲୁଚେଇ କଥା କହେ । ସେଦିନ ଟିକିଏ କାନଡ଼େରି ମୋ କଥା ଶୁଣି ପାରିଛନ୍ତି କି କ'ଣ ? ସେଇ ପିଣ୍ଡାରୁତ ଶାଶୁ ଗୋଟେ ପାଟି କଲେ । କହିଲେ ସାନ, ତତେ ଆଗରୁ କହିଛି ପରା, ('ବୋହୂ ଫୁଲାନା, ଝିଅ ବୁଲାନା') ଏତିକିରେ ଆମେ ସମସ୍ତେ ଚୁପ୍ । ତେହିଁ ଆର ଦିନ ତ ମୁଁ ଏଠିକି ଆସିଲି ।

ଦୁର୍ଲଭାଙ୍କର ଶାଶୁଘର ପ୍ରତି ସ୍ନେହ, ଶ୍ରଦ୍ଧା ଭିତରେ ଯେ, ଏପରି ଗୋଟିଏ ଆତଙ୍କ ଲୁଚି ରହିଛି । ଜାଣି ମୋ ମନ ଭାରି ଆନନ୍ଦ ହେଲା । ଭାଗବତ ବାଣୀ କହିଚି ପରା- ''ଏ ମନ ଖୋଜୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା ।'' ମୁଁ ସେହି କାଳର କଥା ବିଚାରି ଆଶ୍ଚର୍ଯ୍ୟ ହୋଇଯାଏ । ସତେମ କାଳର ହାତ କେଡ଼େ ଲମ୍ବା । ସେହି ଶ୍ୱେତାମ୍ବରୀକି ବାରମ୍ବାର ଧରି ଆଣି, ମୋ ଆଗରେ ଠିଆ କରାଇ ଦେଇଛି ବିନା ଦ୍ୱିଧାରେ ।

ମୋ ବଡ଼ ଭାଉଜ କଟକ ଜିଲ୍ଲା ବରିଆଡ଼ର ଚୌଧୁରୀ ଘର ଝିଅ । ଭାଉଜଙ୍କ ନନା ବି ସେ ଅଞ୍ଚଳର ଜଣେ ବଡ଼ ଜମିଦାର । ବିଶିଷ୍ଟ ଭଦ୍ରଲୋକ । ସେତେବେଳେ ସେ

ଥାନ୍ତି, ସତ୍ୟବାଦୀ ମନ୍ଦିର ''ପରିଚାଳନା କମିଟି''ର ସଭ୍ୟ । ଗୋବିନ୍ଦ ପ୍ରହରାଜ ବି ସେହି ପଟର ଲୋକ । ପ୍ରହରାଜ ଆଉ ଚୌଧୁରୀଙ୍କର ବନ୍ଧୁତ୍ୱ ବଡ଼ ନିବିଡ଼ । ପୁଣି ଦୁଇଜଣଯାକ ବି ଗୋଟିଏ କମିଟିର ସଭ୍ୟ । ଆଉ ଆମ ସତ୍ୟବାଦୀର ହୋତା ପରିବାର, ସେତ କାହିଁରେ କ'ଣ ବଡ଼ ଜମିଦାର । ସେହି ହୋତା ବଂଶର ସବୁଠୁ ବଡ଼ ଭାଇ, ବାମଦେବ ହୋତା । ସେ ବି ଥାନ୍ତି ସେହି କମିଟିର ଅଧକ୍ଷ ।

ଆମ ଭାଉଜ କଟକ ପଟର ଝିଅ ବୋଲି, ସେ ଆମ ଆଡ଼ର ନନାଙ୍କୁ ବାପା ଓ ବଡ଼ ଭାଇମାନଙ୍କୁ ନନା ବୋଲି ଡାକନ୍ତି । ବୋଉ ଡାକ କିନ୍ତୁ ସମାନ ଥାଏ । ଯେତେବେଳେ ଦେଉଳ କମିଟି ମିଟିଙ୍ଗ୍ ଥାଏ । ଭାଉଜଙ୍କ ବାପା, ବୋଉ, ଭାଉଜଙ୍କ ସାନଭାଇମାନଙ୍କୁ ଧରି ଆସି ଦେଉଳ କଚେରୀ ଘରେ ରହନ୍ତି । ସେହି ଦିନତକ ଆମ ଭାଉଜ ଆମ ଭଉଣୀମାନଙ୍କ ଭିତରୁ କାହାକୁ ଜଣେ ଦି'ଜଣଙ୍କୁ ସାଙ୍ଗରେ ଧରି ଯାଇ ସେଠି ରହନ୍ତି । ମୋତେ ସେ ଯାଗାଟା ଭାରି ଭଲ ଲାଗେ । ସେ କଚେରୀ ଘରର ପରିବେଶଟା ଭାରି ସୁନ୍ଦର । ତମାଳ ଗଛ, ସ୍ୱର୍ଣ୍ଣଚମ୍ପା ଗଛ, ସାନ ସାନ ଆମ୍ବ ଗଛମାନଙ୍କରେ ଭରା ଫଳ । ପଣସ ଗଛ ଗୁଡ଼ାକରେ ତ ଚେରରୁ ଚୂଳ ଯାଏଁ ପଣସ ଲଦା ହୋଇଥାଏ । ଠାଏ ଠାଏ ମଧୁ ମାଳତୀ ଗୁଡ଼ାକ ମାଡ଼ି ଫୁଲରେ ଲଟା ପତର ଦିଶୁ ନଥାଏ । ସବୁଠୁ ଭଲ ଲାଗେ ଆମ ଏପଟେ ନାହିଁ ନଥିବା ଚମ୍ପା ନାଗେଶ୍ୱର ଫୁଲଗଛ । ସୁନ୍ଦର ହଳଦିଆ କେଶର ଚାରିପଟେ, ବଗପକ୍ଷୀ ପରି ଧଳା ପାଖୁଡ଼ା । ବଡ଼ ମଧୁର ତାର ବାସ୍ନା । ପୁଣି ଠାଏ ଠାଏ ଛୋଟିଆ ଛୁରୀଅନା ଗଛରେ ମାଡ଼ିଥାଏ, ରାଧା ତମାଳ । ତାହାର ରଙ୍ଗ ବି ଅପୂର୍ବ । ସତେ ଅବା କୃଷ୍ଣ ତାଙ୍କରି ବର୍ଣ୍ଣରେ ଏଇ ଫୁଲର ସମ୍ଭାର, ବୃନ୍ଦାବନରୁ ଆଣିଥିଲେ କି କ'ଣ ? ଛୁରୀଅନା ଗଛ ସହିତ ସେହି ଲଟା ପତ୍ର ଗହଳରେ, ଛୋଟ ଦି' ତାଲା କୋଠାଟିଏ । ସେଠି ଦି' ତିନିଦିନ ଭାଉଜଙ୍କ ପରିବାର ସହ, ବିଶେଷ କରି ତାଙ୍କ ବାପାଙ୍କ ସାଙ୍ଗେ ରହିବାର ଆନନ୍ଦ, ଭୁଲିବାର ନୁହେଁ ।

ସେହି ସୁନ୍ଦର ପରିସରକୁ ଭାଉଜଙ୍କ ବାପା ଏପରି ସରଗରମ କରିଥାନ୍ତି ଯେ, ମୋତେ ତାଙ୍କ ସାନ୍ନିଧଟା ସ୍ୱର୍ଗସୁଖ ପରି ଲାଗେ । କାରଣ ଆମ ନନାଙ୍କ ସାଙ୍ଗରେ ଏପରି ମଧୁର ସମ୍ପର୍କ ଅସମ୍ଭବ । ଆମ ନନାତ ଆଜୀବନ ଦେଶ ସେବକ, ସ୍ୱାଧୀନତା ସଂଗ୍ରାମୀ ତେଣୁ ଆମ ପିଲାଦିନେ ଆମ ପାଇଁ ସାନ୍ନିଧ୍ୟ ବିରଳ । ମୁଁ ଭାରି ଆନନ୍ଦରେ ତାଙ୍କ ସାଙ୍ଗେ ମିଶିଯାଏ । ତାଆସ ଖେଳଠାରୁ ଗପସପ ଯାଏଁ । ଭାଉଜଙ୍କ ବାପା ଭାରି ମଉଜିଆ ଲୋକ, ସେ କହନ୍ତି ରେ ପିଲେ, ଆମ ହୋତା ବାବୁମ ? ବାମଦେବ ହୋତେ, ସେ ଇଂରାଜୀ ପଢ଼ି ନାହାନ୍ତି ବୋଲି ଅଭ୍ୟାସ କରି ଏବେ ସବୁବେଳେ ଇଂରାଜୀ କହୁଛନ୍ତି । ଦିନେ ଠାକୁରଙ୍କ ବିଷୟରେ ମୁଁ କଣଟେ କହି ଦେଲି ଯେ, ବୁଢ଼ା ଜୋର୍‌ରେ ହସି କହିଲେ, ଚୌଧୁରୀ ବାବୁ ମୋ ଡ଼ାଇରିଆ ଯାହା, ଆପଣଙ୍କ ଡ଼ାଇରିଆ ସେଇଆ । ମୁଁ ତ କାବା ହୋଇ ତାଙ୍କ ମୁହଁକୁ ଚାହିଁ ରହିଲି । ଭାବିଲି ମୋର ପୁଣି ଡ଼ାଇରିଆ କେତେବେଳେ ହେଲା ?

ସେ କହିଲେ ସେୟା ପରା ତୁମେ ଯାହା କହିଲ ମୁଁ ସେହି କଥା ଭାବୁଥିଲି । ମୁଁ ଟିକିଏ ଡେରିରେ ବୁଝିଲି । ଆମ ଦୁହିଁଙ୍କ ଆଇଡ଼ିଆ ମିଶିଗଲା ।

ଆମେ ପିଲେ ସେତେବେଳକୁ ହସି ହସି ମେଞ୍ଚା ହୋଇଯାଉ । ପୁଣି କହନ୍ତି, ଦିନେ ମତେ ଥଣ୍ଡା ଜ୍ୱର ହେଲା । ମୁଁ ଏଇ ପାଖ କବିରାଜ ଈଶ୍ୱର ରଥଙ୍କ ଠାରୁ ଦି'ଟା ଲକ୍ଷ୍ମୀ ବିଳାସ ବଟିକା ମଗେଇ, ଆମ ଚାରୁ ବୋଉକୁ ଦେଲି । କହିଲି ଆମ ବାସନ ମାଜି ସେରେନ୍ତିର ଶାଶୁ ନଣନ୍ଦ ବଟିକାକୁ ତା ଶ୍ୱଶୁର ରସରେ ଘୋରି, ମତେ ଦେଇଦିଅ । ଚାରୁ ବୋଉଟା କିନ୍ତୁ ଦଣ୍ଡା ଅଛି, ସଙ୍ଗେ ସଙ୍ଗେ ଘୋରି ଘେନି ଆସିଲା । ପଚାରିଲି କିହୋ କ'ଣ କଲ ? ସେ କହିଲେ ତୁମେ ଯାହା କହିଥିଲ । ସେରେନ୍ତିର ଶାଶୁ ଲକ୍ଷ୍ମୀ, ନଣନ୍ଦ ବିଳାସ, ଆଉ ଶଶୁରତ ତୁଳସୀ ଦାସ । ମୁଁ କ'ଣ ଜାଣିନି ? ପୁଣି ବୁହେ ଆମ ପିଲାଙ୍କର ହସ ।

ଭାଉଜ ବାପା ପୁଣି କଥାରେ ଦୁଆ ଧରି କହନ୍ତି, ଶୁଣରେ ପିଲେ । ସେଇଦିନ ମତେ ଦେଖିବାକୁ ହୋତାବାବୁ ଆସିଲେ, ସବୁ ଶୁଣିଲେ, କହିଲେ ନାହିଁ ହେ ଚୌଧୁରୀ ଏ କାଳରେ ଆଉ କବିରାଜ କାଟୁ କରୁନି । ଆମର ଏ ଡ଼ାକ୍ତରଖାନାକୁ ନୂଆ ଟୋକା ଡ଼ାକ୍ତରଟିଏ ଆସିଛି । ମତେ ଏମିତି ଥଣ୍ଡା ଜ୍ୱର ଧରିଥିଲା, ଘୋରା ଛେଚା, ପାଚନ ବଟିକା ସବୁ ପାଣି ଫାଟିଗଲା । ଆମ ଗୁମାସ୍ତାଟା ଯାଇ ତାକୁ ସବୁ କହିଲା, ଆଜ୍ଞା ନାଡ଼ି ଦେଖିବା ତ ଦୂରର କଥା, ଖାଲି ଆଖିରେ ବି ସେ ମତେ ଦେଖିନି । ଆଜ୍ଞା ଖାଲି ଶୁଣି କରି ପୁଞ୍ଜେ ପିଆଲା ପଠେଇ ଦେଲା । ଯୋଡ଼େ ପିଆଲା ଯେମିତି ପେଟରେ ପଡ଼ିଛି । ସବୁ ସାଫ୍ ଦିହ ତ, ଫୁଲ ପରି ଉଡ଼ିଲା । ଆପଣ ସେଇଥିରୁ ଦିଓଟି ପିଆଲା ମଗାଇ ଆଣନ୍ତୁ । ଏତିକି କହି ସାରି ଭାଉଜ ବାପା କହିଲେ, କହିଲ ପିଲେ, ବୁଢ଼ା କ'ଣ ଖାଇଲା । ଆମକୁ ତ ଜଣା ଚାହା କପ୍ ସଙ୍ଗେ ପିଆଲା ଥାଏ, ତାକୁ ବା ବୁଢ଼ା ଖାଇବ କେମିତି ? ସମସ୍ତେ କାବା ହୋଇ ବାପାଙ୍କ ମୁହଁକୁ ଚାହୁଁଥାଉ । ବାପା ଜୋର୍‌ରେ ହସି ହସି କହିଲେ, ଆରେ ପିଲେ ସେଗୁଡ଼ାକ ପିଲ୍ ଡ଼ାକ୍ତରୀ ବଟିକା, ପୁଣି ହସରେ ଛାତ ଫାଟି ପଡୁଥାଏ ।

ସେତିକିବେଳେ ବଗିଚା ଜଗୁଆଳି ଆସି ଖଣ୍ଡେ ଚିଠି ଦେଇଗଲା । କାଲି ମିଟିଙ୍ଗ୍ ପାଇଁ । ସକାଳୁ ପ୍ରହରାଜେ ଆଉ ଶ୍ୱେତାମ୍ବରୀ ଦେବୀ ଦୁହେଁ ଆସିବେ । ମିଟିଙ୍ଗ୍ ସରିଗଲେ ରାତିକି କଟକ ଫେରିଯିବେ । ଭାଉଜ ବୋଉ ଟିକିଏ ଉଦ୍‌ବିଗ୍ନ ଜଣାଗଲେ । ତାଙ୍କର ଘର ସଜଡ଼ା ଖାଅ ପିଆର ଚିନ୍ତା କରୁଥାନ୍ତି । ମୋର କିନ୍ତୁ ବହୁଦିନର ଗୋଟିଏ ସୁପ୍ତ ଆକାଂକ୍ଷା ଜାଗ୍ରତ ହୋଇ ଉଠିଲା । ଶ୍ୱେତାମ୍ବରୀ ପାଇଁ ନୁହେଁ । ପ୍ରହରାଜଙ୍କର ଦର୍ଶନ ପାଇଁ ।

ପୁଣି ସକାଳୁ ପତ୍ର ବାହକ, ଆଉ ଖଣ୍ଡିଏ ଚିଠି ଆଣି ଦେଲା । ସକାଳୁ ଦୁହେଁ ଖାଇ,ପିଇ, ଆସି ତିନିଟା ବେଳକୁ ପହଞ୍ଚିବେ । ସେତେବେଳକୁ ପ୍ରାୟ ଅଧା ଅଧି ରନ୍ଧାବଢ଼ା ସରିଥାଏ । ଭାଉଜ ବୋଉ ଟିକିଏ ବିଷଣ୍ଣ ହେଲା ବେଳକୁ, ଭାଉଜ ବାପା କିନ୍ତୁ ଆନନ୍ଦରେ

ଭାଙ୍ଗି ପଡୁଥାନ୍ତି । ଆଉ କିଛି ନ ଖାଇ ପିଲେ ଆଜି ବେଶି ବେଶି ମାଉଁସ ତରକାରୀ ଖାଇବା । ଏଣେ ଖାଇବା ନସରୁଣୁ ମନ୍ଦିର କୋଠ ଭୋଗରୁ ଦୁଇଟା ବଡ଼ ବଡ଼ ବେତାରେ ଭୋଗ ଆସି, ଉପର ଘରେ ଥୁଆ ହେଲାଣି ।

ସାକ୍ଷୀଗୋପାଳଙ୍କ ମନ୍ଦିରରେ ଏତେ ପ୍ରକାରର ଭୋଗ ହୁଏ ବୋଲି ମୋର ଧାରଣା ନଥିଲା । ମୁଁ ସେ ସବୁ ନାଁ ଭାଉଜ ବାପାଙ୍କୁ ପଚାରିଲି । ସେ ସବୁର ପୁରା ପୁରି ନା ଜାଣି ଥିଲେ କି ନାହିଁ କେଜାଣି, ସେ ବୋଝିଆକୁ କହିଲେ ଏସବୁ ଜିନିଷ ତଳକୁ ଥୋଇଲା ବେଳେ ତୁ ସବୁରି ନା କହିଲୁ ବାପା, ଜାଣିବା ସେଗୁଡ଼ିକୁ ଚିହ୍ନୁ ଚୁ ନାଁ ଖାଲି ବୋହୁଛୁ । ସେ ଲୋକ କିନ୍ତୁ ଗୋଟି ଗୋଟି କରି ନାଁ କହିବାକୁ ଆରମ୍ଭ କଲା । ଆଜ୍ଞା, ସରପୁଳି, ଖଇରିଚୁଳ, କେଳି, ଗୋପାଳ ବଲ୍ଲଭ, ଛତୁଆ, ଡ଼ାଳିମ୍ବ, ଗଜା, ବଡ଼ ପିଠା, ପୁରୁକାକରା, ବୁଢ଼ା ପଖାଳ, ସର, ମାଖନ, ମଗଜ ଲଡୁ, ଆଉ ସାନ ସରାଟା କଦଳୀ ଭଜା । ଆଉ ଆଜ୍ଞା, ଇଏ ଭୋଗ ଲାଗିନଥିବା ପାଟକପୂରା କଦଳୀ ଫେଣା ।

ଠିକ୍ ଏତିକିବେଳକୁ ଦାଣ୍ଡରେ ଗାଡ଼ି ଶବ୍ଦ ଶୁଭିଲା ଖଣ୍ଡିଏ ଫୋର୍ଡ୍ ଗାଡ଼ି, ଖୋଲା ଛାତ, ଆଗରେ ଡ୍ରାଇଭର ପଛରେ ପ୍ରହରାଜ ଆଉ ଶ୍ୱେତାମ୍ବରୀ, ଗେଟ୍ ପାଖରେ ଗାଡ଼ିଟା ପହଞ୍ଚି ଯାଇଥିଲା । ଗାଡ଼ିରୁ ଡ୍ରାଇଭର ଓହ୍ଲାଇ ପଛଦୁଆରଟି ଖୋଲି ଧରିଲା । ଆଗ ପ୍ରହରାଜେ ଓହ୍ଲାଇ ଆସିଲେ । ତାଙ୍କୁ ଚାହିଁଦେଇ ମୋ ପୂର୍ବର ଆଶା ଭାଙ୍ଗି ଚୁରମାର ହୋଇଗଲା । ଶ୍ୱେତାମ୍ବରୀକୁ ଦେଖିଲା ପରେ ସବୁକଥା ଶୁଣି, ପ୍ରହରାଜଙ୍କର ଗୋରା ତକ୍ ତକ୍ ଗୋଟିଏ ସୁପୁରୁଷ ଚେହେରା ମୋ ମନ ଆକାଶରେ ଛାପି ହୋଇଯାଇଥିଲା । କିନ୍ତୁ ଇଏ କ'ଣ କଜ୍ଜ୍ୱଳ କଳା ଛ' ଫୁଟିଆ ଲୋକଟା ଦୁଆର ଡେ଼ଇଁଲା ପୂର୍ବରୁ ମୁଣ୍ଡ ଆପେ ଆପେ ପୋତି ହୋଇ ଯାଉଛି । ଠିଆ ଠିଆ ଛୋଟ ଛୋଟ କଦମ୍ବ ଫୁଲିଆ ବାଳ, କିନ୍ତୁ ସବୁ କଳା । ଆଖି ଯୋଡ଼ାକ କେତେ ତଳେ କେଜାଣି, ଗେଡ଼ା ଗେଡ଼ା ଭୂଲତା ଗୁଡ଼ାକ ଠିକ୍ ବୁଢ଼ା ସୁଆବାଳି ପରି ଏତେ ଆଗଇ ଆସିଛି ଯେ, ସତେ ଯେମିତି କିଏ କାଳେ ପ୍ରହରାଜଙ୍କ ଡ଼ୋଳାକୁ ଦେଖିଦେବ ବୋଲି; ସେ ଯୋଡ଼ାକ ପହରା ଦେଉଛନ୍ତି । ନାକଟା ଗୋଟାଳିଆ ଆଉ ଦୀର୍ଘ । ପାନଖିଆ ଦାନ୍ତ ମୁହଁର ବର୍ଣ୍ଣ ସହିତ ନ ମିଶିଲେ ମଧ୍ୟ, ଅତିଶୟ କଳା ଓଠରୁ, ଟିକିଏ ବାରି ହେଉଛି । କାନ ନୁହେଁ ତ ବଡ଼ ବଡ଼ ଦି ଫଡ଼ । ଆମ୍ଭୁଲ କପାଳ ପ୍ରଶସ୍ତ । ବେକଟା ଟିକିଏ ଉପରକୁ ଉଠି, ଗାଲ ଦି'ଟା ହଜେଇ ଦେଇଥିବା ମୁହଁଟାକୁ ସତେ ଅବା ଟେକି ଧରିଛି । ଅବିଶ୍ରାନ୍ତ ପାନ ଚୋବେଇବାରେ ଦୀର୍ଘ ହନୁହାଡ଼ର ଗତି ସର୍ବଦା ଚଞ୍ଚଳ । ହାତ ଦି'ଟା କେମିତି ଦି ବାହା ସଙ୍ଗେ ଢ଼ଳେଇ ହେଲା ପରି ମିଶି ଯାଇଥିବାରୁ, ଦେହଟା ବଟାଳିରେ ଚଞ୍ଚା ହେଲା ପରି ଡ଼େଙ୍ଗା ଦିଶୁଥାଏ । ଗୋଟିଏ ଗୋଡ଼ କଷି ଗୋଦର ସ୍ୱୟଂ ଯମ ନହେଲେ ବି ସତେ ଯେମିତି ତା'ର ବିଶ୍ୱସ୍ତ ଭୃତ୍ୟ ।

ପିନ୍ଧିଥାନ୍ତି ସଫା ଇସ୍ତ୍ରୀ କରା ଧୋତି, ମଠା, ପଞ୍ଜାବୀ ଭିତରୁ ଗଞ୍ଜିର ଛିଦ୍ର ବାରି ହେଉଥାଏ । ତାଙ୍କ ପଛେ ପଛେ ସେହି ଶ୍ୱେତାମ୍ବରୀ ଅଧିକ ଟିକିଏ ପ୍ରଫୁଲ୍ଲିତ ଛଡ଼ା ଅନ୍ୟ

ପରିବର୍ତ୍ତନ ଧରା ପଡ଼ିଲାନି । ସଜଫୁଟା ଗୋଲାପଟି ସତେ ଅବା ମଳୟ ସ୍ପର୍ଶରେ ଅଧିକ ଆନନ୍ଦିତ ଆଉ ଗର୍ବିତ । ଭାଉଜ ବୋଉଙ୍କର ତ ଆଗରୁ ଜଣାଶୁଣା, ଦିହେଁ ହାତଧରା ଧରି ହୋଇ ଓପରକୁ ଯାଇ ମଶିଣା ପଡ଼ିଥିବା ଗୋଟିଏ ଘରେ ବସିଲେ । ଅନ୍ୟ ଘରେ ଚୌକି, ଟେବୁଲରେ ଭାଉଜ ବାପା ଆଉ ପ୍ରହରାଜେ ବସିଥାନ୍ତି ।

ତା'ପରେ ଜଣେ ଦି'ଜଣ ହୋଇ ମନ୍ଦିରର ଲୋକମାନେ ଆସି, କଥାବାର୍ତ୍ତା ଚାଲିଲା । କିଛି ସମୟ ପରେ ସେମାନଙ୍କ ପାଇଁ ଜଳ ଯୋଗର ଆୟୋଜନ ହେଲା : ଆମ ଭାଉଜଙ୍କୁ ଶ୍ୱେତାମ୍ବରୀଙ୍କ ପାଖରେ ବସିଥା ବୋଲି, କହି, ତାଙ୍କ ବୋଉ ଟିକେ ତଦାରଖ କରିବାକୁ ବାହାରିଲେ । ସେ ଦୁହେଁ ଖାଇସାରି ମନ୍ଦିର ମିଟିଙ୍ଗ୍‌କୁ ଚାଲି ଗଲାପରେ, ମନ୍ଦିର ପିଅନ ଆସି କହିଲା ମା' ଏଥର ଆପଣମାନଙ୍କ ପାଇଁ ବାଢ଼ି ଦେଉଛି । ସେ ଘର ତଳେ କଦଳୀପତ୍ରମାନ ପଡ଼ିଲା । ଆମେ ସମସ୍ତେ ବସିଲୁ । ମୁଁ ଶ୍ୱେତାମ୍ବରୀଙ୍କ ସିଧାରେ ବସିଥାଏ । ଭାଉଜଙ୍କ ବୋଉ ତାଙ୍କ ବାଁ ପଟେ ବସିଥାନ୍ତି । ସବୁ ଜିନିଷ ବଳେଇ ବଳେଇ ଦେଉଥାନ୍ତି । ଗୋଟିଏ କଦଳୀ ଛଡ଼େଇ ଦେଲାବେଳେ କହିଲେ, ଏତେ ଭଲ ପାଟକପୁରା କଦଳୀ ପ୍ରହରାଜେ କାହିଁକି ଖାଇଲେନି ?

ଶ୍ୱେତାମ୍ବରୀ କହିଲେ, ସେ ସେମିତି ଖାଆନ୍ତିନି, ସର କି ଛେନାରେ ବେଶୀ ମିଠାଦେଇ ପାଟକପୁରା କଦଳୀ ଚକଟିଲେ ଖାଇବେ । ନଇଲେ ଖାଇବେନି । ଅଧିକ ମିଠା କି ଚିକ୍‌କଣ ନ ହେଲେ ଖାଇବାକୁ ଭଲ ପାଆନ୍ତିନି । ଅଫିମ ଖାଆନ୍ତି ତ, ମୋର ଆଖି ଦି'ଟା ସେତେବେଳକୁ ବିସ୍ଫୋରିତ ହୋଇଗଲା । ମୁଁ ଖାଇବା ବନ୍ଦ କରି ମୁହଁ ଟେକି ଚାହିଁଲି ।

ଅଫିମ ଖାଇବା କଥା ସବୁରି ଆଗରେ ନିର୍ବିକାର ଭାବରେ କହିବା ମୁଁ ନୂଆ କରି ଶୁଣିଲି । କହନ୍ତି ତ 'ଅଫିମ ଚୋର, ଗଞ୍ଜେଇଆ ଭୋଳ, ଧୂଆଁ ପତ୍ରିଆ ଘରେ ନିତି କଳିଗୋଳ'' । କାହିଁ କେହିତ ଅଫିମ ଖାଇବା କଥା କେଡ଼େ ଗର୍ବରେ ସବୁରି ଆଗେ କହନ୍ତିନି । ମୁଁ ନୂଆ ଶୁଣିଲି । ଲୋକେ ଲୁଚାନ୍ତି କିଏ କହେ ଶ୍ୱାସ, କିଏ କହେ ବାତଜ୍ୱର, ନାନା ପ୍ରକାର ରୋଗର ବାହାନା ଦେଖାଇ ଟୋପେ ଟୋପେ ଓଷୁଧ ଖାଏ ବୋଲି କହନ୍ତି । ଭାଉଜ ବୋଉ ବି ସେମିତି ନିର୍ବିକାର ଭାବରେ ପଚାରିଲେ । ପ୍ରହରାଜେ କ'ଣ ଟିକିଏ ଅଫିମ ଖାଆନ୍ତି ?

ଶ୍ୱେତାମ୍ବରୀ କହିଲେ, ଟିକିଏ ? ଭରିଏ ଅଫିମ ଗୋଟିଏ ରୂପା ଗିନାରେ ରାତିରୁ ପାଣିରେ ପଡ଼ିଥିବ । ଏଣେ ରୂପା ଗିଲାସରେ ଟେଳେ ମିଶିରି ପାଣିରେ ପଡ଼ିଥାଏ । ସକାଳୁ ମୁଁ ଅଫିମକୁ ଭଲ କରି ପତଳା କନାରେ ଛାଣି ସେ ମିଶିରି ପାଣିରେ ପାଞ୍ଚଟା କାବୁଲି ବାଦାମ ବାଟି ଏକାଠି ଫେଣ୍ଟି ତାକୁ ପିଇବାକୁ ଦେବି । ଯେତେଲୋକ ଥାଆନ୍ତୁ ସେଇଟା ମୋ କାମ । ସେଇଥିପାଇଁ ଏକୁଟିଆରେ ମୋର କୁଆଡ଼େ ଯିବାର ଆଉ ଟିକିଏ ବି ନାହିଁ ।

ଭାଉଜ ବୋଉ କହିଲେ, ବାତଜ୍ୱର ପାଇଁ ଖାଉଥିବେ ବୋଧେ । ଶ୍ୱେତାମ୍ବରୀ ତାହା ବି ଠିକ୍ ମାନିବାକୁ ନାରାଜ । ସତେ ଯେମିତି ତାଙ୍କ ଅହମିକାରେ ଭଙ୍ଗା ପଡ଼ିଯିବ । ଏଡ଼େ ବଡ଼ ଲୋକର ଏତେ ଐଶ୍ୱର୍ଯ୍ୟକୁ ସେ ରୋଗ ଦାଉରେ କ୍ଷତ ବିକ୍ଷତ କରିବାକୁ ଚାହୁଁନଥିଲେ । ସେ କହିଲେ, ନାହିଁ ଯେ, ଏଇଟା ତାଙ୍କର ପିଲାଦିନରୁ ଅଭ୍ୟାସ । ପିଲାଦିନେ ରାତି ଅନିଦ୍ରା ହୋଇ ବହୁତ ପଢ଼ନ୍ତି । ପରୀକ୍ଷାବେଳେ ଅଧିକ ପରିଶ୍ରମ କରିବାକୁ ଟିକିଏ ଅଫିମ ଦିଆସିଲି କାଠି ଆଗରେ ଲଗାଇ, ନିଆଁକୁ ଦେଖାଇ ଜାରି କରି ଖାଇଦେଲେ, ନିଦତ ଲାଗିବନି, ରାତି ଅନିଦ୍ରା ବାଧିବନି କି ଥଣ୍ଡା ଜ୍ୱର କିଛି ହେବନି ।

ଏମିତି କରୁ କରୁ କେତେବେଳେ କେମିତି ଖୋଳକୁ ଟିକିଏ ପିଛୁଳି ପଡ଼ିଲେ, ସେଇଥିରୁ ଟିକିଏ ବଢ଼ୁ ବଢ଼ୁ ଏବେ ସରବତରେ ପରିଣତ ହୋଇଗଲାଣି । ନିତି ପୁରା ଭରିଏ । ମୋ' ଦେହ କେତେବେଳେ ଟିକିଏ ଛେଚି କୁଟି ହେଲେ, ମୁଁ ଯଦି କହିବି ନହେଲେ ସେହି ସିଠାରୁ ଟିକିଏ ବତୁରେଇ ପିଇ ଦେବି କି ? ଆଲୋ ବୋପାଲୋ । ସତେ ଅବା ମାରିବେ କି ମରିବେ । ଲୋକ ସିନା କହନ୍ତି ଯିଏ ଅଫିମ ଖାଏ ସିଏ ପାଖ ଲୋକକୁ ଅଫିମ ଖିଆ ଶିଖାଏ । ପ୍ରହରାଜେ କିନ୍ତୁ ପୁରା ପୁରି ଅଲଗା ମତେ କହନ୍ତି, ଅଫିମ ଖାଇଲେ ଦିହ କଳାକାଠ କରିଦେବ । ମାଇପି ଲୋକ ନିଶା ଖାଇଲେ ସର୍ବନାଶ ହୋଇଯାଏ । ମୋ ସାନ ଭଉଣୀ ମାହେଶ୍ୱରୀ କଥା କହିବେ, ଅତି ଜ୍ଞାନୀ ଲୋକ ତ ?

ଭାଉଜ ବୋଉଙ୍କୁ ବୋଧେ କଥାଟା ପସନ୍ଦ ହେଲାନି । ସେ ପ୍ରସଙ୍ଗ ବଦଳେଇ ଦେଇ କହିଲେ, ତୁମ ପୁଅ କାହିଁକି ଆସିଲାନି ? କାହା ପାଖେ ରହିଲା । ସେ କହିଲେ ମୁଁ ତାକୁ ଡ଼ାକୁଥିଲି ଯେ, ସେ ଆସିବାକୁ ମଙ୍ଗିଲାନି । ମଧୁଆ ବୋଲି ଗୋଟିଏ ମାଇଚିଆ ଚାକର ଅଛି । ସେ ତାର ଗୋଟାଯାକ ଆପଣାର । ପିଲାଦିନୁ ପାଳିଛି ତ ମୁଁ ଟିକିଏ ରାଗିଗଲେ ମଧୁଆ ମୁଣ୍ଡ ବାଡ଼େଇ ଦେବ । କହିବ ତୁମେ ଜଗା ବାବୁଙ୍କୁ ବର୍କିଲେ ମୁଁ ତାଙ୍କୁ ଧରି ଅଗନା ଅଗନି ବନସ୍ତକୁ ପଳେଇବି ଟି ଏମିତି ପ୍ରସଙ୍ଗକୁ ପ୍ରସଙ୍ଗ ବଦଳିବାରେ ଲାଗିଲା । ତା' ଭିତରେ ଆମ ଭାଉଜଙ୍କୁ ନେଇ, ଆମ ଘର ବିଷୟ ଆରମ୍ଭ ହେଲା । ମୁଁ ବୁଝି ପାରିଲି, ମୋର ଆଉ ଏଠି ବସିଲେ ଭାଉଜ ଶାଶୁଘର ଭଲମନ୍ଦ କହିବାରେ ସ୍ୱାଧୀନତା ପାଇବେନି । ମୁଁ ଉଠି ବାଆଁରେଇ ହୋଇ ଛାତକୁ ପଳେଇ ଆସିଲି । ତଥାପି ମୋ କାନ ଟିକିଏ ଓଳେଇ ଗାଈ ପରି ସେପଟ କଥା ଶୁଣିବାରେ ବ୍ୟାକୁଳତା ପ୍ରକାଶ କରୁଥାଏ । ଏଣେ ଭାଉଜଙ୍କର ଦି'ଭାଇ ଜାକ ଟେକାମାରି ଛାତ ପାଖରେ ଥିବା ଆମ୍ବ ଡ଼ାଳରୁ ଗୋଟା କେତେ ଆମ୍ବ ଝଡ଼େଇଲେ । ମୁଁ ଯାଇ ତାକୁ ତକୁ ଗୋଟେଇ ଆଣିଲି । ଗୋଟେ ସ୍ୱର୍ଣ୍ଣ ଚମ୍ପା ଡ଼ାଳ ଛାତ ଉପରେ ଥାଏ । କିନ୍ତୁ ହାତ ପାଆନ୍ତିରୁ ଟିକିଏ ଉଚ୍ଚା ଭାଉଜଙ୍କ ଭାଇ ରଙ୍ଗନାଥ ଯେତେ ଡ଼େଇଁଲେ ବି ସେ ଡ଼ାଳଟା ଧରି ପାରିଲାନି । ମୁଁ ଗୋଟିଏ ଶିଳ୍କ ଶାଢ଼ୀ ପିନ୍ଧିଥାଏ । ରଙ୍ଗୀବାବୁଙ୍କୁ ଗୋଟିଏ ବୁଦ୍ଧି ଦିଶିଗଲା । କହିଲେ ହେ ନାନୀ ଅପା ତୁମ କାନିଟା ଦେବଟି ?

ମୁଁ ମୋ କାନିଟା ବଢ଼େଇ ଦେଲି । ସେ କାନିରେ ଗୋଟିଏ ଗୋଡ଼ି ବାନ୍ଧି ସେ ଡ଼ାଳ ଉପରକୁ ଛାଟି ଦେଲେ । କାନିଟି ଆଉ ପଟକୁ ଓହଳିଗଲାରୁ ଦୁଇପଟ ଧରି ଡ଼ାଳଟି ନୁଆଇଁ ଆଣି, ଗୁଡ଼ିଏ ଚମ୍ପା ଫୁଲ ତୋଳୁ ତୋଳୁ ମୋ ଲୁଗାରେ ଖୁଞ୍ଚ ଲାଗିଗଲା । ସେ ଖଣ୍ଡିକ ମୋର ଗୋଟିଏ ବୋଲି ପେଡ଼ି ଲୁଗା । ସବୁ ଖୁସି ଭିତରେ ଘରକୁ ଫେରିଲାବେଳକୁ ମୋ ମନ ଭାରି ଦୁଃଖ ହୋଇଯାଇଥିଲା ।

ପୁଣି ଦୀର୍ଘଦିନ ଭୁଲି ଯାଇଥିଲି ମୁଁ ମୋତେ, ଆଉ ଶ୍ୱେତାମ୍ବରୀ କଥାକୁ । ସେ ଏକବାରେ ମୋ ମନ ଆକାଶରୁ ନିଶ୍ଚିହ୍ନ ହୋଇଯାଇଥିଲା କହିଲେ ଚଳେ । ଦିନ ପରେ ଦିନ ଗଡ଼ି ଚାଲିଲା । ଶୈଶବ ତ ଯାଇଥିଲା । କୈଶର ପ୍ରାୟ ବିଦାୟ ନେଲା । ସେତେବେଳର ଶାରଦା ଆଇନ୍ ଭୟରେ ଝିଅ ଚଉଦ ବର୍ଷ ହୋଇଗଲେ ସମ୍ପୂର୍ଣ୍ଣ ଘର କରଣାକୁ ଯୋଗ୍ୟ ବିବେଚିତ ହୋଇଯାଉଥିଲା । ପରିବାରଠାରୁ ସାଙ୍ଗ ସୁଖମାନଙ୍କ ଖେଳ ଭିତରେ ବି ଅନେକ ଅଭିଜ୍ଞତା ଆପେ ଆପେ ଅର୍ଜନ ହୋଇଯାଉଥିଲା । ମୋର ସାଙ୍ଗ ଗୁଡ଼ିକ ପ୍ରାୟ ସମସ୍ତେ ବିଭା ହୋଇ ଯାଇଥିଲେ । କେବଳ ମୋ ସାଙ୍ଗକୁ ଗୋଟିଏ ରହିଯାଇଥିଲା । ମୋର ଲେଖାରେ ସେ ଝିଆରୀ, ମୋଠାରୁ ବୟସରେ ଦୁଇ ବର୍ଷ ସାନ । ସେ ମୋର ସେତେବେଳେ ମୋର ସାଙ୍ଗ, ଝିଆରୀ, ଭଉଣୀ ସବୁ କହିଲେ ଚଳେ । ମୋର କେହି ସାନ ଭଉଣୀ ନଥାଏ ବୋଲି, ତେଣୁ ମୁଁ ତାକୁ ସାନ ଭଉଣୀ ପରି ଭଲ ପାଏ । ଆଉରି ବି ସ୍ନେହ କରିବାର ବଡ଼ କାରଣ ଥାଏ । ଥରେ ମୁଁ ତାକୁ ଅତି ପିଲାଦିନେ ମରଣ ମୁହଁରୁ ବଞ୍ଚେଇ ଦେଇଥିଲି । ନାଁ ତାର ଶୋଭା ।

ମୋରତ ଏବର ଏକାନ୍ତ ବେଳେ, ଅତୀତକୁ ଘାଣ୍ଟିବା ଗୋଟିଏ ଅଭ୍ୟାସ । ସେମିତି ଘାଣ୍ଟୁ ଘାଣ୍ଟୁ ବେଳେବେଳେ ଏ ରୋମାଞ୍ଚକର ଘଟଣାମାନ କାହିଁ କେତେତଳୁ ଉପରକୁ ଉଙ୍କି ମାରନ୍ତି ।

ସେତେବେଳେ ମୋ ଦେହରୁ ଆଠବର୍ଷ ବିଦାୟ ନେଇଛି । ଶୋଭାକୁ ସାତବର୍ଷ ଆଲିଙ୍ଗନ କରୁଛି ମାତ୍ର । ବୋଉ ମୋର ଯାଇଥିଲା ଗୋଦାବରୀ ସ୍ନାନ କରି । ଭାରି ସୁନ୍ଦର ଚାରି ଛଅ ଇଞ୍ଚ ଲମ୍ବର ଗୋଟିଏ ପିତଳର କଡ଼ାଲଗା ଖେଳନା ବାଲଟି ମୋ ପାଇଁ ଆଣିଥିଲା ସେତେବେଳେ ଆମ ମାନଙ୍କର ବାଡ଼ି ଆଡ଼ର ମାଟି ଖେଳ ଘରର ଘରକରଣା ସରଞ୍ଜାମ ଭିତରେ ଓଳି ସଢ଼େଇ ଭିତରେ ମୋ ବାଲଟି ଥାଏ । ସବୁ ପିଲାଙ୍କ ଆଖିରେ ପଡ଼ିଲା ଭଳିଆ । ଶୋଭାର କେତେ ଯେ ଲୋଲୁପ ଦୃଷ୍ଟି ତା' ଉପରେ ପଡ଼ିଛି ତା'ର ସୀମା ନାହିଁ । ତା' ବ୍ୟାକୁଳତା ଅନୁଭବ କରି ମୋ ମନ ଗର୍ବରେ ଫୁଲି ଉଠୁଥାଏ । ମୋ ପରି ସବୁରି ଖେଳ ଘରେ ଗୋଟିଏ ଲେଖାଏଁ ଲମ୍ବା ଗୁଡ଼ବଣା ପୋତା ହୋଇ, କୂଅ ତିଆରି କରାଯାଏ । ତା' ଭିତରେ ପାଣି ପୂରେଇ ଅକ୍ଷୟ ତୃତୀୟାରେ ବଣ୍ଟା ହୋଇଥିବା ମାଟିଘଡ଼ି ବେକରେ ଦଉଡ଼ିଟିଏ ବାନ୍ଧି ସେଇ କୂଅ ମୂଳେ ରଖାହୋଇଥାଏ । କିନ୍ତୁ ମୋ' ପରି ଆଉ

କାହାର ନକ୍ସାକରା ପିତଳ ବାଲ୍ଟି ନଥାଏ । ମୁଁ ବାରମ୍ବାର ବାଡ଼ି ଗଡ଼ିଆକୁ ନେଇ ଥରକୁ ଥର ମାଜି ତା'ରି ଦେହରେ ବାଲଟିଏ ପାଣି ଆଣିଲେ ଯାଇ ଖେଳ ଘରର ଯାବତୀୟ କାମ ହୁଏ ।

ସେଦିନ ପ୍ରଥମାଷ୍ଟମୀ ବାସୀ । ଶୋଭା ବଡଝିଅ ପୁଣି ଏକମାତ୍ର ଝିଅ । ତେଣୁ ତାର ନନା ଗୋଟିଏ ଜାମା ଆଣିଥାନ୍ତି । ମୁଁ ତ ସେ ସୌଭାଗ୍ୟରୁ ପୁରା ବଞ୍ଚିତ । ଏକରେ ଶେଷ ସନ୍ତାନ, ପୁଣି ନନା ତ ଆମର ଗୃହତ୍ୟାଗୀ ଦେଶ ସେବକ । ଶୋଭା ତାର ବଢ଼ିଆ ଜାମାଟି ପିନ୍ଧି ବାଡିଆଡେ ଖରା ପୋଉଁଛି । ତନୁପାତେଳି ଢଳ ଢଳିଆ ଗୋରାଦେହକୁ ସେ ଖଇରିଆ ଜାମାଟା ଜାଣ ପିଇ ଯାଉଥାଏ । ମୋ ଆଖି ଯେମିତି ତା ଉପରେ ପଡିଛି । ମୋର ସେତେବେଳର ଗର୍ବ, ସେଇ ବାଲଟିକୁ ସଙ୍ଗେ ସଙ୍ଗେ ଜୋର୍‌ରେ ହଲେଇ ହଲେଇ ଯାଇ ଆମ ଗଡିଆ ତୁଠରେ ନଡିଆ ଗଡ ଉପରେ ବସି ମାଜିବାରେ ଲାଗିଲି । ଶୋଭାର ବି ନଜର ସେଇ ବାଲଟି ଉପରେ ନୂଆ ପିତଳ ବାଲ୍ଟିଟା ଖରା ପଡି ଚକ୍ ଚକ୍ କରୁଛି । ସୂର୍ଯ୍ୟ କିରଣ ଚାରିଆଡକୁ ବିଛାଡି ହୋଇ ପଡୁଛି । ଶୋଭାଟା ବା ଆଉ ସମ୍ଭାଳେ କେତେକେ ? ମତେ ବଡ ପାଟିରେ ଡାକି କହିଲା, ଉମା ନାନୀ ଆମ ଖତ ଗଦାରେ ଘସି ପାଉଁଶ ଗଦା ହୋଇଛି । ତତେ ଖଣ୍ଡେ ପାଉଁଶ ଦେବିକି ? ତୁ ବାଲଟି ମାଜିବୁ । ମୁଁ କି ସେ ସୁଯୋଗ ଛାଡେ । ସଙ୍ଗେ ସଙ୍ଗେ କହିଲି ଚଞ୍ଚଳ ଆଣେ । ମୋର ତେଣେ କେତେ କାମ ପଡିଛି । ସେ ଖତ ଗଦାରୁ ଖଣ୍ଡେ ଘସି ପାଉଁଶ ଧରି ଆସି, ଆମ ଗଡିଆ ତୁଠରେ ଠିଆ । ମୁଁ ତଳ ଗଡିରେ ଠିଆ ହୋଇ ତାକୁ ହାତ ବଢେଇ ଦେଲି । ସେ ମୋତେ ପାଉଁଶ ଦେବାକୁ ଲଇଁ ପଡିଲା ବେଳକୁ ଗଡିଆ ଗଡିରୁ ଗୋଡ ଖସି ତିନିଟା ଗଡି ଡେଇଁ ଯାଇ ପାଣିରେ ପଡିଗଲା ।

ମୁଁ ବି ଜାଣି ପାରିନି, କେମିତି ମୋ ବାଲଟି ବଦଳରେ ତା ହାତଟିକୁ ଧରି ପାଣି ଭିତରକୁ ଖସୁଛି । ମୁଁ ତା ସାଙ୍ଗରେ ଭିଡି ହୋଇ ଗଲାବେଳକୁ ଗଡକୁ ଅଟକାଇଥିବା ଗୋଟିଏ ବାଉଁଶ ଖୁଣ୍ଟିକୁ ଖୁବ୍ ଜୋର୍‌ରେ ମୁଠେଇ ଧରିଛି । ବାଉଁଶ ଖୁଣ୍ଟିଟି ଧୀରେ ଧୀରେ ମୋ ସାଙ୍ଗରେ ଲଇଁ ଯାଉଛି । ମୁଁ ଯେତିକି ଖସୁଛି ସେତିକି ପାଟିରେ ବୋଉଲୋ ବୋଉଲୋ ବୋଲି ଚିତ୍କାର କରୁଛି । ମୋର ଚିତ୍କାର ଯେତିକି ବଢୁଛି ଶୋଭାର ଦେହଟି ବୁଡି ବୁଡି ଯିବା ଫଳରେ ତାର ଚିତ୍କାର ସେତିକି କମୁଛି । ହଠାତ୍ ନୟନ ବୋଉ ଭାଉଜ ଆମ ରଡି ଶୁଣି ବାଡିଆଡକୁ ଧାଇଁ ଆସି ଆଲୋ ଧାଇଁ ଆସଲୋ । ପିଲା ଯୋଡାକ ବୁଡି ମରି ଗଲେ ବୋଲି ଗୋଟେ ପାଟି କରି ମୋ ହାତକୁ ଧରି ପକେଇଲା ।

ସେତେବେଳକୁ ଶୋଭାର ମୁଣ୍ଡଖାଲି ଦିଶୁଛି । ତା ନାକରେ କାନରେ ପାଣି ପଶି ସେ ଆକତା ମାକତା ହେଲାଣି । କିନ୍ତୁ ସେ ମୋତେ ମୁଁ ତାକୁ ମୁଠେଇ ଧରିଛୁ । ବାଉଁଶରୁ ମୋ ହାତ ଖସିବାକୁ ଆଉ ଅଳ୍ପ ବାକି । ସତେ ଯେମିତି ଭଗବାନ୍ ଆମ ଦୁହିଁଙ୍କୁ ରକ୍ଷା

କରିବାକୁ ନୟନ ବୋଉ ଭାଉଜକୁ ଗୋଟିଏ ମୁହୂର୍ତ୍ତ ବ୍ୟବଧାନରେ ପଠାଇ ଦେଲେ । ସେ ପ୍ରଥମେ ଶୋଭାକୁ ଟେକି ପାଣିରୁ ଘେନି ଆସିଲା । ତା ପରେ ମତେ । ଆମ ଦୁହିଁଙ୍କୁ ଉପରେ ଟେକି ଥୋଇ ଦେଲା ବେଳକୁ ପାଞ୍ଚ ଛଅ ଜଣ ମାଇପି ଆସି ଗଡିଆ କୂଳେ ଜମା ହେଲେଣି । ଶୋଭା ବୋଉ ଗୋଟେ ବଡ ଆଁ ମେଲା କରି ଗଛମୂଳେ ଠିଆ ହୋଇଥାଏ । ମୋ ବୋଉ ମତେ ତା ଲୁଗା କାନିରେ ଗୁଡେଇ ପକେଇ କାଖେଇ ପକାଇଲା ବେଳକୁ ମୁଁ କଇଁ କଇଁ କାନ୍ଦି ତା କାନ୍ଧରେ ମୁହଁକୁ ମାଡି ଦେଇଥାଏ ।

ଶୋଭାକୁ ତା' ବୋଉ ଘରକୁ ନେଇଗଲା । ମତେ କିନ୍ତୁ ଭାରି ଡ଼ର ମାଡୁଥାଏ । ସତେ ଯେମିତି ତା ବୁଡ଼ି ଯିବା ପାଇଁ ମୁଁ ଦାୟୀ । ମତେ ସମସ୍ତେ ଗାଳିଦେବେ ବୋଲି, ମୁଁ ଏକାଥରେ ସାଙ୍କୁଚି ଯାଇଥିଲି । କିନ୍ତୁ ଓଲଟା କଥା ପ୍ରଥମେ ମୋ ବୋଉର ପ୍ରଶଂସାରେ, ଆଉ ମୋତେ ଆଉଁସା ପାଉଁସାରେ ମୁଁ ଏତେ ଖୁସି ହୋଇ ଯାଇଥିଲି ଯେ, ସତେ ଯେମିତି ମୁଁ ଗୋଟିଏ ଗଡ଼ ଜିଣି ଆସିଛି । ମୋ' ଲାଗି ଆଜି ଶୋଭା ଜୀବନ ପାଇଛି । ମୁଁ ତା' ପାଇଁ ଗୋଟେ ଦେବଦୂତ ଥିଲି ବୋଲି ମୋ ବୋଉ ଗର୍ବ କରୁଥିଲାବେଳେ ମୋ ଗର୍ବର ବାଲିଟି ସବୁଦିନ ପାଇଁ ହଜି ଯାଇଥିଲା ।

ଯାହା ହେଉ ସେଇ ଦିନରୁ ତା'ର ମୋର ସ୍ନେହ ବହୁ ଗୁଣରେ ବଢ଼ି ଯାଇଥିଲା । ଥରେ ଆମ ପରିବାର କେତେ ମାସ ପାଇଁ ଦିଲ୍ଲୀ ଯାଇଥିଲୁ । ମୁଁ ଦିନେ ସ୍ୱପ୍ନ ଦେଖିଲି ଶୋଭା ପୋଡ଼ି ମରି ଯାଇଛି । ତା' ଦେହ ଯାକ  ନାଲିଆ ଫୋଟକାରେ ବିବର୍ଣ୍ଣ ଦିଶୁଛି । ମୋ ନିଦ ଭାଙ୍ଗିଗଲା । ମୁଁ ଦି'ଚାରି ଦିନ ଭାରି କାନ୍ଦିଲି । ଖାଇବା ପିଇବାକୁ ମନ ହେଲାନି । ମୋ  ପାଇଁ ବୋଉ ବି ଭାରି ବ୍ୟସ୍ତ ହେଉଥାଏ । ଗାଁ'କୁ ଗୋଟିଏ ଟେଲିଗ୍ରାମ୍ କରି ଗାଁ ଖବର କ'ଣ ? ବୁଝିବାର ସ୍ଥିର ହେଲା । ଟେଲିଗ୍ରାମ ହେବା ପୂର୍ବରୁ ଗାଁରୁ ମୋ' ମାମୁଁଙ୍କର ଖଣ୍ଡିଏ ଚିଠି ଆସି ମିଳିଲା ଯେ, ମୋ ପୋଷା ଝୁମ୍ପି ବିରାଡ଼ିଟି ଗୋଟିଏ ଚମ୍ପେଇ ନେଉଳି ଖାଇ ମରିଯାଇଛି । ବାକି ସବୁ ଖବର ଭଲ । ମୁଁ ପୁଣି ଝୁମ୍ପି ବିରାଡ଼ି ପାଇଁ କାନ୍ଦିଲି । ବୋଉ କହିଲା ବିରାଡ଼ିଟି ସବୁ ଦଶା ନେଇଗଲା । ତୋ ଶୋଭାର ଆଉ କିଛି ହବନି । (ସ୍ୱପନ, ବିପନ୍ନ) ନଇଲେ ଶୋଭାର କିଛି ନା କିଛି ଅନିଷ୍ଟ ହୋଇଥାନ୍ତା । ୟା' ପାଇଁ ମନ ଖରାପ କଲେ ତା'ର ଖରାପ ହେବଟି ମୋ ବୋଉ ତା' ଚତୁରତାରେ, ଗୋଟିଏ ଗୁଳିରେ ଦୁଇଟି ଶିକାର କଲା । ମୁଁ ବିରାଡ଼ି ପାଇଁ କାନ୍ଦିଲିନି ।

ଏମିତି ସେହି ବାଲ୍ୟବନ୍ଧୁଟି ଶିଶୁରୁ, କିଶୋରୀ କିଶୋରୀରୁ ସମବୟସୀ ହୋଇଗଲା । (କପା କିଆରୀ, ବଇସ କାଳେ କି ଖୁଡ଼ି ଝିଆରୀ) ସେତେବେଳକୁ ଆଉ ସାଙ୍ଗମାନେ ବସା ବାନ୍ଧି ସାରିଲେଣି । ବଉଳ ପରି କେତେଜଣ ମା' ବି ହେଲେଣି । ଶୋଭା ମୁଁ, ଆମେ ହିସାବରେ ପିଇସି ଝିଆରୀ ହେଲେ ବି, ଦୁହେଁ ଭାରି ସାଙ୍ଗ ହୋଇ ଯାଇଥିଲୁ । ମତେ ପନ୍ଦର ପୁରିଲାବେଳକୁ ତା'ର ଚଉଦ ବର୍ଷ ଆରମ୍ଭ । ଆମ ଦୁହିଁଙ୍କର ବିଭା ଯୋଗ

ଏକାବେଳକେ ଫିଟି ଯାଇଥିଲା । ଦି' ଘରର ଛାମୁଣ୍ଡିଆ ମିଶି, ବିରାଟ ଏକ ଛାମୁଣ୍ଡିଆ ହୋଇଥିଲା । କେବଳ ତାଙ୍କ ବେଦୀ ତାଙ୍କ ଦୁଆରେ, ଦି'ଘର ଛାଡ଼ି ଆମ ବେଦି ଆମ ଦୁଆରେ । ଯୋଗକୁ ବୟସ ଅନୁସାରେ କି'କଣ ବଡ଼ ବର ଆଗ, ସାନର ବର କିଛି ସମୟ ପରେ ଆସିଥିଲା । ମୁଁ ଶାଶୁ ଘରକୁ ଗଲାପରେ ମୋ ସ୍ୱାମୀ ମତେ ଥରେ କହିଥିଲେ, ତୁମେ ଗାଁରେ ଗୋଟିଏ ନୂଆକଥା ଦେଖିଲି । ମୁଁ ପଚାରିଲି କ'ଣ ? ସେ କହିଲେ, ସତରେ ତୁମ କିଛି ଭାବିବନିତ ? ଆମ ଏପଟେ ଏମିତି ନାହିଁ । ନିଜେ ବିଭା ହେଲା ଝିଅ, ନିଜ ବର ବିଭା ହେଇ ଆସିଲାବେଳେ, ଦାଣ୍ଡରେ ଠିଆ ହୋଇ 'ବାଟ' ବରୁଣ ଦେଖିବ ! ଅବଶ୍ୟ ତୁମ ଗାଁତ ଅତି ବେଶୀ ଉନ୍ନତ ଧରଣର । ତେଣୁ ଲାଜ ଟିକିଏ କମ୍ ବୋଧେ ? କିନ୍ତୁ ତୁମେ ଏଠି ଆମଘରେ, ଏକାଥରେ ଲାଜକୋଳି ଲତାପରି ଦେଖେଇ ହୁଅ କାହିଁକି ?

ଏ ଦେଖେଇ ହୁଅ ଶବ୍ଦଟାରୁ ମୁଁ ବେଶୀ ବିଗିଡ଼ିଗଲି । ମୁଁ କହିଲି କ'ଣ କହିଲ ? ବିଭାଘର ବେଳେ ମୁଁ ଆସି ବାଟବରଣ ବେଳେ ତମକୁ ଦେଖୁଥିଲି ? ସେ କହିଲେ ହଁ । ହଳଦିଆ କନିଆବାସ ଲୁଗା ପିନ୍ଧି, ଦାଣ୍ଡ ବାରଣ୍ଡାରେ ଠିଆ ହୋଇନଥିଲ ? ଗୋଟିଏ ସିମେଣ୍ଟ ବେଞ୍ଚ ଉପରେ ଏକୁଟିଆରେ । ମୋ' ରାଗ ସେତେବେଳକୁ ପଞ୍ଚମରେ ଉଠିଗଲାଣି ।

ମୁଁ କହିଲି ଆହେ ! ତୁମେ ତ ଆଗଦିନ ସନ୍ଧ୍ୟାବେଳକୁ ପାଲିଙ୍କିରେ ଚଢ଼ିଥିବ । ପାଲିଙ୍କି ଦୋହଲରେ ରାତିଟାଯାକ ଅନିଦ୍ରାରେ କଟିଥିବ । ଆମ ଦୁଆରେ ପାଲିଙ୍କି ଥୁଆ ହେଲା ବେଳକୁ, ସେହି ଘୁମନ୍ତ ଆଖିରେ ଦିବା ସ୍ୱପ୍ନ ଦେଖିଛ । ସେତିକିବେଳକୁ ତୁମ ଆଖି ଆଗରେ ଖାଲି କନିଆବାସ ପିନ୍ଧା, କନିଆଗୁଡ଼ାକ ଧାଡ଼ିମାରି ଦଉଡୁଥିଲେ । ତମ ସାମ୍ନାରେ ପଡ଼ିଗଲେ ଗୋଟା ଗୋଟା ଅଟକି ଯାଉଥିଲେ । ମୁଁ ତ ସେଦିନ କୋଇଲି ବୋବେଇଲା ବେଳକୁ, କୋଇଲି ବୁଡ଼ ପକେଇ ବାଡୁଅ ପାଣି ଗାଧୋଇ, କନିଆବାସ ପିନ୍ଧି, ଲୁଣ ଚଉରୀ ଘରେ, ଯାହା କହନ୍ତି ଅଷ୍ଟସଖୀ ମେଳରେ ଥିଲି । ବର ବିଭା ହୋଇ ଆସିଲାବେଳେ, ମୋ ସାଙ୍ଗ ଗୁଡ଼ାକ ଅବଶ୍ୟ ଲଗେଇଥାନ୍ତି । ଆମେ ବର ଦେଖି ଯାଉଛୁ । ତମେ ଏକା କାହିଁକି ବସିବ ? ଆସ ପକ୍କା ଉପରକୁ ଯାଇ, ଲୁଚି କରି ଜୋଇଁ ଦେଖି ପଳେଇ ଆସିବ । ମୋ' ଆଈ ପୁଣି ସେଠି, ଗୋଡ଼ ଯୋଡ଼ିକ ଲମ୍ବେଇ ଦେଇ, ରାଜକନ୍ୟାକୁ ବୁଢ଼ୀ ଅସୁରୁଣୀ ପରି ଜଗି ବସିଥାଏ । ଆଈ କହୁଥାଏ ଝିଅ ମଙ୍ଗୁଳା ହେଲାଠୁ ଦେବକନ୍ୟା । ଧିର ହୋଇ ବସ । ସେ ଲୁଣ ଚଉରୀ କୋଠି ଯେମିତି ନ ଭାଙ୍ଗେ ।

ମୋ ସ୍ୱାମୀ ପଚାରିଲେ ଲୁଣ ଚୌରୀ କୋଠି କ'ଣ ? ମୁଁ କହିଲି ତୁମେ ପୁଅ ଲୋକ । ସେଗୁଡ଼ାକ କ'ଣ ଜାଣିବ । ଝିଅ ବାଡୁଅ ପାଣି ଗାଧୋଇ ଆସିଲାବେଳକୁ ଆଞ୍ଜୁଳେ ଲୁଣ ଓ ଆଞ୍ଜୁଳେ ଶୋରିଷ ମିଶି ଗୋଟିଏ କୋଠି କଟା ହୋଇଥାଏ । ଝିଅର ଓଦା  ମୁଣ୍ଡ କୁଣ୍ଡେଇ ସେଥିରୁ ଅଡୁଆ ବାଳ ଆଣି, ଚୌରୀ ବଳି ତା'ଉପରେ ପକାଇ

ଦିଅନ୍ତି । ଝିଅ ତା'ରି ଭିତରେ ବସେ । ପୁଣି କଳରେ ଦୁଇଟା ଗୁଆ ଢାକିଥିବ, କହନ୍ତି ଆଉ ଝିଅ ଉପରେ କୋଉ ଦୁଷ୍ଟ ଗ୍ରହର ଦୃଷ୍ଟି ପଡ଼ିବନି । ତୋରଁ ରଷିଆଣୀ ଘରୁ ଆସିଲା ବେଳକୁ, ପୁଣି ଝିଅକୁ ମାମୁଁ ନେଇ, ଝିଅ ହାତରେ ସେ ଲୁଣ ଚୌରୀ ତକ ଗୋଟେଇ ଦେଇ, ମଝିରେ ଲୁଗା ବାଡ଼ ଟାଣି, ମାମୁ ଝିଅ ହାତ ଧରି ତୋରଁ ଉପରକୁ ପକାଇଦିଏନି ? ତା'ରି ନାଁ ଲୁଣ ଚୌରୀ । ସେତେବେଳେ ବରପକ୍ଷ ଆଣିଥିବା ଚାଦରଟା ଉପରକୁ ଟେକି ଦିଅନ୍ତି, ନହିଲେ ବର ଉପରେ ସେ ଗୁଡ଼ାକ ପଡ଼ିଗଲେ, ବରର ଚୌଦପୁରୁଷ ନର୍କରେ ପଡ଼ିବେ । ସେତକ ପକାଇ ଦେଲାପରେ ଝିଅ ଆଉ ଯୋଉଠି ହେଲେ ବସିବ । ସେଣିକି ଥରକୁ ଥର ତ ବେଦୀକି ଯିବ । ଆଉ ଆଗରୁ ତୁମେ ମୋତେ କେମିତି ଦେଖି ପକେଇଲ ?

ମୋ' ସ୍ୱାମୀ ବଡ଼ ବିଶ୍ୱସ୍ତ ଭାବରେ ପଚାରିଲେ ସତ କହିଲ, ତୁମେ ତୁମ ଘରୁ ଘରେ ଦି'ଘର ଛାଡ଼ି ଗୋଟିଏ ସିମେଣ୍ଟ ବେଞ୍ଚ ଉପରେ ଛିଡ଼ା ହୋଇ ନଥିଲ ? ମୁଁ ସେତିକିବେଳେ ଠିକ୍ କଥାଟା ଠଉରେଇ ପାରିଲି । ମୁଁ କହିଲି ତୁମେ ବୋଧେ ଖାଲି ତା' ଶାଢ଼ୀ ଦେଖିଛ । ତା' ମୁହଁ ଦେହ ଦେଖି ପାରିନ । ନଇଲେ ଏଡ଼େ ସୁନ୍ଦର ଛୁଆଁନାକି, ମନ୍ଦର ଅଧରୀ ତନୁ ପାତେଳି, ଗୋରୀଟିକୁ ଦେଖିଦେଇ, ଏଥିରୁ ଗୋଟେ କୁଣ୍ଡା ଭୃଷୁଣ୍ଡି, ଝିଅଟେ ଧରେଇ ଦେଲେ ବୋଲି, ବୋଧେ ମୋତେ ଛାଡ଼ପତ୍ର ଦେଇସାରନ୍ତଣି । ସେଇଟି ମୋ' ସାଙ୍ଗ ଶୋଭା । ଆମର ଘର ଖଞ୍ଜାଶାଳରେ ଯେତେବେଳେ ବନ୍ଧାଣ ହୋଇସାରି ପଞ୍ଚୁଗ୍ରାସୀ କରୁଥିଲ । ତା'ବର ସେତିକିବେଳେ ବିଭା ହୋଇ ଆସିଲା । ମୋ' ଭାଗ୍ୟ ସଲଖ ତୁମ ନଜରକୁ ତା' ରୂପ ଆସିନି । ସେ ହସି ହସି କହିଲେ, ତୁମେ କ'ଣ ଭାବିଛ ! ମୁଁ ତୁମ ଆଖିରେ କିଏ ତନୁ ପାତେଳି, କିଏ କୁଣ୍ଡା ଭୁଷୁଣ୍ଡୀ, ତାକୁ ମାପି ଥାଆନ୍ତି । ମୁଁ ମୋ ଆଖିରେ ଦେଖିଛି ନା । କିଏ ଚନ୍ଦ୍ର ବଦନୀ ତ କିଏ ଶାମୁକା ମୁହଁ ।

ଶୋଭା ବିଭାଘର ବାସିଦିନ ଏକା ପାଲିଙ୍କିରେ ତା' ବର ସାଙ୍ଗେ ବାହୁଡ଼ା ବରକନ୍ୟା ହୋଇ, ପୁରୀ ଚାଲିଯାଇଥିଲା । ମୋର ତା'ର ଆଉ ଦେଖା ହୋଇ ପାରିନଥିଲା । ଆମ ଘରେ କିନ୍ତୁ ତୋରଁ ଆଠଦିନ ରହି, ତାଙ୍କ ଘରକୁ ଫେରିଯିବାର ଦୁଇଦିନ ପରେ, ମୁଁ ପୁଆଣୀ ହୋଇ, ସବାରୀରେ ରାତି ଅଧରୁ ବାହାରି, ପ୍ରାୟ ତା' ଆରଦିନ ଅଧାକୁ, ଶାଶୁଘରେ ପହଞ୍ଚିଥିଲି ।

ପଛରେ ବହୁତ ଥର ସବାରୀରେ ବସିଛି । କିନ୍ତୁ ସେ ପ୍ରଥମ ସବାରୀ ବସା, ସବୁଦିନ ପାଇଁ ମନରେ ଛାପି ହୋଇ ରହିଯାଇଛି । ଗୋଟିଏ ସୁଆରୀ କାନ୍ଧେଇବା ପାଇଁ, ସାତ ଜଣ ବେହେରା ଥାଆନ୍ତି । ଚାରିଜଣ ବାହକତ, ଦୁଇଜଣ ପାଳିଆ । ଆଉ ଜଣେ ଆଗ ଡ଼ାକୁଆ । ସବୁରି ହାତରେ ଗୋଟିଏ ଲେଖାଏଁ ନିଜ ଉଚ୍ଚର ତଡ଼ା । ଡ଼ାକୁଆ ତଡ଼ାଟିକି ଧରି ଆଗରେ ପ୍ରାୟ ଦଉଡୁ ଥାଏ । ବାହକ ଚାରିଜଣ ତା' ପାଦ ଅନୁସରଣ କରି ଧାଇଁଥାଆନ୍ତି । ପଛ ଦୁଇଜଣ କେତେବେଳେ କାନ୍ଧ ବଦଳିଆ ଦେବେ ବୋଲି, ସମତାଳରେ

ଗୋଡ଼ାଇ ଥାଆନ୍ତି । ଶୁଆରୀ ପଛରେ ମୋତେ ନେବାକୁ ଡ଼ାକି ଆସିଥିବା, ମୋ' ସ୍ୱାମୀଙ୍କ ଦଦେଇ ପୁଅ ଭାଇନାଙ୍କ ଶଗଡ଼ ସହିତ, ମୋତେ ଛାଡ଼ିବାକୁ ଯାଉଥିବା, ମୋ ସାନଭାଇନାଙ୍କ ଶଗଡ଼ ଚାଲିଥାଏ । ତାଙ୍କ ପଛରେ ସେହି ଯୌତୁକ ଜିନିଷ ମଣେଇଁ ଦେବା ପାଇଁ ତାଲିକା ସହିତ ଆମ ଘରର ଗୁମାସ୍ତା, ପଲଙ୍କ, ଆଲମିରା, କାଠ ସରଞ୍ଜାମ ସଜାଡ଼ି ପକାଇଦେବାକୁ, ଗାଁ ମହାରଣା, ଆଉ ଝିଅ, ଢୋଇଁକି ଲେଉଟାଣି ପାଇଁ ସଙ୍ଖୁଳା ଧରି, ବାରିକଙ୍କ ଶଗଡ଼ ପଛକୁ, ବାକି ଯୌତୁକ ସରଞ୍ଜାମ, ପଥର କୁଣ୍ଡ, ଶିଳ ଘୋରଣା, ପନିକି, କୋରଣା, ସାକୁ, ଆଳୁ, କଖାରୁ, କଦଳୀ-ପେଣ୍ଡା, ବଡ଼ି-ଯାଇ, ଖଇ- ଉଖୁଡ଼ାର ଚିତ୍ର ହାଣ୍ଡି, ଅରୁଆ-ଉଷୁନା ଚାଉଳର ଓଳିଆ, କଂସା-ବାସନ, ଗରା, ପିତଳ ହଣ୍ଡା, ହାଣ୍ଡି, ପିତଳ ବାଲଟି ସିଲଭର-ବାସନରୁ ଲୁହା ସରଞ୍ଜାମର ଦୁଧ-ହାଣ୍ଡି,କୋରଣୀ ପର୍ଯ୍ୟନ୍ତ, ଘରକରଣା ଜିନିଷ ଆଉ ଏକୋଇଶି ଖଣ୍ଡି ଶଗଡ଼ରେ, ପଛେ ପଛେ ଚାଲିଥାନ୍ତି । ସେତେବେଳର ପୁଅ ଘରର ବଡ଼ ପଣିଆ, ମପା ଯାଉଥିଲା ସେହି ଶଗଡ଼ରେ । କେତେଖଣ୍ଡ ଶଗଡ଼ରେ ବର-ଯାତ୍ରୀ ଆସିଛନ୍ତି । ଆଉ ଝିଅ ଘରର ବଡ଼ ପଣିଆ ବି ସେହି ଶଗଡ଼ ମାପରେ, କେତେ ଖଣ୍ଡି ଶଗଡ଼ରେ ବେଭାର ଆସିଛି ବୋଲି ମାପ କରାଯାଉଥିଲା । ଏପଟରୁ ବର-ଯାତ୍ରୀଙ୍କୁ କିପରି ମର୍ଯ୍ୟାଦା ଦିଆଗଲା ଓ ସେପଟରୁ ଭାଇ, ଗୁମାସ୍ତା, ବାରିକ, ବେହେରା ଆଉ ଶଗଡ଼ିଆ କେମିତି ମର୍ଯ୍ୟାଦା ପାଇଲେ, ସେହିଥିଲା ସେତେବେଳ ଆଭିଜାତ୍ୟର ମାପକାଠି ।

ଏହା ଉପରେ ଘର ମାଲିକର ଭାରି ନିଘା ଥାଏ । ବୋହୂ ଜିନିଷ ଅଗଣାରେ ସଜଡ଼ା ହୋଇ, ପ୍ରାୟ ସାତଦିନ ପର୍ଯ୍ୟନ୍ତ, ଆଖପାଖ ଗାଁରୁ ଲୋକ ଆସି ଦେଖନ୍ତି । ଆଉ ବୋହୂ ଘରୁ ଆସିଥିବା, ଖଇ, ଚୁଡ଼ାପୁଆ, ବୋଟପୁଆ, ଉଖୁଡ଼ା ମନୋହର ସହିତ, ଖଜା, ଲଡ୍ଡୁ, ପାଚିଲା-କଦଳୀ, ଜଳଖିଆ କରନ୍ତି । ଆଉ ନିୟମ ଅନୁସାରେ ଗାଁ ମାଇପେ, ବୋହୂ ଦେଖି ଆସି, ବୋହୂର ସାଷ୍ଟାଙ୍ଗ ଓଳିଗି ସହିତ ବୋହୂ ବାପ ଘରୁ ଆସିଥିବା ଗୋଟିଏ ଲେଖାଏଁ ନଡ଼ିଆ, ବୋହୂ ତାଙ୍କ ହାତକୁ ବଢ଼ାଇ ଦେଲେ, ସେମାନେ ଧରି ଯାଆନ୍ତି । ସେତେବେଳେ ଏତେବେଳର ନୋଟ ତୋଡ଼ା, କି ବୋହୂ ପୋଡ଼ାର ବ୍ୟବସ୍ଥା ଆଦୌ ନଥିଲା । ସେ ଯାହାହେଉ, ମୋର କିନ୍ତୁ ସେଦିନ ଏଇ ସବାରୀ ବାହକଙ୍କ ଦୌଡ଼ରେ, ମୋ ପଛରେ ଆସୁଥିବା ଭାଇନାଙ୍କ ଶଗଡଟି, ବହୁତ ପଛରେ ପଡ଼ିଯାଉଥିଲା । ମୋ' ଦେହ ଅହରହ, ରଜର ଗଛ ଦୋଳିରେ ଦୋହଲାଇଲା ପରି ଲାଗୁଥାଏ । ଆଉ କାନ ଭିତରେ ଭାଁ ଭାଁ ଶବ୍ଦରେ ମୁଣ୍ଡ, ଦେହ କ'ଣ ହୋଇଯାଉଥାଏ । କିନ୍ତୁ ସେ ବେହେରା ମାନେ, ସମସ୍ୱରରେ (ହମ୍ବରେ ଭାଇରେ ହମ୍ବରେ ଭାଇରେ, ଟିକି ବୋହୂଟିରେ ନଈକି ଯାଧୋଇ ଯିବୁ ନାହିଁଟିରେ, ନଈରେ ଫାଟ, ଖସଡ଼ା ବାଟ, ଅଣ୍ଟିଆ କୁମ୍ଭୀର ଚାହିଁ ବସିଛି, ଟାକୁକୁନି ଗିଳିଦେବଟିରେ) ତାରି ମଝିରେ ବୀରଦର୍ପରେ ଡ଼ାକୁଆର ଡ଼ାକ ଶୁଭୁଥାଏ । "ହେ ଆଇଲା ହୁଁ" ପଛବାଲା ଉତ୍ତର ଦିଅନ୍ତି, "ହେ ହାଣି ଦେ ହୁଁ" ଦେଇଟି ଆସୁଛି ହୁଁ" "ଦେ

ପିଟିଦେ ହୁଁ'', ତାରି ମଝିରେ ନିଜ ଗୋଡ଼କୁ ଆଉରି ଚଞ୍ଚଳ ଦଉଡ଼େଇ, ଡ଼ାକୁଆ ବେଳେବେଳେ ମଉଜିଆ ଡ଼ାକଦିଏ । (ଧାଁ ବାଡ଼ିପଡ଼ା ଧଡ଼ିଆ, ସାନ ସାଆନ୍ତାଣୀ ପଖାଳ ବାଢ଼ିବ, ସଜନା ଶାଗରେ ନଡ଼ିଆ) । କହି ବୁହେ ଲେଖେଁ ସେହି ବିଲ ହିଡ଼ରେ, ଦଉଡ଼ିଲାବେଳକୁ, ମୁଁ ଖୁବ୍ ଜୋର୍‌ରେ ସବାରୀ ବାଡ଼କୁ ମୁଠେଇ ଧରି ପକାଉଥାଏ ।

ଏବେ ଭାବେ, ସେତେବେଳର ବେହେରା ଡ଼ାକ, ବୋଧେ ବର୍ଗୀ ଅମଳରୁ ରହି ଯାଇଥିଲା । ଫକୀର ମୋହନଙ୍କ ଇଛମା କଥା ମନେ ପଡ଼େ । ଆମ ଏଇ ଝିଅମାନଙ୍କୁ, ବ୍ରାହ୍ମଣ ଆଉ ପକ୍ଷୀମାନଙ୍କ ପରି ଦ୍ୱିଜ କହିଲେ ଅତ୍ୟୁକ୍ତି ହେବନି । ସେମାନେ ପ୍ରାୟ ଶାଶୁଘରେ ଆଉ ଗୋଟେ ଜନ୍ମ ନିଅନ୍ତି । ବୟସ ଯେତିକି ହେଉ ପଛେ, ସେଇଟା ଦେହରୁ ଓହ୍ଲାଇପଡ଼ି, ଧୀରେ ଧୀରେ ସଜାଡ଼ି ହୋଇଯାଏ, ଆଉ ଗୋଟିଏ କୁନି ସଂସାର । ଯେତେ ଗହଳିଆ ଘର ଥିଲେ ବି, ତା'ରି ଭିତରେ ଗୋଟିଏ ଛୋଟିଆ ନୀଡ଼ ଗଢ଼ି ଉଠେ । ଦୁଇଟିକିଆ ଜୀବନଟି ଆସ୍ତେ ତିନି, ଚାରି ହୋଇ ଡ଼ାଳପତ୍ର ମେଲିଲାପରି ମେଲିଯାଏ । କିଏ କେଉଁଠି ଆବଦ୍ଧ ହୋଇ ରହିଯାଏ ତ, କିଏ ଉଡିଯାଏ ଅନ୍ୟ ଆସ୍ଥାନକୁ ।

ମୁଁ ଉଡ଼ିବା ପାଇଁ ପକ୍ଷୀ ଝାଡ଼ିଥିଲି । ମୋ' ସ୍ୱାମୀଙ୍କର ମାଷ୍ଟରୀ ଜୀବନ ଛାଡ଼ି, ଓକିଲାତୀରେ ମନ ନିବେଶ କରାଇଲି । ପୁଣି ମୁଁ ଭଲ ପାଇଲି ଜଗନ୍ନାଥ କ୍ଷେତ୍ର । ଆଉ ସମୁଦ୍ରର ଉତ୍ତାଳଲହରୀକି । ମୋ' ଛୋଟ କୁନି ଝିଅଟି ସହିତ, ଆମେ ଦୁହେଁ, ନଡ଼ା-ବାଉଁଶ ଘେରା, ଭଡ଼ା ବସାଟିଏ ସଜାଡ଼ିଲୁ । ଧୀରେ ଧୀରେ ସେହି ଭଡ଼ା ବସାଟିର ଅଳ୍ପଦୂରରେ, ଗୋଟିଏ ମଜଭୁତିଆ ବସା ତିଆରି ହୋଇ, ଛୋଟିଆ ତିନି ଜଣିଆଁ ସଂସାରଟିଏ, ଗୋଟିଏ ବିରାଟ ସଂସାରରେ ପରିଣତ ହୋଇଗଲା । ସେହି ଛୋଟିଆ ମାଷ୍ଟରଟି, ଗୋଟିଏ ବଡ଼ ଓକିଲରେ ପରିଣତ ହେଲେ । ସେହି ସାଧାରଣ ଲୋକଙ୍କ କଥା ଚିନ୍ତା କରୁଥିବା ପ୍ରାଣଟି, ଗୋଟିଏ ବଡ଼ ନେତାରେ ପରିଣତ ହୋଇଗଲା । ଗହଳରେ ସବୁବେଳେ ଘର ଗମ ଗମ ହେଲା । ମୁଁ ପଛକୁ ଚାହିଁବାକୁ ବେଳ ପାଇଲିନି ।

ସବୁବେଳେ ଚିନ୍ତାକଲି ଆଗରୁ ଆଗକୁ । ଏତେ ବଡ଼ ବିରାଟ ପରିବାର । ଯେମିତି କିଛି ଅଭାବ ରହିବନି, ମୋର ପରିଚାଳନାରେ । ନୂଆ ଓକିଲ ପୁଣି ନେତା । ଅଭାବ ତ ନିଶ୍ଚୟ ଘର ଚାରିପଟେ ବୁଲିବ । ମୁଁ ଅଣ୍ଟା ଭିଡ଼ିଲି । ପାଖରେ ଥିବା ଜାଗା ଖଣ୍ଡିକରେ କଦଳୀ, ଅମୃତଭଣ୍ଡା, ସଜନା, ଜହ୍ନିଭେଣ୍ଡୀ, କାକୁଡ଼ି, ଶାଗ ଲଙ୍କାମରିଚର, ଖଣ୍ଡିଏ ବଗିଚା କଲି । ଖତ ଆଉ ଦୁଧ ପାଇଁ ଗାଈ କେତୋଟି ରଖି, ନିଜେ ଗାଈ ମୁହାଁଇ, ଗୁହାଳ-ପୋଛି, ଘଷି ପକେଇବାରେ ବହୁତ ଆନନ୍ଦ ଅନୁଭବ କଲି । ମୋ' ପରିବାରରେ, ପୁଅ-ଝିଅ, ଦିଅର-ନଣନ୍ଦଙ୍କ ବ୍ୟତୀତ ବହୁ ଆଶ୍ରିତ ରହିଥାନ୍ତି । ସବୁ କାମରେ ରାଜନୀତିଠାରୁ, ଅର୍ଥନୀତି ଯାଏଁ, ମୋ' ପିଲେ, ମୋ' ପାଳିତ, ମୋ' ଆଶ୍ରିତ, ସମସ୍ତେ ପୂର୍ଣ୍ଣ ପ୍ରାଣରେ ସାହାଯ୍ୟ କରନ୍ତି ।

ମୁଁ ପ୍ରଥମେ ସ୍ୱାମୀ ରୂପରେ ଯେଉଁ ଡ଼ାହାଳିଆ ପତଳା ଢେଙ୍ଗା କର୍ମଠ ଲୋକଟିକି ଦେଖିଥିଲି, ମୋତେ ଲାଗେ ସତେ ଅବା ସିଏ ଚାରିଆଡ଼େ ଓହଳ ଓହଳିଥିବା, ବିରାଟ ବରଗଛରେ, ପରିଣତ ହୋଇ ଯାଇଛନ୍ତି । କେତେ କୁଆଡ଼ୁ କିଏ ଆସି, ତାଙ୍କଠାରୁ ବାସ-ଗ୍ରାସର ସୁଖ-ସ୍ୱାଚ୍ଛନ୍ଦର ସାହାଯ୍ୟ ଲୋଡ଼ୁଛନ୍ତି । ସେଇଥିପାଇଁ ମୁଁ ମନେ ମନେ ଆନନ୍ଦିତ ହୁଏ । ଆଉ ଗୋଟିଏ ନିର୍ମୂଳି ଲଟା ପରି, ନିଜକୁ ପୂର୍ଣ୍ଣ ସମର୍ପଣ କରିଦେଇଥାଏ । ସେହି ମହାଦ୍ରୁମର, ଗହଳିଆ ଡ଼ାଳ ଗହଳର, ଛାଇରେ ହଜାଇ ଦେଇଥାଏ, ମୋ'ର ସମସ୍ତ ସତ୍ତାକୁ ।

ଦିନକର ଘଟଣା । ମୋର ଗୋଟିଏ ଅନାଥ ଆଶ୍ରମରୁ ଆସି ସାହାଯ୍ୟ ଲୋଡ଼ିଥିବା ପାଳିତ ପୁଅ ମାୟାଧର ଆଉ ମୁଁ ଗୁହାଳ ସଫାକରି ବଡ଼ ହଲଷ୍ଟିନ୍ ଗାଈଟାକୁ ମୁହାଁଉଛି । ମୁଁ ଗୋଟେ ଛୋଟ କାଠ ଟୁଲ୍‌ରେ ବସି କୁଣ୍ଡରେ ଦାନା ଗୋଳାଇଲାବେଳେ ମାୟାଧର ଚୁନି ଛିଞ୍ଚୁଛି । ସାଧାରଣତଃ ଗାଈ ଖୁଆଇଲା ବେଳେ ମୁଁ ବାଡ଼ି ଦୁଆରଟି ଆଉଜାଇ ଦେଇଥାଏ । ହଠାତ୍ ବାଡ଼ି ଦୁଆରଟି ସାମାନ୍ୟ ଶବ୍ଦ କରି ଅଳ୍ପ ମେଲା ହେଲା । ମୋ' ଦୃଷ୍ଟି ଆପେ ଆପେ ତେଣେ ଟାଣି ହୋଇଗଲା । ଅତି ସୁନ୍ଦର ଗୋଟିଏ ନାଲିଆ ଜରିଦିଆ ଭେଲ୍‌ଭେଟ୍ ଚଟି ସହ ଉଗ୍ର ଆଧୁନିକତାର ସଂକେତ ବହନ କରି ଗୋଟିଏ ବୟସ୍କ ପାଦ ଏବୁଣ୍ଡିବନ୍ଧ ଏପଟକୁ ପଡ଼ି, ଅଟକି ଗଲା । କିନ୍ତୁ ତାର ବିପରିତ ଦୃଶ୍ୟ, ପାଦଗଣ୍ଠି ଉପରକୁ ଦିଶୁଥିବା ଲୁଗା କୁଞ୍ଚର ଧଡ଼ି ନୁହେଁ, ସାଧବା ସ୍ତ୍ରୀର, କି ନୁହେଁ ପୁରୁଷର । ଏକ ପ୍ରକାର ମଧ୍ୟମ ଧରଣର । ପୁଣି ଚଟି ତୁଳନାରେ ନିତାନ୍ତ ଅପରିଷ୍କାର । ସାଧାରଣ ମଧ୍ୟବିତ୍ତ ଠାରୁ ବିନିମ୍ନ । ସେ ପୁଣି ଆଗେଇବାକୁ କୁଣ୍ଠିତ ବୋଲି, ମୁଁ ବିଳମ୍ବରୁ ବୁଝି ପାରିଲି । ପୁଣି କବାଟ ପାଙ୍କରେ ଗୋଟିଏ ଆଖି ମୋତେ ନିରୀକ୍ଷଣ କରି ରହିଥାଏ ଦ୍ୱନ୍ଦରେ । ସହଜେ ମୋର ସେ ଅପର୍ଯ୍ୟାପ୍ତ ଦୁଧ ଦେଲା ଗାଈକି, ତା'ର ଦୁହାଁ ହେଲା ଦୁଧକୁ କିଏ ଦେଖିଲେ, ମୋତେ ଭଲ ଲାଗେନି । ଲୋକଙ୍କ କହିବା ଅନୁସାରେ ଦୃଷ୍ଟି ପଡ଼ିଯିବା ଭୟରେ । ତଥାପ ମୁଁ ଡାକିଲି କିଏ ଆସୁନ !

ସ୍ତ୍ରୀ ଲୋକଟି ବାହାରି ଆସିଲା । ବିଧବା , ଜୀର୍ଣ୍ଣ ଅପରିଚ୍ଛନ୍ନ ମଳିନ ମୁହଁରେ ସାମାନ୍ୟ ହସ, ସେ ବି ବିବର୍ଣ୍ଣ । ମୋତେ ହାତ ଯୋଡି ନମସ୍କାର କଲା । ମୁଁ ପ୍ରତି ନମସ୍କାର ବଦଳରେ ବାଁ ହାତଟି ଉଠାଇ ପ୍ରଥମେ ଚିହ୍ନିବାକୁ ଚେଷ୍ଟା କଲି, ଭାବିନେଲି କେହି ନୂଆ ଲୋକ । ବାଳ ଉଠା ଉଚ୍ଚା କପାଳର ବହୁତ ଉପରେ କଞ୍ଚା ପାଚିଲା ମିଶା ବାଳ । ସେ ପୁଣି ଭାରି ପତଳା । କୋରଡିଆ ଆଖିରେ ଓସାରିଆ ଭ୍ରୂଲତା, ଦେହର ରଙ୍ଗ କଳା ନୁହେଁ,ଅସିଝା ପୋଡା ଧଡିଆ ବାଇଗଣ ପରି ମୋଟା ମୋଟା ମାଟିଆ ଚମଡା ଗଣ୍ଠି ଗଣ୍ଠିଆ ଆଙ୍ଗୁଠିରେ ତିନିଟା ରୂପା ଓ ପିତଳ ମୁଦି । ଚଟିକି ଶାଢ଼ୀ କି ରୂପ କେହି କାହା ସାଙ୍ଗରେ ଖାପ ଖାଉନି, କିନ୍ତୁ ବ୍ୟବହାର ମାର୍ଜିତ, ଠାଣିରେ ଭଦ୍ରତା ।

ମୁଁ କହିଲି, ମାୟାଧର ପିଢ଼ା ଖଣ୍ଡେ ପକା, ମା ବସିବେ । ତାଙ୍କୁ କହିଲି, ଆପଣ ଭିତର ପିଣ୍ଡାରେ ବସନ୍ତୁ । ମୁଁ ଏଇ ଗାଈଟିକୁ ଖୁଆଇ ଦେଇ ଯାଉଛି । ସେ କହିଲେ ନାହିଁ,ଆପଣ କାମ ସାରନ୍ତୁ ମୁଁ ଠିଆ ହୋଇଛି । ମୋତେ କିନ୍ତୁ ଜମା ଭଲ ଲାଗୁନଥାଏ । ମୋ ଗାଈଙ୍କ ଭିତରେ ଏଇ ଗାଈଟା ସବୁଠୁ ସାର । ଦିନକୁ କୋଡିଏ ଲିଟର ଦୁଧ ଦେଲା ବାଲା । ଦିହରୁ ମାଛି ଖସି ପଡୁଥାଏ । ମୁଁ ତା ଦିହରେ ଦିନେ ଦି ଦିନରେ ଖଲିପତ୍ର ବିଣ୍ଡା କରି ଶୋରିଷ ତେଲ ବୁଡାଇ ଘସେ । ସହଜେ ତ ଚିକକଣ କଳା । କେବଳ ପହ୍ନାରେ ଗୋଟିଏ ଅଧୁଲି ପ ରି ଚକ ଚକିଆ ଧଳା ଦାଗ । ଲାଞ୍ଜର ବାଳ ନକାଟିଲେ ଭୂଇଁରେ ଘୁଷୁରି ଯାଏ । ପାଇପ୍ ଲଗାଇ ଗାଧୋଇଲା ବେଳେ ମଣିଷ ପରି ଆଗ ଗୋଡ ପଛ ଗୋଡ ଟେକି ଠିଆ ହୋଇ ପେଟ ଦେଖାଉଥିବ । କାନ୍ଥରେ ଲାଗିଥିବା ପଙ୍ଖାକୁ ମୁଣ୍ଡ ଦେଖାଇ ଠିଆ ହେବ । ସେ ଗାଈକି ମୋର କଟ ମଟ କରି ଚାହିଁ ରହିଲାରୁ, ମତେ ଜମା ଭଲ ଲାଗୁନଥାଏ । ଯେତେ ଚଞ୍ଚଳ ପାରେ କାମ ସାରି ଆସି ବି ଭାରି ବୋଲି ଭାବିଲା ବେଳକୁ ସେ କଥା ଆରମ୍ଭ କଲେ ।

କହିଲେ ମୋର ବି ଏମିତି ଭାରି ଗାଈ ସଉକ ଥିଲା । ଯା ନାଁ କଣ ? ଯାକୁ କେତେରେ କିଣିଲେ ? ମୁଁ କହିଲି ନାହିଁ, ମୁଁ ଯାକୁ କିଣିନି । ମୋ ଦିଅର ନିମାପଡାରୁ କିଣି ଗୋଟିଏ ଜର୍ସି ଗାଈ ଦେଇଥିଲେ, ମଗୁଶୀର ମାସ ପହିଲି ଗୁରୁବାର ଦିନ ଆସିଥିଲା ଯେ ମୁଁ ତା ନାଁ ଇନ୍ଦିରା ଦେଇଥିଲି । ସେ ଗୋଟିଏ ମାଈ ପିଲା ସାଙ୍ଗରେ ଆଣିଥିଲା । ତା ନାଁ ଦେଲି ନନ୍ଦିନୀ । ତା ମା ବର୍ଷକ ପରେ ଆଉ ଗୋଟିଏ ଛୁଆ ଦେଲା ବେଳକୁ ବର୍ଷକର ନନ୍ଦିନୀ ପୁଣି ମା ହେବାକୁ ବସିଲା । ତାକୁ ହଲଷ୍ଟିନ ଇଞ୍ଜେକସନ ଦେଲି । ସେ ବର୍ଷେ ଦଶ ମାସରେ ଯାକୁ ଜନ୍ମ କଲା । ଯା ନାଁ ଚନ୍ଦ୍ରିକା । ସେ ଟିକିଏ ହସି କହିଲେ,ଏଇ କାଳି ନାଁ ପୁଣି ଚନ୍ଦ୍ରିକା ? କୃଷ୍ଣ ହୀରକ ଦେଇଥିଲେ ଭାରି ଭଲ ହୋଇଥାନ୍ତା । ପୁଣି ତା ମା ମୁଖ୍ୟମନ୍ତ୍ରୀ ହେଲା ବେଳକୁ ତ ଆଇ ପ୍ରଧାନମନ୍ତ୍ରୀ । ତାଙ୍କର ଏଇ ପଦକ କଥା ଶୁଣିଲା ପରେ, ମୁଁ ଭିତରେ ଭିତରେ ଲାଉ ଶାଗ ପରି ନରମି ଯାଇଥିଲି । ନିଜ ବିଚାର ପାଇଁ ଆପେ ଆପେ ଲଜିତ ହୋଇ ଗାଈ ଉପରେ ଦୃଷ୍ଟି ପଡିବା କଥା ବିଚାରି ଥିବାରୁ ମତେ ଭାରି ଆଶ୍ୱସ୍ତି ଲାଗିଲା ।

ମୁଁ ମାୟାଧରକୁ ଅନ୍ୟ ଗାଈ ମାନଙ୍କୁ ଖାଇବାକୁ ଦେବାକୁ କହି ଉଠି ଆସିଲି । ସେଇଠି କଳମୂଳେ ଚଞ୍ଚଳ ହାତଟା ଧୋଇ, ତାଙ୍କୁ ଆଣି ଶୋଇବା ଘରେ ଖଣ୍ଡିଏ ଚୌକି ଦେଇ ବସେଇଲି । ସେ ଗିଲାସେ ପାଣି ମାଗି ପିଇଲେ । ତାଙ୍କର ଭାବିଲା ଭାବିଲା ଚାହାଣି କେଜାଣି କାହିଁକି ମତେ ଭାରି ବ୍ୟଥିତ କରି ପକାଉଥାଏ । ସତେ ଅବା ମତେ କେମିତି କ'ଣ କହିବେ ବୋଲି ସ୍ଥିର କରି ପାରୁ ନଥାନ୍ତି । ମୁଁ ଆଗ ପଚାରିଲି, ଆପଣଙ୍କର କ'ଣ କାମ କି ? କୁଆଡେ ଆସିଥିଲେ ? ସେ ମୋତେ ଅତି କୋମଳ ଭାବରେ କହିଲେ, ଆପଣ ମତେ ଚିହ୍ନିବେନି, ମୋ ନାଁ କୁ ନିଶ୍ଚେ ଚିହ୍ନିବେ । ମୋ ନାଁ ଶ୍ୱେତାମ୍ବରୀ । ମୋର

ଏତେ ବେଳର ଭାବନା ସାଗରରେ ହଠାତ୍ ଭଟ୍ଟା ପଡିଗଲା । ସତରେ ! ମୁଁ ଚମକି ପଡିଲି । ତାଙ୍କ ମୁଁହକୁ ବିସ୍ମିତ ଭାବରେ ଚାହିଁ ରହିଲି ।

ମତେ ଲାଗିଲା ମୁଁ ଗୋଟିଏ ସ୍ୱପ୍ନ ଦେଖୁଛି । ମୋ ସ୍ୱପ୍ନର ଅତଳ ଗର୍ଭରେ ଲୁଚି ଯାଇଥିବା ପଦ୍ମ କଢ଼ିଟି ସତେ ଅବା ଗୋଟିକ ପରେ ଗୋଟିଏ ପାଖୁଡା ମେଲାଇ ପୂର୍ଣ୍ଣ ବିକଶିତ ହେବାକୁ ଲାଗିଲା । ଏଇ ରଙ୍ଗ ଛଡା ଝାଉଁଳା ମୁହଁରେ ମୁଁ ଦେଖିଲି ସେତେବେଳର ପ୍ରତିବିମ୍ବ । ମୁଁ ପରିସ୍କାର ଦେଖି ପାରିଲି, ସତ ଝଡ ଝଞ୍ଜା ବହିଗଲାଣି, ସେଇ ଝରା ପଦ୍ମ ଉପରେ । ପ୍ରକୃତରେ ସେତେବେଳେ ସେ ସିନା ମତେ ଚିହ୍ନି ନଥିଲେ, କିନ୍ତୁ ତାଙ୍କର ସେ ରୂପ ମୋ ମନ ଦର୍ପଣରେ ଆଜିଯାଏଁ ବି ଟିକିଏ ମଳିନ ପଡିନି । ସେତେବେଳରେ ତାଙ୍କକପାଳର ଦୁଇ ପଟ ପାତା, ମଝିରେ ଥିବା କଳା ଟୋପାର ମାପ ଲୁଗାର କଳା ଧଡିର ଓସାର ଏବେ ବି ମୋ ମନରୁ ତିଳେ ମାତ୍ର ଲିଭିନି । ଆଉ ତାଙ୍କର ସେ ରୂପର ଏ ପ୍ରେତ  ଅସମ୍ଭବ ପରି ଲାଗିଲା । ପୁଣି ତାଙ୍କୁ ପୂର୍ବରୁ ଦେଖିଛି ବୋଲି ନ କହି, କେବଳ ନାଁ ଶୁଣିଛି ବୋଲି କହି ମୋର କେତେ କାଳର ହଜିଲା ଦୁର୍ଲଭ ଜିନିଷକୁ ବିନା ଦୁର୍ଲଭା ସାହାଯ୍ୟରେ ପାଇଛି ବୋଲି ଭାବି ଗଲି କେତେ କ'ଣ । କାରଣ ଭିତର୍‌ର ଠିକ କଥା ନ ଜାଣିଲେ ବି , ଲୋକ ମାନଙ୍କ ମୁଁହରୁ ବିଶେଷ କରି ଖବର କାଗଜରୁ ତାଙ୍କ ବିଷୟରେ ଅନେକ କିଛି ଜାଣିବାକୁ ମିଳିଥିଲା । ସେଇଥି ପାଇଁ କି କ'ଣ ସେ ତାଙ୍କର ନାଁର ଗୁରୁତ୍ୱ ଦେଇଥିଲେ ।

ଏହାପରେ ଆଉ ଶତ ଚେଷ୍ଟା କଲେ ବି ଶ୍ୱେତାମ୍ବରୀଙ୍କୁ ମନରୁ ଦୂରେଇ ପାରିଲିନି । ସବୁ ସାଙ୍ଗକୁ ଠେଲି ଦେଇ ଶ୍ୱେତାମ୍ବରୀଙ୍କ ଜୀବନୀର ଚଳଚ୍ଚିତ୍ର ଗୋଟିକ ପରେ ଗୋଟିଏ, ପରଦା ଉପରେ ଚାଲିଲେ ଯନ୍ତ୍ର ଚାଳିତ ଭଙ୍ଗୀରେ । ଗୋଟି ଗୋଟି ଶବ୍ଦ ପ୍ରତିଧ୍ୱନିତ ହେଲା । ପ୍ରଶ୍ନ ଗୁଡିକ ମନରେ ଆଉ ଉତ୍ତର ଗୁଡିକ କାନରେ  । ମୁଁ ପୁଣି ପଚାରିଲି ମୋ ପାଖରେକ'ଣ କାମ ଅଛି ? ସେ କହିଲେ ନାଁ ଆପଣଙ୍କ ମାଧ୍ୟମରେ ଆପଣଙ୍କ ବାବୁଙ୍କ ପାଖେ ଗୋଟିଏ ପରାମର୍ଶ କରିବି ଯେ, ହେଲେ ଆଗ କ'ଣ ଟିକିଏ ଖାଇଥା'ନ୍ତି । ପେଟ ମରା ବାହାରିଛି ତ, ଟିକିଏ ଖାଲି ପେଟ ହେଲେ, ପେଟକୁ ମାରୁଛି । ମୁଁ କିଛି ଛେନା ଚିନି ପକେଇ ଦେଲି, କହିଲି ବାବୁ ନାହାନ୍ତି । ଆସୁ ଆସୁ ଡେରି ହେବ । ଆଜି ଏକାଠି ଖାଇବା । ବାବୁ ଆସିଲେ କଥାବାର୍ତ୍ତା ହେବେ । ସେ ମୋ କଥାକୁ ଅତି ଆଦରରେ ଗ୍ରହଣ କଲାପରି କହିଲେ, ମୋ ପାଇଁ କିଛି ହଇରାଣ ହେବେନି । କେବଳ ଆମିଷ ଛାଡିଦେଲେ, ମୋର ପିଆଜ ରସୁଣରେ ବାରଣ ନଥାଏ । ମୋତେ ପଚାରିଲେ, ଆପଣଙ୍କର ପିଲାପିଲି କ'ଣ ?

ମୁଁ କହିଲି, ଆପଣ ତ ମୋ ମାଉସୀ ଗାଁର । ମୋ ମାଉସୀ ଭଳିଆ, ମୋତେ ଆପଣ ବୋଲି କ'ଣ କହୁଛନ୍ତି ? ମୋତେ ଭଲ ଲାଗୁନି । ସେ ସଙ୍ଗେ ସଙ୍ଗେ କହିଲେ ଠିକ୍ ଅଛି । ତୁମେ ତ ଝିଆରୀ ଭଳିଆ, ମୋତେ ଆପଣ କହନି । ତାଙ୍କ କଥା ମୋତେ ଭାରି ଭଲ ଲାଗିଲା । ଗୋଟିଏ ଶବ୍ଦର ବିନିମୟରେ ଅତି ଅଳ୍ପ ସମୟରେ ଆତ୍ମୀୟତା

ଜମି ଆସିଲା, ମୁଁ ପଚାରିଲି ତୁମର ମାଉସୀ ଜମି ଜମା ମକଦ୍ଦମା କାମ । ସେ କହିଲେ ହଁ ମା ମାଲିମକଦ୍ଦମା ସତ, କିନ୍ତୁ ଜମି ଜମା ନାହିଁ । ଦୁଃଖର ଦାଉରେ ରୁନ୍ଧି ହୋଇ ଯାଇଥିବା ଭାବକୁ ସେ ଭାଷା ଦେବାକୁ ଚେଷ୍ଟା କରି କହିଲେ- ଜୀବନଟା ଯାକ ଗରଳ ପିଇ ପିଇ କଟାଇ ଦେଇଚି । ସେଇ ସମ୍ପତ୍ତି ଗରଳ ମୋ ସାରା ଜୀବନକୁ ଜାଳି ପୋଡି ଧ୍ୱଂସ କରି ଦେଇଚି । ଲକ୍ଷ ପତି ମୁଁ ଆଜି ଦାଣ୍ଡ ର ଭିକାରୁଣୀ ହୋଇଛି । ଲକ୍ଷ୍ମୀ ପରା ଚଞ୍ଚଳା ସେ ଆସିଲା ବେଳେ ପଦ୍ମାସନି ଗଲାବେଳେ ସର୍ବ ନାଶିନୀ । ଯେଉଁଠି ଶତଦଳ ପଦ୍ମ ଫୁଟୁଥିଲା , ସେଇଠି ପୁଣି ଦୁଦୁରା ଫୁଟିଲା । ତୁମ ବାବୁ ବୋଧେ ମୋତେ ଜାଣିବେ । କାରଣ ସେ ମୋ ନଣନ୍ଦ ମୃଷାର ଲେଖା ଯୋଖା ଭଣଜା ହେବେ । ନଣନ୍ଦର ଏଇ ପୁରୀରେ ପୁତୁରା, ଆଉ ବି ଆମ ସେପଟେ ସମସ୍ତେ ଏଇ ବାବୁଙ୍କ ନାଁ ମତେ କହିଲେ । ଏ କୁଆଡେ ଦୁଃଖୀ ରଙ୍କିଙ୍କୁ ସାହାଯ୍ୟ ହେବା ଲୋକ ।

ମୁଁ ବର୍ତ୍ତମାନ ସମ୍ବଳ ବିହୀନ । କହିଲି ପରା ମା' ଦିନେ ଟଙ୍କା ଗଦା ଉପରେ ଶୋଇଥିଲି । ମୋ ପଲଙ୍କ ଚଟାଣ ତଳେ ଲୁହା କଡିରେ ଟଙ୍କା ହଣ୍ଡା ଝୁଲୁଥିଲା । ମୁଁ ଥିଲି ମୋ ଶ୍ୱଶୁରଙ୍କର ଏକମାତ୍ର ବୋହୂ । ମୋ ସ୍ୱାମୀଙ୍କ ରୂପ ଥିଲା ସାକ୍ଷାତ କନ୍ଦର୍ପ । ଆଜିଯାଏଁ ଏତେ ରୂପବନ୍ତ ଲୋକ ଦେଖିନି । ତାଙ୍କ ଦେହ ବ୍ୟସ୍ତ ବେଳେ ରାତିରେ ଟିକିଏ ପିଇବାକୁ ମାଗିଲେ । ମୁଁ ଥାଳିଆରେ ଡାଳିମ୍ବ ମଞ୍ଜି ଛଡେଇ ରଖି କୋଉଥିରେ ଛେଚି ରସ କାଢ଼ିବି ଭାବି କିଛି ନପାଇ, ମୋ ହାତର ସୁନା ଖଡୁ କାଢ଼ି ସେଇଥିରେ ଛେଚି ତାଙ୍କ ରସ ପିଆଇଥିଲି । ଏପରି ସୌଭାଗ୍ୟ ସାଙ୍ଗରେ ସେପରି ସ୍ୱାମୀକି ଖାଇଛ, ପୁଣି ମାତ୍ର ଅଠର ବର୍ଷ ବୟସରେ । ଖାଲି କ'ଣ ମୋର ଭାଗ୍ୟ ଭାବୁଛ ? ମୋ ସାନ ଭଉଣୀ ମାହେଶ୍ୱରୀ, ଏଇ ପୁରୀ ମିଶ୍ର ଘର( ସତୁ ମିଶ୍ର) । ସେ ତ ବଡଲୋକିରେ ଏମାର ମଠ ତଳକୁ । ସେ ତାଙ୍କର ପୁଅକୁ ବିଭା ହୋଇ ତାଙ୍କ ଘରେ ବୋହୂ ହୋଇଥିଲା । ଯାହା କହନ୍ତି, ଧନ ପିଢ଼ାରେ ଫୁଟି ବାହାରୁଥିଲା । ଅତି ସଂପଦଥିଲା, ଆମ ପରିବାରର ବିପଦର କାରଣ । ତା ସ୍ୱାମୀ ପୁଣି ସରକାରରୁ ବଡ ଉପାଧି ପାଇଥିଲେ । ସେ ଯାହା ହେଉ ଗୋଟିଏ ପୁଅ ଗୋଟିଏ ଝିଅ ଜନ୍ମ କରି ସ୍ୱାମୀ ସୋହାଗିନୀ ହୋଇ ମୁଣ୍ଡରେ ବସିଥିଲା । ତାକୁ ସେବା କରିବାକୁ ଥିଲେ ଦାସୀ ରାନ୍ଧୁଣୀ ହୋଇ ତିନିଟା, ସେଇ ମାନଙ୍କ କବଳରେ ପଡ଼ି ଧରି ପକେଇଲା କୋକେନ୍ ନିଶା । ଚବିଶି ଘଣ୍ଟା ଗୋଟିଏ ଘରେ ଚାବି ପଡ଼ି ରହିଲା । ତଥାପି ଝରକା ବାଟେ ପଡ଼ିଶା ଘରକୁ, ଲୁଗା ଧଡ଼ି ଚିରି, ଗୋଟିଏ ଗୋଟିଏ ଗହଣା ବାନ୍ଧି, ପକାଇ ତା' ବଦଳରେ କୋକେନ ନେଇ ଖାଉ ଖାଉ, ପଡ଼ିଶା ଘରକୁ ବଡ଼ ଲୋକ କରିଦେଇ, ନିଜେ ଶେଷରେ ପାଗଳ ହୋଇଗଲା । ନିଶା ବଦଳରେ, ମେଞ୍ଚା ମେଞ୍ଚା ବିଷ୍ଠା ପାଟିରେ ପୁରେଇ ଦେହରେ ବୋଳି ହୋଇଗଲା । ଯାହା ହେଉ ପୁଅ ଝିଅ ଯୋଡ଼ିଏ ଦେଇଯାଇଥିଲା ସ୍ୱାମୀକି । ଦେବତା ପରି ସ୍ୱାମୀ, ସେଇ ପିଲାଙ୍କ ମୁହଁକୁ ଚାହିଁ, ରହିଲେ ଆଉ ସଂସାର କଲେନି ।

ଆମେ ବାପା ମା'ଙ୍କ ତିନୋଟି ଝିଅ, ଜାଣିଲ ମା' ମୋ ବୋଉ କେବେ ପୁଅଟିଏ ପାଇଁ ମନଦୁଃଖ କରେନି। କହେ କୋଉ ପୁଅ ମୋ ଜ୍ୱାଇଁମାନଙ୍କ ପରି ହୁଅନ୍ତା । ଏ ଜ୍ୱାଇଁ ମାନେ ହେଲେ ମୋ ପୁଅ । କାହା କଥାରୁ ସିନା ଅମୃତ ବରଷେ, ମୋ ବୋଉ ପାଟିରୁ ବିଷ ବରଷିଥିଲା । ମଝିଆ ଜ୍ୱାଇଁଟ ମଲା, ସାନ ଜ୍ୱାଇଁଙ୍କର ସ୍ତ୍ରୀ ମଲାରୁ, ସେ ଏପଟକୁ ଜମା ଚାହିଁଲାନି । ଏକାଥରେ ପର ହୋଇଗଲା । ଆଉ ଯିଏ ପୁଅ ପରି ସବୁ ଭୋଗ କଲା, ସେ କୁଳ ବୁଡ଼େଇ ଥାନ ଉଡ଼େଇ ଦେଲା । ସେ ହେଲା ମୋ ବଡ଼ ଭିଣୋଇ, ମୋ ନାନୀର ବର । ନାନୀ ନାଁ ପିତାମ୍ବରୀ, ତା'ର ଗୋଟିଏ ବୋଲି ପୁଅ । ତା'ର ବି ସମ୍ପତ୍ତି ବାଡ଼ିରେ କିଛି ଊଣା ନଥିଲା । ଉଆସ ପରି ଘର । ତାକୁ ପୁଣି କିଏ ମାରି ବାଡ଼ି ଖଳାରେ, କୁଟାଗଦା ତଳେ ଭର୍ତ୍ତି କରିଦେଲା ।

ଏତିକି କହି କିଛି ସମୟ ନୀରବ ରହିଗଲେ । ଶ୍ୱେତାମ୍ବରୀ, ସତେ ଯେମିତି କୋଉ ଅଜଣା ରାଇଜକୁ, ମନଟି ତାଙ୍କର ଉଡ଼ି ଯାଇଛି । ଏଇଠି କେବଳ ଶରୀରଟା ଅଛି । କ'ଣ କହିବେ ନକହିବେ ଦ୍ୱନ୍ଦରେ । ମୁଁ ପଚାରିଲି କ'ଣ ହେଲା । ସତେ ଯେମିତି ତାଙ୍କର ସ୍ୱପ୍ନ ଭାଙ୍ଗିଗଲା । ମୋତେ କହିଲେ ନାହିଁ କିଛି ନାହିଁ ଯେ ମୁଁ କିନ୍ତୁ ତାଙ୍କର ଅବସ୍ଥାକୁ ସମ୍ଭାଳି ନେଇ କଥା ଆରମ୍ଭ କଲି କହିଲି ତୁମର ପରା ଗୋଟିଏ ପୁଅ ହୋଇଥିଲା । ତା'ପରେ ତାଙ୍କର କ'ଣ ହେଲା କେଜାଣି ? ଆଉ କଥାର ଝରଣା ସତେ ଯେମିତି ବଣ ପାହାଡ଼ ନମାନି, ବହି ଚାଲିଲା । ସ୍ୱଭାବ-ସୁଲଭ ମନ୍ଥର ଗତିରେ ସେ କହିଲେ ତୁମେ ତାହାଲେ ମୋ ପୁଅକୁ ଜାଣିଛ ?

ପୁଅ ହୋଇ ନଥିଲା, ପୁଅ କରିଥିଲି । ମୋ ଭିଣେଇ ଗୋବିନ୍ଦ ପ୍ରହରାଜଙ୍କୁ ନିଶ୍ଚେ ଜାଣିଥିବ ? ବହୁତ ଜ୍ଞାନୀ, ମାନୀ, ବଡ଼ ଓକିଲ ଥିଲେ । ତାଙ୍କର "ଭାଷା ଭଣ୍ଡାର" ବହି ଛପା ହୋଇଛି । ଯାହାକୁ ଲେଖି ଛପେଇବାରେ ତାଙ୍କ ଜୀବନରୁ ବାରଣା ଆଉ ମୋର ସମ୍ପତ୍ତିରୁ ଷୋଳଣା ସରିଯାଇଛି । ସେଇ ମୋ ଭିଣେଇ ମୋ ଜୀବନର ଦୁଷ୍ଟ ଗ୍ରହ । ଅବଶ୍ୟ ସେ ଥିଲେ ବି ମୋର କ'ଣ ହୋଇଥାନ୍ତା କହିପାରିବିନି । ମୋର ପିଲା ପିଲି ତ ନଥିଲେ । ବାଲ୍ୟ ନହେଲେ ବି, ଷୋଳବୟସୀ ବିଧବା । ମୋ ପିଲାଦିନେ ମୋ ନାନୀ ମତେ ଚିଡ଼ାଏ, କହେ ବଡ଼ ତ ଷଣ୍ଢ । ସେ ମହାଦେବଙ୍କର, ସେ ହେଲା ବାପର । ସାନତ ଗାଈ, ସେ ସହଦେବଙ୍କର ସେ ହେଲା ବୋଉର । ଆଉ ମଝିଆ ବଳଦ ବାପୁଡ଼ି, ସେ କାହାର ନୁହେଁ । ସତେ ମୋ' ଜୀବନ ସାରା କାହାର ହେଲିନି ।

ତେବେ ଚାରି ଚାରିଟା ନଣନ୍ଦ, ଦେବୀ ପ୍ରତିମା ପରି ଶାଶୁ । ଅଚଳାଚଳ ସମ୍ପତ୍ତି ତ ଥିଲା । ଭିଣେଇ ଯାହା କହିଲେ ମୁଁ ସେଇଆ କଲି । ଶାଶୁ ଭାବିଲେ ଏଡ଼େ ମାନୀ, ଜ୍ଞାନୀ ଭିଣେଇ, ନିଶ୍ଚୟ ମୋର ସବୁ ସୁବିଧା କରିଦେବ । ତାଙ୍କ ଲାଗି ମୋର କୁଳ ଥଳ ରକ୍ଷା ହୋଇଯିବ । ସେଇଥିପାଇଁ ସେ ଶାଶୁ ମୋର କୌଣସି କଥାରେ ବାଧା ଦେଇନଥିଲେ ।

କିନ୍ତୁ ଯେତେବେଳେ ଜାଣିଲେ, ସମ୍ପତ୍ତି ସହିତ ମୋର ମାନ ଇଜ୍ଜତ ସବୁ ଶେଷ ହୋଇଯାଇଛି । ନିଜ ରକ୍ତ ସାନ ନଣନ୍ଦ ଠାରୁ ପୁଅ ନକରି, ଅପର ଲୋକଠାରୁ ପୁଅ କରୁଛି, ସେତେବେଳେ ସେ ପାଗଳ ପରି ହୋଇଗଲେ । ଦିନରାତି ଭିଣେଇର କୁଳ ବୁଡ଼େଇଲେ । ଆଉ ମତେ ଅଭିଶାପ ଦେଲେ । ଯାହାକୁ ଦେଖିଲେ ବଂଶ ଖାଇ, ଥାନ ଉଠେଇ ଦେଇ, ହାଡ଼ି ପଠାଣରେ ଗଲାବୋଲି । ସବୁରି ଆଗରେ ମତେ ଅଭିସମ୍ପାତ କଲେ । ମୋ କୂଳରେ କିଏ ଦୀପ ଦେବାକୁ ରହିଲାନି ବୋଲି, ଘରଛାଡ଼ି କୁଆଡ଼େ ଗଲେନି । ଘରତ ଭାଙ୍ଗି ରୁଜି ପଦା ହୋଇଗଲା । ବାଡ଼ିପଟ ଚାଳ ସାହାଳାରେ ଦିନେ ସନ୍ଧ୍ୟା ବଳିତା ବସେଇ ଦେଇ, ହାଣ୍ଡିଶାଳେ କ'ଣ କରୁଥିଲେ । କେମିତି ଅଳ୍ପ ଗୁଣିରୁ ଗାମୁଛାଟେ ଓହଳି ପବନରେ ଉଡ଼ି, ନିଆଁ ଲାଗିଯାଇ ଘରଦ୍ୱାର ଭସ୍ମ କରିଦେଲା । ବୁଢ଼ି ବି ଅଧାଅଧି ପୋଡ଼ି ଯାଇଥିଲେ, କେତେଦିନ ପଡ଼ିଲେ ଜ୍ଞାନ ଥିଲା । ମୁଁ ଦେଖିବାକୁ ଯାଇଥିଲି ମତେ ଦେଖି ସେହି ଅବସ୍ଥାରେ ଆଖିରୁ ଲୁହ ଗଡ଼ାଇ ମୁହଁ ବୁଲାଇ ଦେଲେ ସେ ଅଭିଶାପ ମୁଁ ନଭୋଗି କିଏ ଭୋଗିବ, କହିଲ ଝିଅ ? ଶ୍ୱେତାମ୍ବରୀଙ୍କ ଆଖି ଛଳ ଛଳ ହୋଇ ଲୁହ ବି ଗଡ଼ି ପଡ଼ିଲା ।

ମୁଁ କଥାକୁ ବୁଲେଇ ନେଲି । କହିଲି ମାଉସୀ, ତୁମ ପୁଅ ଏଇଲେ କେମିତି ଅଛି ? ସେ କହିଲେ ସେ ଆଉ ମୋ' ପୁଅ କଅଣ ? ସେ ତା ଭାଇର ସାନ ଭାଇ ହୋଇ ଗଲାଣି । ଏଇଲେ ଅନ୍ନପୂର୍ଣ୍ଣା ଥିଏଟର ଦଳରେ ବୋଧେ ଅଛି । ସେଇଥିରୁ ଗୋଟିଏ କାହାକୁ ବିଭା ହୋଇଛି । ତା'ର ତିନିଟା ପୁଅ ଝିଅ ହେଲେଣି । କିନ୍ତୁ ମୋର ତାର ଆଉ ସମ୍ପର୍କ ନାହିଁ । କାରଣ ମହୁ ଭରାରୁ ସବୁ ମହୁ ପିଇ ମହୁମାଛିମାନେ ଉଡ଼ି ଗଲେଣି । ମୋର କେବଳ ମହୁଫେଣାର ମହଣରେ ଗୋଡ଼ ଲାଖି ଯାଇଛି କହି, ପୁଣି ସେ ଛାଡ଼ି ଯାଇଥିବା କଥାର ଦୁଆ ଧରିଲେ । ସତେ ଯେମିତି ଅଡୁଆ ହୋଇ ଯାଇଥିବା ଲଟେଇର ଖିଅଟିକୁ ଖୋଜୁ ଖୋଜୁ ହାତରେ ଧରା ପଡ଼ିଗଲା ।

ସେ କହିଲେ ହଁ କ'ଣ କହୁଥିଲିଟି ? ଶାଶୁ ଗଲାପରେ ମୋ ଭିଣେଇ ଭାରି ଯାକ ଯମକରେ ବଡ଼ ଦେଉଳରେ, ମୁକ୍ତି ମଣ୍ଡପ ବ୍ରାହ୍ମଣମାନଙ୍କୁ ଦାନ ଦକ୍ଷୀଣା ସହିତ, ଭୁରି ଭୋଜନ କରେଇଥିଲେ । ଲୋକ ତ ଘରର ପଥର ପର୍ଯ୍ୟନ୍ତ ଖୋଳି ବୋହି ନେଇଥିଲେ । ତଳ ସାହାଳା ପୋଡ଼ି ଭସ୍ମ ହୋଇଗଲା । ଶାଶୁ ଗଲାପରେ ଥାନ ତ ଉଠି ଯାଇଥିଲା । କୁଳର ମିଞ୍ଜି ମିଞ୍ଜି ଦୀପଟି ବି ଲିଭିଗଲା । ମୁଁ ଆଉ ମତେ ସେ କୁଳର ବୋଲି ଭାବେନି ।

ବାପ ଘରେ ତ ପ୍ରାୟ ରହୁଥିଲି । ସେଠି ବି କ'ଣ ଧନ ସମ୍ପତ୍ତି କମ୍ ଥିଲା ? ବଡ଼ ଭଉଣୀ ତ ଆଉ ଏପଟକୁ କେବେ ଆସେନି । ସାନ ତ ମଲା । ମୋ ଡ଼େରା ଆସ୍ତେ ଆସ୍ତେ ଗାଁ ଛାଡ଼ି କଟକ ଆଡ଼େ ମୁହେଁଇଲା । ବାପ ଘରେ କାଛରେ ଖୋପ ହୋଇ ଲୁହା ଟ୍ରେଜେରୀ ଖଞ୍ଜା ହୋଇଥିଲା । ଛାତ ବରଗା ମଝିରେ ସୁନାଇଟା କେତେ ଖଣ୍ଡ ପଲସ୍ତରା

ଭିତରେ ଥିଲା । ଭିଣେଇ ମୋ ସହିତ ସେ ସବୁକୁ କଟକ ହସ୍ତାନ୍ତର କରାଇ ନେଲେ । ଯାହାଠଉଁ ପୁଅ କରାଇ ଦେଇଥିଲେ । ସେହି ପୁଅର ବଡ଼ ଭାଗ ଉପରେ ଲକ୍ଷ୍ମୀଛଡ଼ା ଘର ବାଡ଼ିର ଦାୟିତ୍ୱ ଦେଇଥିଲେ । ତା'ରି ତତ୍ତ୍ୱାବଧାନରେ ଧାନ ଜମି, ଘରବାଡ଼ି ନଡ଼ିଆ ବଗିଚା ବିକ୍ରୀ ହେବାରେ ଲାଗିଲା । କିଏ ତାର ସ୍ୱନାମିତ କିଏ ବେନାମି । ଯାହା ହଉ ସବୁ କଟକରେ ଏକାଠି ଠୁଳ ହେଲା, ଭିଣେଇଙ୍କ ପୈତୃକ ଘରେ । ଯେଉଁ ଗଳି ନାଁ ଏଇଲେ ଭାଷଭଣ୍ଡାର ଗଳି । ଯାହାହେଉ (ସବୁ ଶୀର ଯାକ ତ ବେକରେ ଲୋଚା) ସେମିତି ସବୁ ସମ୍ପତ୍ତିର ସମଷ୍ଟି ପୁଣି ଭିଣେଇଙ୍କ ରୋଜଗାର ବୋଲି ଭାବିଲି । ଏଇଠି ମୋର ଭାଗ୍ୟର ପରିବର୍ତ୍ତନ ହୋଇଗଲା । ବାପଘର, ଶାଶୁଘର, ସବୁ ସମ୍ପତ୍ତି ତୁଳନାରେ, ଏଇଘର ଖଣ୍ଡି ବଡ଼ ମୂଲ୍ୟବାନ୍ ଲାଗିଲା ମୋତେ ।

ଯେ କେହି ସେ ଘରର ମାଲିକାଣୀ ହେଲେ, ନିଶ୍ଚୟ ତା' ମନରେ ଗର୍ବ ହେବ । ବଡ଼ ଦୋ ତାଲା ଘର । ଦାଣ୍ଡରେ ଫୁଲ ବଗିଚା, ମଝିରେ ଗେଟ୍‌ଠାରୁ ଦାଣ୍ଡପିଣ୍ଡା ଯାଏ ନାଲି ରାସ୍ତା । ବାଡ଼ିପଟେ ଫଳ ବଗିଚା ଦାଣ୍ଡ ବଗିଚାରେ ଚଉବଛା, ପଦ୍ମଫୁଲ କଇଁଫୁଲମାନ ଫୁଟି ମାଛମାନେ ପହଁରୁଥାଆନ୍ତି । ଘରେ ନାଲି ନେଳି ବିଲାତି ମାଛର ବାକ୍ସ ବିଲାତି କୁକୁର । ପୂଜାରୀ, ଚାକର, ଦରଓ୍ୱାନ ଆଉ ତୁମରି ଗାଇ ପରି, ଏଇମିତି ବଡ଼ ବଡ଼ ଗାଈମାନ । ଦୁଧ, ଦହି, ଛେନା, ଘିଅରେ ଘର ଭାସୁଥାଏ ।

ଓଡ଼ିଶାର ଯେତେବଡ଼ ବଡ଼ ଲୋକମାନେ ଭିଣେଇଙ୍କର ଜଣାଶୁଣା, ସମସ୍ତେ ଆସି ଆମରି ଘରେ ରହନ୍ତି । ମୁଁ ସବୁରି କଥା ବୁଝିବାରେ, ଖାଇବା, ପିଇବା, ଯତ୍ନ କରିବାରେ, ଯେତିକି ଆନନ୍ଦ ପାଏ । ତା'ଠାରୁ ଅଧିକ ମନରେ ଗର୍ବ ହୁଏ । ସେତେବେଳେ ଦେଶ ସ୍ୱାଧୀନ ହୋଇନଥାଏ । ସବୁବେଳେ ନେତା ମାନେ ଆସି ଘରେ ରହି, ରାଜନୀତି ଚର୍ଚ୍ଚା ହୁଏ । ମହକିଲମାନଙ୍କ ପାଇଁ ବାଡ଼ିପଟେ ଅଲଗା ଘର, ତା ପାଖେ ଡ୍ରାଇଭରର ରହିବା ଘର । କ'ଣ କହିବି ମା' ଏଇ ମଣିଷ ଦିନେ ଏ ପରି ଐଶ୍ୱର୍ଯ୍ୟର ଅଧିକାରୀଣୀ ଥିଲି ବୋଲି ମୁଁ ତ ନିଜକୁ ଭାବି ପାରୁନି । ମତେ ଦେଖିଲେ କିଏ ବା ଜାଣିବ ?

ସେତେବେଳେ ମୁଁ ପିନ୍ଧେ, ନ ପିନ୍ଧେ, ସୁନା ଗହଣାରୁ ତୋକେଇଏ ହେବ ମୋର ଥିଲା । ଏକା ସୁନା ମୁଦିରୁ ମାଣେ ହେବ । ପେଖାରାଜଠାରୁ ଆରମ୍ଭ କରି, କେଉଁ ଗ୍ରହକୁ କେଉଁ ପଥର କାଟିବ । କୋଉ ମୋତି ହୃଦୟରେ ରହିଲେ, ଶରୀରକୁ ଭଲ ହେବ । ଜଲଲୀଲାଟା ତ ସବୁଥିକି ଶୁଭ । ଏଇ ସବୁଥିରେ ମୋ ଭିଣେଇଙ୍କର ଭାରି ବିଶ୍ୱାସ । ଖାଲି କ'ଣ ପଥର ? ଜ୍ୟୋତିଷ ଆଉ ମନ୍ତ୍ର ତନ୍ତ୍ରରେ କ'ଣ କମ୍ ଟଙ୍କା ଖର୍ଚ୍ଚ କରନ୍ତି ? ସବୁ ଦିନ ଜାଣ କିଛି କିଛି ସୁନା, ରୂପା ଗଢ଼ା ହେଉଥିବ । ପୁଅର ଚନ୍ଦ୍ର ମହାଦଶା ବୋଲି, ସେ ରୂପା ଚେନ୍‌ରେ ଗଜ ମୋତି ପିନ୍ଧିବା ପୁଣି ତା'ପାଇଁ ହୋମ, ଗ୍ରହ ପୂଜା ଏମିତି ଚାଲିଥାଏ । ଏମିତି ଐଶ୍ୱର୍ଯ୍ୟର କଥା ଗାଇଲାବେଳେ, ତାଙ୍କ ଅନ୍ତର ଭିତରୁ ମୁଁ, ଶୁଣି

ପାରୁଥିଲି ତା'ର କରୁଣ ରାଗିଣୀ । ତା' ଚାରିପଟେ ଘେରି ରହିଥିବା ସୌଭାଗ୍ୟର ବଳୟ ଭିତରେ ଥାଇ ସୁଦ୍ଧା, ସେତେବେଳେ ସେ ସୌଭାଗ୍ୟବତୀ ନଥିଲା ବୋଲି, ସୁଚାଇ ଦେଉଥିଲା । ତା'ର ସେଇ ବିଳପିତ ଭାଷା, ପ୍ରତ୍ୟେକ ଶବ୍ଦ ଭିତରେ ଲୁଚି ରହିଥିଲା । ଖଣ୍ଡ ଖଣ୍ଡ ଭସା ବାଦଲ ବେଳେ ବେଳେ ଆଖିକୁ ବତୁରାଇ ଦେଉନଥିଲା । ଏପରି ନୁହେଁ ।

ସେମିତି ସାମାନ୍ୟ ଦରଭିଜା ଗଳାରେ କହି ଚାଲିଲେ, ଏଇ ଗହଣା କାରବାର ପାଇଁ, ଗୋଟିଏ ବଣିଆ ପରିବାର ସହିତ ଆମେ ସୂର୍ଯ୍ୟବନ୍ଧୁ ହୋଇ ଯାଇଥିଲୁ । ତାଙ୍କ ବଡ଼ ପୁଅ ଆମକୁ ଏତେ ସାହାଯ୍ୟ କରୁଥିଲା ଯେ, ନିଜ ପୁଅଠାରୁ ବଳି ଯାଇଥିଲା । ପ୍ରହରାଜଙ୍କର ସେତ ଗଣ୍ଡିଧନ । ଯେମିତି ତାଙ୍କ ପକେଇବା ଛେପକୁ ହାତ ପତେଇ ଥାଏ ସିଏ । ନାଁ ତ'ର ଇନ୍ଦ୍ର, ତାଙ୍କ ପାଟିରୁ କଥା ବାହାରିଲା ମାତ୍ରେ କେତେ ଜ୍ୟୋତିଷ ସାଧୁ, ସାଧକ, କାଳେସୀ କେତେ ଯେ କୁଆଡୁ ଡ଼ାକିଆଣେ ତାର ଠିକଣା ନଥାଏ । ସେ ଅବିବାହିତ ନିଜେ, ଗେରୁଆ ପିନ୍ଧେ । ମାଛ ମାଂସ ଖାଏ, ହେଲେ ବହୁତ ସାଧୁ ସନ୍ୟାସୀ ସଙ୍ଗେ ତାର ପରିଚୟ ହିମାଳୟଠାରୁ କୁମାରୀକା ଯାଏଁ ଯେମିତି ତାର ଚରାଭୂଇଁ ।

ଆଉ ପ୍ରହରାଜେ ତା' କଥା ତଳେ ପକାନ୍ତିନି । ଗୋଟେ ତାନ୍ତ୍ରିକ କ'ଣ ମନ୍ଦ ଗ୍ରହ ଦେଖି କହିଲାରୁ, ସେ କଟକ ଘର ବି ମୋ ନାଁରେ କରିଦେଲେ । ସେଇ ଇନ୍ଦ୍ର ବଣିଆ କଥାରେ ଏଇ ବୁଢ଼ା ମୁଠା ମୁଠା ଟଙ୍କା ଅଜାଡ଼ି ଦେଇ ଯାଆନ୍ତି । ସେତିକି ବେଳକୁ ମୋର ଏଇପେଟମରା ବୋଧେ ଆରମ୍ଭ ହେଲା । ଆଉ ମୋ ଭିଣେଇଙ୍କ ମୁଣ୍ଡରେ ତାନ୍ତ୍ରୀକ ପୁରାଇ ଦେଲା ଯେ, ମୋ ନାନୀ ଓ ତା' ଚାକର ମିଶି ମତେ ବାଣ ବସଉଛନ୍ତି । ସେଇ ଦିନୁ ଜାଣ ଭିଣେଇଙ୍କ ମୁଣ୍ଡ ବାଇଆ ହେଲା । କେତେ ଯେ କାଳୀ ସାଧକ, ତାନ୍ତ୍ରୀକ, କୋଉଠି କୋଉ କାଳେସୀ, ଇନ୍ଦ୍ର ସବୁରି ପାଖକୁ ଦଉଡ଼ି ଦଉଡ଼ି ତା' ଗୋଡ଼ରୁ ଚାନ୍ଦି ଫିଟିଗଲା । ଜଣେ ବେତାଳ ସାଧକ ଆମ ଘରେ ପୂଜା ବସାଇଲା । ସାତଦିନ ଯାଇନି, ନାନୀକି କିଏ ମାରି ତା' ଖଳାବାଡ଼ି ପାଳଗଦା ତଳେ ଭର୍ତ୍ତି କରିଦେଲା ।

ଯେଉଁ ଚାକର ନାଁରେ ନାନୀକୁ ଲଗେଇ ଭିଣେଇ ନାନୀକୁ ବାରକଥା କହୁଥିଲେ, କିଏ କିଏ କହିଲେ ସେଇ ଚାକରକୁ ହାତ କରି, ପଇସାପତ୍ର ଦେଇ ନାନୀକି ଭିଣେଇ ମରେଇଦେଲା । ସେତେବେଳେ ନାନୀର ପୁଅ, ଘରେ ନଥିଲା । ସେ ତା' ଚାକିରୀ ଯାଗାରୁ ଆସି, ଯେତେ ଘଣ୍ଟା ଚକଟା କଲା, ହେଲେ ଭିଣେଇ ସେଥିରେ କର୍ଣ୍ଣପାତ କଲେନି । କି ପୁଅ ଯେତେ ଆସିବ ବୋଲି ଖବର ଦେଲା, ତାକୁ ସିଧା ସଳଖ ନାହିଁ କରିଦେଲେ । କହିଲେ ତୋଠେଇଁ ମୋର କିଛି କାମ ନାହିଁ । ଯେତେ ହେଲେ ସେ ତ ପୁଅ । ସେ ବଳେଇ ହୋଇ ଆସି କଟକ କୋଠାରେ ପଶିବ । ଏକଥା ଇନ୍ଦ୍ରଜିତ ବି ଜମା ପସନ୍ଦ କଲାନି । କହିଲା ଥରେ ଯଦି ସେ ଆସି ବାପ ମନ ବଦଳେଇ ଦେବ, ତା'ହେଲେ ସବୁ ଛାରଖାର ହୋଇଯିବ ।

''ଆମ ଜଗନ୍ନାଥ ଅବସ୍ଥା ସାଂଘାତିକ ହୋଇଯିବ'' । ସବୁ ହେଲା ସିନା, ମୋର କାହିଁକି ଏଇ ନାନୀ ମଲାପରେ ମନଟା ସବୁବେଳେ ପାପ ଛୁଇଁଥାଏ । ହାତରେ ନମାରିଲେ ଭାତରେ ମାରିଲା ପରି, ବେତାଳ ସାଧକର ତନ୍ତ୍ର ମନ୍ତ୍ରର ଗୁଣ କ'ଣ କମ୍ ? ଏତିକି କହି ଶ୍ୱେତାମ୍ବରୀ ନିଜର ସ୍ୱରଟାକୁ ଆଉ ଟିକିଏ ନରମ କରି ମୋ ଆଡ଼କୁ ଟିକିଏ ଝୁଙ୍କିପଡ଼ି ଆସ୍ତେ କରି କହିଲେ, କେଜାଣି କାହିଁକି ତୁମ ଆଗେ ସବୁ କଥା କହିଦେଉଛି । ତୁମକୁ ମୋ' ରାଣ ଏକଥା ଆଉ କାହାକୁ କହିବନି । ତୁମ ସ୍ୱାମୀକି ବି ନୁହେଁ । ଭିଣେଇ ମରି ସ୍ୱର୍ଗପୁର ଗଲେଣି । ସେଇ ଭଉଣୀ ମରିବାରେ ଯେ, ଭିଣେଇଙ୍କର ଆଉ ଇନ୍ଦ୍ରର ହାତ ନଥିଲା ବୋଲି କାହିଁକି ମୋର ବିଶ୍ୱାସ ହୁଏନି । ସେ ଭିଣେଇଟି ଆମ ବାପ ଘରର ଧୂମକେତୁ । ଏଇ ନାନୀ ମଲା ଆଗରୁ କେତେ ପୂଜା ମନ୍ତ୍ର ତନ୍ତ୍ର ହେଉଥିଲା । ତାନ୍ତ୍ରିକ ସଙ୍ଗେ ଚୁପ୍‌ଚାପ୍ କଥାବାର୍ତ୍ତା ମତେ କାହିଁକି ବେଳେବେଳେ ସନ୍ଦେହ ହେଉଥିଲା ।

ମଣିଷ ବୁଢ଼ା ହେଲେ ଯେମିତି ପ୍ରକୃତି ଛାଡ଼େନି । ସେ ଶେଷ ବେଳକୁ ମୋ ଉପରେ, ପୁଅ ଉପରେ ଭାରି ଅସନ୍ତୋଷ ହେଉଥିଲେ । ଇନ୍ଦ୍ରଜିତକୁ ଯାହା ମୁଣ୍ଡେଇଥିଲେ, ତାକୁ ଦେଖିଲେ ତ ନାଆଁକୁ ନିଆଁ ହେଉଥାନ୍ତି । ମତେ କହିଲେ ଡାକୁ ଏକା ଥରକେ ଦୁଆର ମନା କରିଦେବୁ । ମୁଁ କହିଲି କିଆଁ (ଭିଆ ସରିଲେ କ'ଣ ବେଦୀ ମୁହଁ ପୋଡ଼ା)ଯିଏ ଆଜିଯାଏଁ ଘରର ସର୍ବେସର୍ବା ହେଲାଣି, ଇମିତି କିଛି ଘର କଥା ନାହିଁ ଯେ ସେ ଜାଣିନି । ଯିଏ ନ ହେଲେ ଘର ଦଣ୍ଡେ ଚଳିବନି । ପୁଣି ଧର୍ମ ପୁଅ ହୋଇ ତା' ଉପରେ ମମତା ଜମି ଗଲାଣି । ଏଇ ଅବସ୍ଥାରେ ଆଉ କ'ଣ ତାକୁ ଦୁଆର ମନା କରିହୁଏ । ମୁଁ କହେ ଯଦି ତାକୁ ମନା କରିବା କଥା ତୁମେ କୁହ । ମୁଁ କିମିତି କହିବି ? କିନ୍ତୁ ସେ ତାକୁ ଭରସି କରି କିଛି କହୁ ନଥାନ୍ତି । ମୁଁ କ'ଣ କରିବି କହିଲ ଝିଅ ?

ଥରେ ଅଧେ ବୋଧେ ଦୁହିଁଙ୍କର କଥା କଟାକଟି ହୋଇ ବଚସା ହୋଇଗଲା । ତଥାପି ସେ ଆସିବା ବନ୍ଦ୍ କଲାନି । କିନ୍ତୁ ଆସିବା କମେଇ ଦେଲା । ସେ ପୁଣି ଆମ ଘରକୁ ନିଜର କି, ଜଗୁକୁ ନିଜର ପୁଅଠୁ ଅଧିକ କରିଛି । ପ୍ରହରାଜଙ୍କୁ ବାପପରି ମାନେ । ବୟସ ଗଡ଼ି ଗଲାଣି ବିଭା ବି ହୋଇନି । ଏ ବୟସରେ ସେ କୁଆଡ଼େ ଯିବ କହିଲ ? ହେଲେ ଭାରି ମନ ମରା ହୋଇ ସବୁବେଳେ ବ୍ୟସ୍ତ ହେଉଥାଏ ।

ଦିନେ କ'ଣ ହୋଇଛି କି, ଭିଣେଇକି ଭାରି ଜର ହେଲା । ସେ'ତ ଜର ହେଲେ ଭାରି ଅଥେଇ ବିଥେଇ ହୁଅନ୍ତି । ସେଇ ଜରରେ ପୂଜାରୀକି କହିଲେ, ତୁ ଯା' ଇନ୍ଦ୍ରକୁ ଡାକି ଆଣିବୁ । ମୁଁ ଡାକିଛି ବୋଲି କହିବୁ । ହରିଆ ପୂଜାରୀ ଗଲା । ତାକୁ ଯେତେ ଡାକିଲା ସେ ଆଉ ଆସିଲାନି । ଏତ' ଭାରି ଏକ ଜିଦିଆ ଲୋକ । ସେ କି ଆଉ ଥୟ ହୁଅନ୍ତି । ପାଟିରୁ ଯାହା ବାହାରିବ ସେଇଆ ସାଙ୍ଗେ ସାଙ୍ଗେ ହେବ । ଏକା ଜିଦ୍‌କରି ଲୋକ ଉପରେ ଲୋକ ପଠାଇ, ତାକୁ ଡାକିଲେ । ସେ ବିଚରା ଆଉ କ'ଣ କରିବ ବାଧରେ ଚାରିଟା

ବେଳକୁ ଗୁଡ଼େ ଫଳମୂଳ ଧରି ଆସିଲା । ପାଖରେ ବସି ଗୋଡ଼ ହାତ ଆଉଁସିଲା । ତା ସାଙ୍ଗେ କେତେବେଳ କଥାବାର୍ତ୍ତା ହେଲେ କି ପୁଣି ତାକୁ କ'ଣ କହିଲେ କେଜାଣି, ସେ ଆସି ବାହାରେ ବାରଣ୍ଡା ଚୌକି ଉପରେ ହାଣ୍ଡିପରି ମୁହଁ କରି ବସିଲା ।

ପ୍ରହରାଜ ତ ସବୁଦିନ ଚାରିଟା ବେଳେ ଦୁଧ ପିଅନ୍ତି । ଇନ୍ଦ୍ର ଆଉ ମୁଁ ସେତେବେଳେ ଛେନା ଖାଉ । ଦହି, ଘିଅ, ଛେନା ସବୁ ଖାଇବକି ଇନ୍ଦ୍ର ପତରେ କିନ୍ତୁ ଦୁଧ ପଡ଼ିବନି । ଦୁଧ ଗିଲାସ ସବୁଦିନ ପୂଜାରୀ ଠାରୁ ଆଣି ଇନ୍ଦ୍ର ବାପ ପୁଅଙ୍କୁ ଦିଏ । ପୁଅ ଖେଳିବାକୁ ଯାଏ । ଇଏତ ସେତେବେଳେ ଟିକିଏ ବିଶ୍ରାମ କରନ୍ତି । ସେଦିନ କ'ଣ ହୋଇଛି, ମତେ ଇନ୍ଦ୍ର କହିଲା, ତୁମେ ବାପାଙ୍କ ପାଖେ ବସିଥାଅ । ମୁଁ ଦୁଧ ନେଇ ଯାଉଛି । ସେ ଦୁଧ ଗିଲାସଟି ନେଇ ଆସିଲା ବେଳକୁ ଜଗୁ ଖେଳିବାକୁ ବାହାରିଛି । ଇନ୍ଦ୍ରଙ୍କୁ ଦେଖି କହିଲା, ବୋଉ ଗାଳିଦେବ ମତେ ଆଗ ଦୁଧ ଦେଇଦିଅ, ମୁଁ ପିଇଦେଇ ଖେଳିବାକୁ ଯିବି । ଇନ୍ଦ୍ର କହିଲା ନାଇଁରେ ଏଇଟା ବଡ଼ ଗ୍ଲାସ୍, ତୁ ପିଇ ପାରିବୁନି । ତୁ ଯା' ଚଞ୍ଚଳ ଆସିବୁ ଭାରି । ଆସିଲେ ଦୁଧ ପିଇବୁ । ସେଇ ଦୁଧ ଗ୍ଲାସଟି ଆଣି ବାବୁଙ୍କ ପାଖେ ଟେବୁଲ୍ ଉପରେ ଥୋଇ ଦେଇ ବସିଛି । ମୁଁ ଗାଧୁଆ ଘରୁ ବାହାରି ଆସିଲା ବେଳକୁ ମତେ କହିଲା, ନାନୀ ବାବୁଙ୍କୁ ଦୁଧ ଦେଇ ଆସକି, ମୁଁ ବାହାରେ ବସିଛି ତୁମକୁ ଗୋଟେ ଜରୁରୀ କଥା କହିବି । ମୁଁ ତାଙ୍କୁ ଦୁଧ ପେଇ ଦେଇ, ଗିଲାସ ଟେବୁଲ ଉପରେ ଥୋଇଦେଇ, ପିଣ୍ଡାକୁ ଆସି ଦେଖିଲାବେଳକୁ ଇନ୍ଦ୍ର ଗଲାଣି ଭାରି । ଜଗୁ ବି ନାହିଁ । ଦୁହେଁ ନଖାଇ ଗଲାରୁ ମୁଁ ହରିଆକୁ ଡାକି କହିଲି- ଦେଖିଲୁ ଦୁହେଁ କୁଆଡ଼େ ଗଲେ ।

ଠିକ୍ ସେତିକି ବେଳକୁ ଭିଣେଇ ଜୋର୍‌ରେ ବାନ୍ତି କରି ଚିତ୍କାର କରି ଉଠିଲେ । ମୁଁ ଦଉଡ଼ି ଯାଇ ଦେଖିଲା ବେଳକୁ ସେ ସରମିଶା ଦୁଧ ଗିଲାସକ ଯେମିତି ବାଲ୍‌ଟିଏ ହୋଇ ଘର ଭାସୁଛି । ଆଉ ସେ ତା'ଉପରେ ମୁହଁ ମାଡ଼ି ପଡ଼ିଛନ୍ତି । ମୋ ଦେହ ଗୋଟାପଣେ ଥରିଲା । ମୁଁ ବିକଳରେ ପାଟିକରି ରଘୁକୁ ଡାକ ପକେଇଲି । ସେ ମୋ ସାଙ୍ଗରେ ମିଶି ବାବୁଙ୍କୁ ଟେକି, ଗୋଟିଏ ମଶିଣାରେ ଶୁଆଇ ଦେଲୁ । ମୁଁ ଓଦା ଗାମୁଛାରେ ମୁହଁ ପୋଛି ପୋଛି କରୁ କରୁ ରଘୁ ଦଉଡ଼ିଯାଇ ଆମ ସାଇର ମିଶ୍ରବାବୁ ଡାକ୍ତରଙ୍କୁ ଡାକି ଆଣିଲା । ମୋ ପାଟିରେ ବି କେତେ ଲୋକ ଆସି ଜମି ଯାଇଥିଲେ । ଡାକ୍ତର ବାବୁଙ୍କ କଥା ଅନୁସାରେ ତାଙ୍କୁ ଟେକି ଟାକି ପଲଙ୍କରେ ଶୁଆଇଦେଲୁ । ଡାକ୍ତର ବାବୁ କ'ଣ ଦେଖିଲେ କେଜାଣି ? ଆଉ ବଡ଼ ଡାକ୍ତରଙ୍କୁ ଡାକି ଆଣୁଛି କହି, ନିଜେ ଗଲେଭାରି । ବଡ଼ ଡାକ୍ତର ଆସି ପହଞ୍ଚିବା ଆଗରୁ ଏଣେ ପୋଲିସ୍ ଆସି ଘରେ ପହଞ୍ଚି ଗଲେଣି ।

ମୁଁ ଭାବିଲି ଭିଣେଇ ବୋଧେ ଅଜ୍ଞାନ ହୋଇ ଯାଇଛନ୍ତି । କିନ୍ତୁ ବଡ଼ ଡାକ୍ତର ପରୀକ୍ଷା କରି କହିଲେ ଯେ, ସେ ଆଉ ନାହାନ୍ତି । ନାହାନ୍ତି ଶୁଣି, ମୋ ମୁଣ୍ଡରେ ବଜ୍ର ପଡ଼ିଲା, ହେଲେ ଆଉ କାନ୍ଦିବାକୁ ବେଳ ପାଇନି । ମା' ସେତେବେଳକୁ ପୋଲିସ୍ ବାଲା ବାନ୍ତି ଓ

ସେ ଟେବୁଲ୍ ଉପର ଦୁଧଗ୍ଲାସ ଜବତ କଲେଣି । ମତେ କ'ଣ ପଚରା ପଚରି କଲେ । ମୁଁ କ'ଣ କହିଲି, ମୁଁ କିଛି ଜାଣି ପାରିନି । ପୂଜାରୀ ଚାକରଙ୍କୁ ପଚାରି, ଇନ୍ଦ୍ରକୁ ପୋଲିସ ଡାକିବାକୁ ଗଲାବେଳକୁ ସେ ଆଉ ଘରେ ନାହିଁ ।

ପୁଅକୁ ପଚାରିଲାରୁ ପୁଅ କହିଲା ମୁଁ ଯେତେ ମାଗିଲି, ଇନ୍ଦ୍ରଭାଇ ମତେ ଦୁଧ ପିଇବାକୁ ଦେଇଦେ, ସେ ମତେ ନାହିଁ କଲା । କହିଲା ବୋଉ ନାହିଁ କରିଛି । ତୁ ଗୋଳମାଳ କରନା, ଖେଳିବାକୁ ଯା, ପଛରେ ଆସିଲେ ଦୁଧ ପିଇବୁ । ବେଶ୍ ଝିଅ ସେତିକିରେ ମୋ ଦଫା ରଫା ହୋଇଗଲା । ଭିଣେଇ ଗଲେ ପୋଷ୍ଟମଟମ୍ ପାଇଁ । ମତେ କନେଷ୍ଟବଳ ଜଗି ରହିଲା । ପୂଜାରୀ, ଚାକର, ପୁଅ କେହି ଘରୁ ବାହାରିଲୁନି ।

ସେଇ ସାହିରେ ଆଗରୁ ଭିଣେଇଙ୍କର ଜଣା ଶୁଣା ଜଣେ ବଡ଼ ଓକିଲ ଥିଲେ । ଆଗରୁ ବି ବହୁତ ଥର ଆମ ଘରକୁ ଆସନ୍ତି । ମୋର ତାଙ୍କର ପରିଚୟ ଥିଲା । ନିଜେ ଦୟାକରି ଆସି, ମତେ ବହୁତ ଶାନ୍ତ୍ୱନା ଦେଲେ । କହିଲେ ତୁମେ ଧର୍ଯ୍ୟଧର, ମୁଁ ଯେମିତି ହେଲେ ଏଇ ବିପଦରୁ ତୁମକୁ ମୁକ୍ତ କରିଦେବି । ସତକୁ ସତ ବହୁତ ସାହାଯ୍ୟ ହେଲେ । ହାତରୁ ପଇସାପତ୍ର ଖର୍ଚ୍ଚ କରି, ମତେ ଜାମିନି କରାଇଦେଲେ । ପୁଅତ ପିଲାଲୋକ, ମୁଁ ଆଉ ଇନ୍ଦ୍ର ପୁରା ଦୋଷୀ ହୋଇଗଲୁ । ଇନ୍ଦ୍ରତ କୁଆଡ଼େ ଫେରାର୍ ହୋଇଗଲା ଯେ, ଆଉ ତାର ପତ୍ତା ମିଳିଲାନି । ମୁଁ କିନ୍ତୁ ନିତି ଦିନ ଗଣୁଥାଏ । ରାତିରେ ଶୁଏନି କି, ଦିନରେ ଖାଏନି । କେଉଁଠୁ କେତେ ବିକଟାଳ ସ୍ୱପ୍ନ ଦେଖେ, ତା'ର ସୀମା ନାହିଁ । ଭଗବାନ ବଡ଼ ଲୋକ ମା' । ସେତେବେଳେ ଓକିଲ ଜଣକ ନଥିଲେ, ମୁଁ ଜେଲ୍‌ରେ କୋଉ କୁଣରେ ସଢୁଥାନ୍ତି । ନାହିଁତ ଆତ୍ମହତ୍ୟା କରିଥାନ୍ତି । ସେତେବେଳେ ସେ ଓକିଲଙ୍କୁ ମୁଁ ଦେବଦୂତ ବୋଲି ଭାବିଥିଲି । ଏତେ ବଡ଼ କେସ୍‌ରେ ମୋ'ପାଖରେ ଯାହା ଟଙ୍କା ସୁନା ଥିଲା, ବହୁତ ଚଞ୍ଚଳ ସେତିକି ସରିଗଲା । ପୁଣି ହାଇକୋର୍ଟରେ ହାରିଗଲି । ସେ ଓକିଲ ଛାଡ଼ିବା ଲୋକ ନୁହଁନ୍ତି, ମୋ'ପାଇଁ ସୁପ୍ରିମ କୋର୍ଟ ଗଲେ ।

ସେତେବେଳକୁ ମୋ ଅବସ୍ଥା ଠକ୍ ଠକ୍ ମଦନ ଗୋପାଳ । ମୋର ନିତି ଖର୍ଚ୍ଚକୁ ଆଉ ପଇସା କୁଳଉନି । ତଳ କୋର୍ଟରେ ପୂଜାରୀ ଚାକର ନିର୍ଦ୍ଦୋଶରେ ଖଲାସ ହୋଇଗଲେ । ସୁପ୍ରିମ୍ କୋର୍ଟର ସବୁ ଖର୍ଚ୍ଚ ସେଇ ଓକିଲ ବାବୁ କରିଥିଲେ । କେବଳ ମୋଠାରୁ ଘର ଖଣ୍ଡିକ କାହା ନାଁରେ ଲେଖେଇ ନେଇଥିଲେ । ମୁଁ କେବଳ ଫାଶି ଖୁଣ୍ଟ ଭୟରେ ସେ ଯାହା କହିଥିଲେ, ତାହା କରିଯାଇଥିଲି । ମୁଁ ସୁପ୍ରିମ୍ କୋର୍ଟରେ ଖଲାସ ହୋଇଗଲି, ଫାଶି ଖୁଣ୍ଟରୁ ମୁକୁଳିଗଲି । ଏବେ ବୁଝିପାରେନି ମୁଁ ଫାଶି ଖୁଣ୍ଟରୁ ମୁକୁଳି ଗଲି ନା ସାରା ଜୀବନ ଫାଶି ଦଉଡ଼ିରେ, ବେକ ଗଳାଇ ଘୋଷରା ହେଲି ? ମୁଁ ତା'ଆଗରୁ କଟକ ଛାଡ଼ି ସାରିଥିଲି । କଟକରୁ ଥାନ ଉଠେଇ ଆସିଲା ପରେ, ଆଉ କଟକ ଗଲିନି । ବାପଘରେ ରହିଲାବେଳକୁ ଯାହା କହନ୍ତି, ପେଟକୁ ଦାନା ଦେହକୁ କନାର ଅଭାବ

ହେଲାଣି । ମୋ ଅଲିଅଳି ପୁଅ ମତେ ଛାଡ଼ି ବେଶି ତା ଭାଇ ଭାଉଜଙ୍କ ଆଡ଼କୁ ଆଉଜିଗଲା । କଥାରେ ଅଛି "ନଈ ଶୁଖିଲେ କି କରେ ନାଆ, କ୍ଷୀର ଶୁଖିଲେ କି କରେ ମା ।" ମୁଁ ଆଉ ତାକୁ ମୋ ଆଡ଼କୁ ଟାଣିବାକୁ ଚେଷ୍ଟା କଲିନି, ସେ ଦୁଧ ଘିଅରେ ଭାସୁଥିଲା । ତାକୁ ବା ଶାଗ ପଖାଳ ଦେଇ ଅଟକାନ୍ତି କାହିଁକି ?

ତା'ଭାଇ ବି ଉଦ୍ଦେଶ୍ୟ ମୂଳକ ଭାବରେ ଭଲ ମନ୍ଦ ଖାଇବାକୁ ଦେଇ ରଖିଥିଲା । ଭାଇକି ପୋଷିବା ବାହାନାରେ ଘର ଅଧିକାର କରି ବସିଲା । ଗାଁ ମହାଜନ ବି ତାକୁ ସାହାଯ୍ୟ ହେଲେ । ମୁଁ କେବଳ ମୁଣ୍ଡ ଗୁଞ୍ଜି ଗୋଟିଏ ବଖରାରେ ଅଛି । ପୁଅକୁ ବହୁତ ବତାବତି କଲେ । ସେ ବି ମତେ ଦୁର୍ବ୍ୟବହାର ନ କରି ଛାଡ଼ିଲାନି । ମୁଁ କିଛି କିଛି ମାଗିଯାଚି କରି ଚଳୁଛି । କାମ ଦାମ କରିବାର ଅଭ୍ୟାସ ନାହିଁତ । ବହୁ କଷ୍ଟରେ ଅଛି । ମତେ କେତେଜଣ ତୁମ ବାବୁଙ୍କ ନାଁ କହିଲେ, ଏଇ ଓକିଲ ବାବୁ, ଯାହାହେଲେ ବ୍ୟବସ୍ଥା କରିଦେବେ । କାରଣ ପ୍ରହରାଜଙ୍କର ଯେଉଁ ଜ୍ଞାନ ଭଣ୍ଡାର ବହି ଛପା ଯାଇଥିଲା, ସେଥିରୁ ମୁଁ କିଛି ଟଙ୍କା ପାଇବି ବୋଲି ମୋ ଭିଣେଇ କୁଆଡ଼େ ଲେଖି ଯାଇଛନ୍ତି । ସେ କଥା କହିଲା ବେଳକୁ ତାଙ୍କ କଣ୍ଠସ୍ୱର କରୁଣରୁ କରୁଣତର ହୋଇ ଆସିଲା । ସେଇ ଓଦାଳିଆ ଆଖିର ଭାବ ସଂକ୍ରମିତ କରିଦେଲା ମୋ ମନକୁ । ମୁଁ ଆଖି ପୋଛିଲି । ସେ ବି ଆଖି ପୋଛି କହିଲେ, ସେଇ ବିଷୟରେ ବାବୁଙ୍କୁ ପଚାରିବାକୁ ଆସିଥିଲି ସେତିକି ଯଦି ନ ହେବ, ମୁଁ ଏଇଠି ବଡ଼ ଦାଣ୍ଡରେ ଭିକ ମାଗିବି । ତୁମେ ଟିକିଏ ଏତିକି ମୋ ପାଇଁ ଦୟା କର । ସେ ଟଙ୍କା ପାଇଲେ ମୁଁ ନିଶ୍ଚେ କିଛି ବ୍ୟବସ୍ଥା କରିବି ।

ସେତିକି ବେଳେ ଦାଣ୍ଡଘରେ କିଏ ଡାକିବାର ଶୁଣି ମୁଁ ଆସିଲି । ଜଣେ ପିଅନ କହିଦେଇ ଗଲା ଯେ ବାବୁ ଆଜି ଆସିବେନି । କାଲି ସକାଳେ ଆସି କଚେରୀ ଯିବେ । ମୁଁ ଭାରି ମନ ଦୁଃଖରେ ଫେରି ଆସି, ତାଙ୍କୁ କହିଲି କ'ଣ କରିବା, ବାବୁ ଆଜି ରାତିରେ ଫେରୁ ନାହାଁନ୍ତି ।

ସେ ବଡ଼ ବିଷଣ୍ଣ ମୁହଁରେ ମୋ ମୁହଁକୁ ଚାହିଁ କହିଲେ । ସତରେ, "ଅକର୍ମା ଲିଙ୍ଗ ଯୁଆଡ଼େ ଯାଏ ଗମ୍ଭୀରା ଲିଙ୍ଗ ଛାଡ଼ି ପଳାଏ ।" ମୋର ଗୋଟେ ବିଡ଼ମ୍ବିତ ଭାଗ୍ୟ । ଯାହା ମୋ ଭାଗ୍ୟରେ ଥିବ । ମୁଁ କହିଲି ଟିକିଏ ଚା' ଦେବିକି ? ସେ ଶୁଖିଲା ମୁହଁରେ ଟିକିଏ ହସି କହିଲେ, ଜୀବନରେ କେତେ କ'ଣ ଛାଡ଼ିଲି, ଏଇ ପେଟମରା ଲାଗି ଚା'ଟାକୁ ଛାଡ଼ିଦେବି ବୋଲି ଯେତେ ବିଚାରୁଛି, ମୁଁ ଛାଡ଼ି ପାରୁନି । କଳାଗୁଣ୍ଡ ଭିତରେ ଛଦ୍ମବେଶୀ ସେହି ଅମୃତକୁ କିଏ ସୃଷ୍ଟି କରିଥିଲା କେଜାଣି ।

ମୁଁ ଟିକିଏ ହସି କହିଲି ମୋର ଜଣେ ପିଇସୀ ଶାଶୁ କାର୍ତ୍ତିକ କରନ୍ତି । ଶ୍ୱେତଗଙ୍ଗାରୁ କାର୍ତ୍ତିକ ପାହାନ୍ତିବୁଡ଼ ପକାଇ ଆସିଲା ବେଳକୁ, ମୁଁ ତାଙ୍କୁ ଗୋଟେ ମହାର୍ଦ୍ଦ ଓଳିରେ ଓଳିଏ ଚା' ବଢ଼େଇ ଦିଏ । ସେ ଖୁବ୍ ଜୋରରେ ଗରମ ଗରମ ଚା'ରୁ ଢୋକେ ଶୋଷାଢ଼ି

ନେଇ କହନ୍ତି, ଧନ୍ୟଲୋ ସିଏ, ଯିଏ ଏଇ ମର୍ତ୍ତ୍ୟ ଅମୃତକୁ ଠାବ କରିଥିଲା । ତାର କୋଟି ପରମାୟୁ ହେଉ । ତା' ସାଙ୍ଗେ ତୋର କୁଳ ଉଜ୍ଜ୍ୱଳ ହେଉ । ସେତିକି ଦୁଃଖରେ ବି ସେ ହସି ପକାଇଥିଲେ ।

.ମୁଁ କପେ ଚା' ଦିଖଣ୍ଡ ବିସ୍କୁଟ୍ ଆଣି ଦେଲି । ନମସ୍କାର ଆଦାନ ପ୍ରଦାନ ପରେ ସେ ମୋଠାରୁ ବିଦାୟ ନେଇ ଯାଇଥିଲେ ।

ବାବୁ ଫେରିବା ପରେ ମୁଁ ପଚାରିଲି ଶ୍ୱେତାମ୍ବରୀଙ୍କ ବିଷୟରେ । ସେ କହିଲେ, ଇଏ ଗୋଟେ ବଡ଼ ଜଣାଶୁଣା ବିଷୟ । ହାଇକୋର୍ଟ ନଜିରରେ ରହିଯାଇଛି । ତାଙ୍କର ଆଉ କିଛି ମିଳିବାର ଥିଲେ କ'ଣ ଓକିଲ ମହାପାତ୍ର ବାବୁ ଛାଡ଼ି ଦେଇଥାନ୍ତେ ? ଶ୍ୱେତାମ୍ବରୀଙ୍କ ଜୀବନ ଗୋଟିଏ ନାଟକ । ସେ ସେଥିରେ କଳଙ୍କିତ ନାୟିକା । ସେ ଯେଉଁ ଶନ୍ଦ୍ର, ତାଙ୍କ ଦେହରେ ଅନେକ କଳଙ୍କ । ତାପରେ ଶ୍ୱେତାମ୍ବରୀ ଆଉ ମୋ ପାଖକୁ ଆସି ନଥିଲେ । ମୁଁ ସେଇ ନାଟକରେ ସେଇଠୁ କଳା ପରଦା ଟାଣି ଦେଇଥିଲି ।

ସତ୍ୟବାଦୀ ଅମୃତ ପୁରର ଇସୁଫ ମିଆଁ ଗୋଟିଏ ମାଛ ବେପାରୀ । ସେ ବାବୁଙ୍କର ପୁରୁଣା ମହକିଲ । ମାଛ ବେପାର ଲାଗି ବାବୁଙ୍କର ଭାରି ପ୍ରିୟ । ଗୋଟିଏ ମାଛ ପୋଖରୀ ଇଜାରା ନେବ ବୋଲି ବାବୁଙ୍କ ଠାରୁ କିଛି ଟଙ୍କା ଧାର ମାଗିଥିଲା । କହିଥିଲା ଯେ ସେଇ ପୋଖରୀରେ ବହୁତ ପୁରୁଣା ମାଛ ଅଛନ୍ତି । ତାଙ୍କ ଦେହରେ ରୁମ ଉଠିଗଲାଣି । ବହୁତ ଦିନର ପୁରୁଣା ପୋଖରୀତ, ବଧ ସଫା କରି ମାଛ ମାରିବାକୁ ଦି'ତିନି ମାସ ଲାଗିଯିବ ; ଯେତେଦିନ ମାଛମରା ହେଉଥିବ ମୁଁ ଆପଣଙ୍କୁ ପ୍ରତିଦିନ ତଟକା ମାଛ ଦେଉଥିବି । ପରେ ମାଛ ବିକ୍ରୀ ସରିଗଲେ, ଆପଣଙ୍କ ଟଙ୍କା ଶୁଝିଦେବି ।

ବାବୁତ ଆମର ଗୋଟିଏ ମାଛରଙ୍କା । ସେ ଏପରି ଗୋଟିଏ ପ୍ରଲୋଭନ ବା ଏଡ଼ିବେ କେମିତି, ମୁଁ ବାବୁଙ୍କ ଉପରେ ଭାରି ବିଗିଡ଼ିଲି କହିଲି, ମୋର ଧାରଣା ଓକିଲମାନେ ମହିକିଲଙ୍କଠୁ ବହୁତ ବୁଦ୍ଧିମାନ । ତାଙ୍କଠୁ ଟଙ୍କା ନେଇ ବୁଦ୍ଧି ବିକନ୍ତି । କିନ୍ତୁ ଆଜି ଓଲଟା ଦେଖୁଛି । ମହକିଲ ଓକିଲଙ୍କୁ ବୁଦ୍ଧିରେ ଗିଳି ସଫା କରିଦେବେ । ମୋ' ଅନିଚ୍ଛା ସତ୍ତ୍ୱେ ସେ ଲୋକଟିକୁ କିଛି ଟଙ୍କା ଦେଇ ସାରି ମତେ କହିଲେ, ପଠାଣ ହେଲେ ବି ଇସୁଫ୍‌ଟା ଭାରି ଭଲ ଲୋକ । କିନ୍ତୁ ଲୋକଟିର ଦୁର୍ଭାଗ୍ୟକି' ବାବୁଙ୍କ ଦୁର୍ଭାଗ୍ୟକୁ ବଧ ସଫା କଲାପରେ, କାତି ମାଛରତ ଦେଖା ନାହିଁ, ଏତେ ପଙ୍କ ଯେ ତଳି ମାଛ ଧରିବା ବି ସମ୍ଭବ ନଥିଲା । ବହୁ କଷ୍ଟରେ କେବେ କେମିତି ରଡା, ମାଗୁର, କଉପରି ପଙ୍କ ମାଛମାନଙ୍କୁ ଧରି ଇସୁଫ୍ ପ୍ରାୟ ପାଞ୍ଚ, ସାତ ଦିନରେ ଥରେ ଥରେ, ଗଣ୍ଡେ ଗଣ୍ଡେ, ଦେଇ ତା ଋଣ ଭାରକୁ ଲାଘବ କରିବାରେ ଲାଗିଥାଏ । ଯେତେବେଳେ ମାଛ ଧରା ବନ୍ଦ ହୋଇଗଲା, ତା' କାମ ପଡ଼ିଲେ ସେ କିଛି ଅଣ୍ଡା ଧରି ଆସେ । ଦିନେ ବାବୁ ଜାଣି ପାରିଲେ ଯେ ସେ ଅଣ୍ଡା କିଣି କରି ଆଣୁଛି । ମତେ କହିଲେ, ସେ ଯଦି ଅଣ୍ଡା କିଣିକରି ଆଣୁଥାଏ, ତାକୁ

ମନା କରିଦେବ । ଗରୀବ ଲୋକଟା, ନିଜେତ କିଛି ପାଉନାନି, ପୁଣି ପଇସା ଖର୍ଚ୍ଚ କରି କିଣି ଆଣିବା ମତେ ଭଲ ଲାଗୁନି ।

ବାସ୍ତବିକ୍ ସତ୍ ଲୋକଟିଏ । ସେଦିନ ଇସୁଫ୍ ତିନି ପୁଞ୍ଜା ଅଣ୍ଡା ଧରି ଆସିଥିଲା । ମୁଁ ତା' ମାଛ ବେପାର କ୍ଷତି ପାଇଁ ଦୁଃଖିତ ହେଲି । ତାକୁ ବସେଇ ଏଣୁ ତେଣୁ କଥାବାର୍ତ୍ତା ହୋଇ ପଚାରିଲି ତୋର କଣ ବେଶି କୁକୁଡ଼ା ଅଛନ୍ତି କି ? ଏତେ ଅଣ୍ଡା ଆଣୁଛୁ ? ସେ କହିଲା ନାଇଁ ମା'ମୋର ଦି ଚାରିଟା କୁକୁଡ଼ା ଅଛନ୍ତି । ସେଥିରୁ ତିନିଟା ଗଞ୍ଜା । ବଡ଼ ଦାଦା ହାରୁନ୍ ମିଆଁ ଏକୁଟିଆ ଲୋକ । ଏବେ ଆମବାତ ଧରିଛି । କିଏ ଧରିଲେ ଉଠ୍ ବସ ହେଉଛି । ଥରେ ବସିଗଲେ ଉଠି ପାରୁନି । ଟିକିଏ ପଇସାବାଲା ଲୋକ ତା'ର ବହୁତ କୁକୁଡ଼ା, ଆଉ ଛେଳି ଅଛନ୍ତି । ହେଲେ କେତେଦିନ ହେଲା ହଇରାଣ ହେଉଥିଲା ।

ଏବେ ମା' ତୁମେ ଜାଣିଥିବ ସେ ନୂଆ ଶାସନ ବୁଢ଼ୀ ଯେ ବଜାରରେ ବରା ଚା' ମାଗି ମାଗି ଖାଉଥିଲା । ସେଇ ବୁଢ଼ୀ ଆସି ବୁଢ଼ାକୁ ଦେଖା ଚାହାଁ କରୁଛି । ହେଲେ ବୁଢ଼ୀ ବି ଏଇଲେ ଅକମଣ୍ୟ କହିଲେ ଚଳେ । ତା'ନାକ ଦଣ୍ଡୀରେ ପ୍ରାଣ ଅଛି । ହେଲେ କୁକୁଡ଼ା ଗଣ୍ଡାଙ୍କୁ ଅଟକେଇ ଅଣ୍ଡାତକ ନିଇତି ସକାଳୁ ପିଣ୍ଡାରେ ଧରି ବସି ବିକୁଛି । ଯେ ସବୁଦିନ ତ ଆଉ ଦୁଆରୁ ସବୁ ବିକ୍ରି ହେବନି । ଯାହା ବଳେ ମତେ ଦିଏ । ମୁଁ ଆଣି ମାର୍କେଟରେ କିଛି ଦିଏ, ଆଉ କିଛି ଏଣେ ନେଇଆସେ । ମୋର କାହିଁକି ମନରେ ସନ୍ଦେହ ହେଲା । ମୁଁ ପଚାରିଲି ଇସୁଫ୍, ସେ ବୁଢ଼ୀର ନାଁ କ'ଣ କିରେ ? ସେ ଟିକିଏ ଭାବି କହିଲା ମା, ଶାତାଅରୀ କି କଅଣ । ମୋର ପୁଣି କିଛି ସ୍ମୃତି ଆପେ ଆପେ ଛଇସି ଉଠିଲା । କ୍ଷଣକ ମଧ୍ୟରେ ମୋ ମନର ନେଳି ପରଦାରେ, ଟିଭିର ଚଳଚିତ୍ର ପରି, ଗୋଟିକ ପରେ ଗୋଟିଏ ଦୃଶ୍ୟ ଧାଇଁବାକୁ ଲାଗିଲା । ଏଇ ତାର ଶେଷ ପରିଣତି ବୋଲି ଭାବିଲା ବେଳକୁ, ତା' ଶାଶୁର ଅଭିଶାପ ମୋର ମନେ ପଡ଼ିଲା (ହାଡ଼ି ପଠାଣରେ ଯିବୁ) । ସତେ ସେ ପଠାଣର ହାଡ଼ିଆଣୀ ପରି ସେବା କରି, ପଠାଣର ଅନ୍ନ ଜଳରେ ଅମୃତପୁରେ ଅଣ୍ଡା ବିକି ନିଜ ଜୀବନ ବଞ୍ଚାଇଲା । ଧନ୍ୟ ଆମ୍ଭ ହିନ୍ଦୁତ୍ୱ । ଆମର କେଉଁଠି ତାକୁ ଆଶ୍ରୟ ମିଳିଲାନି । ମୁଁ ଇସୁଫ୍‌କୁ ପଚାରିଲି, ତାର ପରା ପୁଅ ଥିଲା ସେ କୁଆଡ଼େ ଗଲା ? ଇସୁଫ୍ କହିଲା ଆଜ୍ଞା ତା ପୁଅ ଅନ୍ନପୂର୍ଣ୍ଣା ଥିଏଟରରେ ନାଚୁଥିଲା । ସେଇଥିରୁ ଗୋଟେ ନାଚୁଆଣୀ ବିଭାହେଲା । ତାର ଦି'ଟା ଝିଅ, ଗୋଟେ ପୁଅ ଥିଲା । ମଦ ଫଦ ଖାଇ ତାର କାମଳ ରୋଗ ହୋଇ ସେ ମଲା । ତା'ର ମାଇକିନାଟା କ୍ୟାନ୍‌ସର ରୋଗରେ ମରିଗଲା । ସାନ ଝିଅଟା ପଶୁ ଡାକ୍ତରଖାନା ହେଲପର ନବୀନ ହାଡ଼ି ସାଙ୍ଗେ କୁଆଡ଼େ ପଳେଇଗଲା । ପୁଅଟା ସେମିତି ବଜାରରେ ବୁଲୁଥିଲା । ବଡ଼ ଭଉଣୀ ସିଲେଇ କରି, ନଡ଼ିଆ ବିକି, ଭାଇକୁ ପୋଷୁଥିଲା । ତାର ଦିନେ କ'ଣ ହେଲା କେଜାଣି ଘର ଭିତରେ ଦୁଆର କିଳି ଦଉଡ଼ି ଲଗାଇଦେଲା ।

ଭାଇଟା ଦିନାକେତେ ଛିଣ୍ଡା ପ୍ୟାଣ୍ଟ ପିନ୍ଧି ପାଗଳା ପରି ବୁଲି ବୁଲି କୁଆଡ଼େ ପଳେଇ ଗଲା କି ମଲା ତା'ର ପତ୍ତା ନାହିଁ । ଏ ବୁଢ଼ି ଏବେ ସବୁବେଳେ ଗୁଣୁ ଗୁଣୁ ହୋଇ ପୁଅକୁ ଝୁରୁଛି, ଆଉ ବୁଢ଼ାର ଦିଓଟି ଛେଳି ଅଛନ୍ତି । ପେଟମରା ରୋଗୀତ, ସବୁବେଳେ ପେଟକୁ ଚିପି ଛେଳି ବାନ୍ଧୁଥିବ । ଆଉ ବେଳ ଗଡ଼ିଗଲେ ଛେଳିଙ୍କି ଡାକୁଥିବ ହେ ଇନ୍ଦିରା ହେ ନନ୍ଦିନୀ ଆସଲୋ, ନଇଲେ ଚବିଶି ଘଣ୍ଟା ଭୁଟୁ ଭୁଟୁ ହୋଇ କାହାକୁ ଅଭିଶାପ ଦେଉଥିବ । ବୁଢ଼ା ଚିଡ଼େ, ବୁଢ଼ୀ କାହିଁକି ଶୁଣିବ । ମୁଁ ଯାହା ଶତାବରୀ ନାମରେ ସାମାନ୍ୟ ସନ୍ଦେହ ହୋଇ, ପିଲା ପିଲିଙ୍କ କଥା ପଚାରୁଥିଲି, ଛେଳି ଦୁହିଁଙ୍କ ନାଁ ଶୁଣି ସନ୍ଦେହ ପୁରା ଦୂର ହୋଇଗଲା । ଶ୍ୱେତାମ୍ବରୀଙ୍କି ତିନିଥର ଦେଖିବାରେ ତିନୋଟି ଯାକ ମୁହଁ, ମୋ ଆଖି ଆଗରେ ବିଜୁଳି ପରି ନାଚି, ଲିଭି ଯାଇଥିଲା । ବର୍ତ୍ତମାନର ଇସୁଫ୍ ବର୍ଣ୍ଣନା କରିଥିଲା ଅନ୍ତିମ ଦୃଶ୍ୟ । ପୁଣି ମୁହଁଟି ଜଳିଉଠିଲା । ସେଇ ସୁନ୍ଦର ଝିଅଟି ଦିନେ କେଡ଼େ ବଡ଼ ଘରେ, ପାଟିରେ ରୂପା ଶାମୁକା ଧରି ଜନ୍ମ ହୋଇଥିଲା । ଯୌବନ କାଳରେ ଟଙ୍କାଗଦା ଉପରେ ଶୋଇଥିଲା । ପ୍ରୌଢ଼ତ୍ୱରେ ଟୋକେଇରେ ସୁନା ମଣ୍ଡଣୀ ହୋଇଥିଲା । ଛାତ କଡ଼ି ଭିତରେ ସୁନା ଇଟା ଖଞ୍ଜା ହୋଇଥିଲା । ତାର ବାର୍ଦ୍ଧକ୍ୟର ଶେଷ ଜୀବନ ବିବର୍ତ୍ତନର ଅଗ୍ନି ବଳୟ ଭିତରେ ପିଟି ହୋଇ ଧୁ ଧୁ ଝାଞ୍ଜିପିଟା ତାତିଲା ପବନ ସହି ଶେଷ ଶୀତଳତା ଟିକକର ଆଶ୍ରୟ ପାଇଥିଲା ହାରୁନ୍ ମିଆଁର ଶୀତଳ ବଳୟ ଭିତରେ । ଧନ୍ୟରେ ବିଧି, ତୋର ବିଧାନ କେଡ଼େ ବିଚିତ୍ର । ମୃତ୍ୟୁ ପରେ ତଥାପି ଦ୍ୱନ୍ଦ, ଦାହ ନା ସମାଧି ? ଦ୍ୱିଧା କରିଥିଲା, ଅଗ୍ନି ପାଉଁଶ କରି ପବନରେ ଉଡ଼ାଇ ନେବାକୁ । ବସୁଧା ବି ଚାହିଁଲାନି ମାଟିର ଶରୀରଟି ମାଟିତଳେ ଲୁଚାଇ ଦେବାକୁ, ଅମୃତପୁର ମଶାଣି ଉପରେ ଲୋଟୁଥିବା ସେଇ ନାରୀ ଦେହଟିକୁ ପ୍ରଚଣ୍ଡ ଦିବାଲୋକରେ ବିଲୁଆ, କୁକୁର ଓ ଶାଗୁଣାମାନେ ଖଣ୍ଡ ଖଣ୍ଡ କରି ବାଣ୍ଟି ନେଇଥିଲେ ॥



# ମଦାଳସା

**ଦି**ନଯାକର ପରିଶ୍ରମ ପରେ ଯେତେବେଳେ ବିଶ୍ରାମ ନେଉଥିଲି, ନିଦ ଆସିବା ଯାଏଁ । କେତେ ଯେ ଭବିଷ୍ୟତର ରଙ୍ଗୀନ ଚିନ୍ତାରେ ଏ ମନ ବିଭୋର ହୋଇ ଯାଉଥିଲା । କେତେ କଳ୍ପନା ଜଳ୍ପନା ଭିତରେ ନିଦ ମାଡ଼ି ଆସୁଥିଲା । କିନ୍ତୁ ଏବେ ପ୍ରାୟ ନିଦ ବଦଳରେ ବହୁ ସମୟ ତନ୍ଦ୍ରାଚ୍ଛନ୍ନ । ସେହି ଆଚ୍ଛନ୍ନ ମନ ଭିତରୁ ଉଙ୍କିମାରେ ଖୋଲି ଅତୀତ । ତା'ରି ଭିତରେ ନବ ରବି ଆଲୋକରେ ଉଲ୍ଲସିତ ପଦ୍ମଫୁଲ ପରି ପ୍ରସ୍ଫୁଟିତ ମୁହଁମାନଙ୍କ ପାଖରେ ଦିଶିଯାଏ କେତେଗୁଡ଼ିଏ ସେହି ସୂର୍ଯ୍ୟ କିରଣ ଲାଗି ଝାଉଁଳି ଆସୁଥିବା କଇଁ ଫୁଲିଆ ମୁହଁଟିମାନ । ସେଥିରୁ ଗୋଟିଏ ଝାପସା ମୁହଁ ଯେତିକି ନିରେଖି ଖୋଜିଲେ ସେତିକି ପାଖେଇ ଆସିଲା । କୃତ୍ରିମ ହସ ମଖା କାଳର କରାଳ ନଖରେ ଅଙ୍କା ବଙ୍କା ଗାର ପଡ଼ିଥିବା ମୁଣ୍ଡରେ ମାଙ୍ଗକଟା ଧାନ ଶୁଙ୍ଘ ପରି ଓପଡ଼ା ହୋଇଥିବା ସରୁ ଭୃଲତା ଅଙ୍କା ସିଠୁଆ ହେଲେ ବି ହସିଲା ମୁହଁଟିଏ,ରାଜକୀୟ ନାମରେ ନାମିତ ଦାସୀ ମଦାଳସାର ।

ମୋ ଘର ପାଖରେ ଜଣେ ହାକିମ ଗୋଟିଏ ଭଡ଼ା ଘରେ ଥିଲେ । ସେ ଥିଲେ ରାଜ ପରିବାରର । ରାଜାଙ୍କ ଭାଇୟା । ସେ ପୁଣି ମୋ ସ୍ୱାମୀଙ୍କ ପାଠପଢ଼ା ବେଳର ବାଲ୍ୟବନ୍ଧୁ । ଭାରି ବେପରୁଆ ନିଷ୍ପାପର ଲୋକ । ହାକିମ ଆଉ ଓକିଲ ଏକା ଯାଗାରେ ଥିଲେ ବି, ବନ୍ଧୁତା କୁଆଡ଼େ ଆଇନ୍‌ରେ ମନା । କିନ୍ତୁ ସେ ଦୁଇଜଣ ସ୍ୱାମୀଙ୍କୁ ସ୍ତ୍ରୀ ଏପରି ବନ୍ଧୁବତ୍ସଳ ଥିଲେ ଯେ, ଯେ କେହି ଲୋକ ତାଙ୍କର ଆପଣାର ନ ହୋଇ ରହି ପାରିବନି । ଆଇନ ବାଟେ ଆଇନ ଗଲା । ଦିନକୁ ଦିନ ଆମର ଘନିଷ୍ଠତା ଗାଢ଼ରୁ ଗାଢ଼ତର ହୋଇଗଲା । ହାକିମ ରାଜବଂଶଜ ହେଲେ ସୁଦ୍ଧା, ଅତି ସଚ୍ଚୋଟ ଓ ସାଧାରଣ । ତାଙ୍କ ଘର ଆଉ ବାହାରର ବ୍ୟବହାର, ଚାଲିଚଳନ, ଏକାବେଳେ ନିରୁତା । କେବଳ ରାଜକୀୟ ଚଳଣୀ ଭିତରେ, ତାଙ୍କ ଘରେ ଦେଖିଥିଲି ସୁନାର ମୁକୁଟ ସହିତ କିଛି ମୂଲ୍ୟମାନ ପଥର ଜଡୁଆ ଅଳଙ୍କାର । ଆଉ ନିଜ ଜନ୍ମିତ ନାଁ ନୁହେଁ, ରାଜ ପରିବାରରେ ପୁର୍ନଜନ୍ମ ପାଇଲା ବେଳର ନାମ ବହନ କରୁଥିବା ମଦାଳସା, କାମକଳା, ବୋଲି ଦୁଇଟି ଦାସୀ । ହାକିମଙ୍କ ସ୍ତ୍ରୀ ତାଙ୍କ ବାପଘରୁ ଯୌତୁକ ଆଣିଥିଲେ ସେ ଦୁହିଁଙ୍କୁ । ଆଉ ସେଇ ଦାସୀ ବି, କିଛି ରାଜା ଘରର ଚଳଣୀ ଓ ଭାଷା ବ୍ୟବହାର କରୁଥିଲେ । କାମକଳାର ଟିକିଏ ବୟସ କମ୍ । ସେ ପ୍ରାୟ ଘର କାମରେ ବ୍ୟସ୍ତ ଥାଏ । ଆଉ ମଦାଳସାର ବୟସ ବୋଧେ ଷାଠିଏ ହେବ । କାରଣ ଗୋଟିଏ ବୟସର ସୀମା ଅତିକ୍ରମ ନ କଲେ, ତାଙ୍କୁ ଅନ୍ତଃପୁର ଛାଡ଼ି ବାହାରକୁ ଯିବାର ଅନୁମତି ମିଳେନି । ସେହି ମଦାଳସା ବୟସ ବେଳେ ଅତି

ସୁନ୍ଦରୀ ଥିଲା ନିଶ୍ଚୟ । ସେ ବାହାରକୁ ଯିବା ଆସିବା କରେ । ପ୍ରାୟ ବେଳା ଅବେଳାରେ ଆମ ଘରକୁ ପଶିଆସେ । ମଦାଳସା ମୋ ସାଙ୍ଗେ, ଆଉ ତା'ସାଙ୍ଗେ ମୁଁ ଗପସପ ହେବାକୁ ଭାରି ଭଲ ପାଉ । ସେ ମୋ' ଆଗରେ କହିବାକୁ ବି ସେତିକି ଆନନ୍ଦ ପାଏ । ସକାଳୁ ଦେଖାହେଲେ ମୁଁ ପଚାରିଦିଏ କିଓ ! ଜେମା ତୁମର କ'ଣ କରୁଛନ୍ତି ? ମଦାଳସା କହେ, ଛେମା ଆମର ବେଣ୍ଟପାଣି ସାରି, ଶୃଳେଇ କି ବିଜେ ହେବା ହୋଇଛନ୍ତି । ତା'ମାନେ (ଦାନ୍ତ ଘଷିସାରି ପାଇଖାନା ଯାଇଛନ୍ତି) । ଆଉ କେବେ ଖାଆ ପିଅ ବେଳେ ମୁଁ ଉପରୁ ଡାକି ପଚାରିଦିଏ, କିହୋ ! ତୁମ ଜେମା ଖାଇଲେଣି ? ସେ ତାଙ୍କ ଛାତରୁ ଜବାବ ଦିଏ, ନାଇଁ ଆଜ୍ଞା ! ମାଜଣା (ଗାଧୁଆ) ତ ଏଇଲେ ସରିଲା । ଏଥର ମଣୋହିଁ (ଖାଇବା) କୁ ବିଜେ ହେବା ହେବେ । କେବେ ଉପରଓଳି ଜେମାଙ୍କୁ ଖୋଜିଲେ, କହେ ଆଜ୍ଞା ! ଡାକିବି କେମିତି ? ଏଇଲେ ମାତ୍ର ଦିବା ପହୁଡ଼ (ଶୋଇବା)କୁ ବିଜେ ହେବା ହୋଇଛନ୍ତି । ସେତେବେଳେ ମୋତେ ଲାଗେ ରାଜବଂଶରୁ କର୍ପୂର ଉଡ଼ିଯାଇଥିଲେ ବି, ଦାସ ଦାସୀମାନେ କନା ଖଣ୍ଡିକ ଜାବୁଡି ଧରିଛନ୍ତି ।

ଦିନେ ଖରାବେଳେ, ଝିପି ଝିପି ମେଘ ବରଷୁଛି । ହଠାତ୍ ଡାକ ଘଣ୍ଟି ଶୁଣି, ଦୁଆର ଖୋଲିଲା ବେଳକୁ, ମୋ ସାମନାରେ ଠିଆ ହୋଇଛି ମଦାଳସା । ପ୍ରାୟ ସମୟ ଦି'ଟା ହେବ ପିଲାମାନେ ସ୍କୁଲରୁ ଫେରି ନଥାନ୍ତି । ବାବୁ ତ କଚେରୀ କାମ ପରେ ଅଫିସ୍ କାମ ସାରି ଫେରୁ ଫେରୁ ରାତି ହୋଇଯିବ । ମଦାଳସାକୁ ଦେଖି, ମୋ ଭଳି ଗପୁଡ଼ି ଲୋକକୁ କୋଟି ନିଧି ପାଇଲା ପରି ଲାଗିଲା । ପଚାରିଲି କିଓ !ଜେମା ନାହାଁନ୍ତି କି ? ସେ କହିଲା ନାହିଁ ଆଜ୍ଞା ! ଆଜି ଶ୍ରୀନଅରକୁ ତାଙ୍କ ପିଇସୀ ଆସିଛନ୍ତି ଯେ, ସେ ପିଲା ତିନିହିଁଙ୍କି ନେଇ, ବେହେରଣରେ ବିଜେ ହେବା ହୋଇଛନ୍ତି । ଶ୍ରୀ ନଅରରୁ ଗଜପତି ମହାରାଜା, ଗାଡ଼ି ପଠେଇବା ହୋଇଥିଲେ । ମୁଁ ସାଙ୍ଗରେ ଯାଇଥାଆନ୍ତି ଯେ, ଏ ଥଣ୍ଡାରେ ମୋତେ ଶ୍ୱାସ ପରି ଲାଗୁଛି । କାମକଳା ତ ଘରେ ଅଛି । ବାବୁ ଆସିଲେ, ଜଳଖିଆ ଯୋଗାଡ଼ି ଦେବ । ମୁଁ ଟିକିଏ ଆପଣଙ୍କ ପାଖେ ବାହାରି ଆସିଲି । ମୁଁ ମଦାଳସାକୁ ଘରକୁ ଆଣି ମସିଣା ପକେଇ ବସିବାକୁ କହି, ମୁଁ ସେଇ ମସିଣାରେ କାଛକୁ ଆଉଜି ବସିପଡ଼ି କହିଲି- ଆଜି ମୋର ଭାରି ଭାଗ୍ୟ । ତୁମେ ସମୟ କରି ଆସିଛ ! ତୁମ ସାଙ୍ଗେ ଟିକେ ଗପିବାକୁ ମୋତେ ଭାରି ଭଲ ଲାଗେ । ସେ ସାଙ୍ଗେ ସାଙ୍ଗେ ଖଟ ଉପରୁ ଖଣ୍ଡିଏ ମାଣ୍ଡି ଆଣି ମସିଣା ଉପରେ ଥୋଇ, ମୋତେ ଏକ ରକମ ଶୁଆଇ ଦେଇ କହିଲା, ଆଜ୍ଞା ! କେଡ଼େ କଥା କହିବା ହେଉଛନ୍ତି । ଏଇଟା ମୋ ଭାଗ୍ୟ । ଆପଣଙ୍କ ସାଙ୍ଗେ କଥା ହେଲାବେଳେ ଆଜ୍ଞା ! ବୟସରେ ସାନ ହେଲେ କ'ଣ ହେଲା ମୋତେ ମୋ ମା'ପରି ଲାଗନ୍ତି । ଏଇଟା ଦିବା ପହୁଡ଼ ବେଳ । ଟିକିଏ ଗଡ଼ି ପଡ଼ନ୍ତୁ । ମୁଁ ଟିକିଏ ପାଦ ମଞ୍ଜାଳି ଦେବି । ମୁଁ ଧଡ଼ପଡ଼ ହୋଇ ଉଠି ବସି କହିଲି, କି ଅଭାଗ୍ୟ କଥା, ମୁଁ ତୁମ ହାତେ ଗୋଡ଼ ଘସାଇ ହେବି ? ତୁମେ ଷାଠିଏ ବର୍ଷର ବୁଢ଼ୀ, ମୋର ପାପ ହେବନି ? ମୁଁ ବରଂ ତୁମ ସେବା କରିବା କଥା ।

ମଦାଳସା ଜିଭ କାଢ଼ିପକେଇ ମୋ ପାଦ ଧୂଳି ତିନିଥର ମୁଣ୍ଡରେ ମାରି, ମୋତେ ପ୍ରାୟ ନେହୁରା ହେଲାପରି କହିଲା- ଆଜ୍ଞା ! ଏ ଭାଗ୍ୟ କେଉଁଠୁ ମିଳିବ ? ଏମିତି ପାପ କଥା ଜମା କହନ୍ତୁନି ଆଜ୍ଞା ! ମୋର ପାପ ହେବ । ଆଜ୍ଞା ! କେତେଜନ୍ମ ପାପରେ ତ ମାଇପି ଜନ୍ମ ପାଇଛି । ମାଇପି ଜନ୍ମ ପାଇ ପୁଣି ଦାସୀ ହେଲି । ସଂସାରରେ ଥାଇ ଅସଂସାରୀ ହେଲି । ସେବା ଦାସୀ ପଣରେ ଜୀବନ ଗଲା । ଯଦି ଦିନେ ଦଣ୍ଡେ ବ୍ରାହ୍ମଣ ଦେବତାଙ୍କ ସେବା କରିଦେବି, ତେବେ କେତେଯୁଗର ପାପ କ୍ଷୟ ଯିବ । ଏଇତକ ପୁଣ୍ୟ ହେଲେ ମୋତେ ଆଉ ଜନ୍ମ ପାଇଁ ଦେବା ହୁଅନ୍ତୁ । ତା' ଭାଷାରେ ଏପରି କାରୁଣ୍ୟ ଭାବ ଥିଲା ଯେ,ମୋତେ ଲାଗିଲା ସତେ ଯେମିତି ମୁଁ ଅଣ୍ଟିରେ ଅଣ୍ଟିଏ ପୁଣ୍ୟ ଧରି ବସିଛି,ଆଉ ସେ ମୋତେ ବାରମ୍ବାର ନେହୁରା ହୋଇ ମାଗୁଛି । ମୁଁ ବାଧ୍ୟ ହୋଇ ଗୋଡ଼ ଦେଖାଇଦେଲି । ତା' ସେବା ହାତର କୁହୁକରେ ମୁଗ୍ଧ ହୋଇ, ତା' ମୁହଁକୁ ଚାହିଁ ରହିଲି । ମଜା ତମ୍ବା ପରି ଦେହର ରଙ୍ଗ । ଖଣ୍ଡାଧାର ପରି ନାକ । ଇନ୍ଦ୍ରଧନୁ ପରି ସରୁ ସଜଡ଼ା ଭୃଲତା ତଳକୁ ଟିକିଏ ଗହୀରିଆ କଜ୍ଜଳଲଗା ବଡ଼ ବଡ଼ ପାଣିଚିଆ ଆଖି । ଅଧା ଚାନ୍ଦ କପାଳରେ, ଗୋଟିଏ ଛୋଟ ଅଭର ଟିକିଲି ତଳକୁ ଛୋଟ ସିନ୍ଦୁର ବିନ୍ଦୁଟିଏ । ଓଠତଳେ କୁଟା ହୋଇଥିବା ଚିତାର ଛୋଟିଆ କଳା ବିନ୍ଦୁଟି । କାନର ମାଙ୍କେଡ଼ି ସାଙ୍ଗକୁ, ନାକରେ ତିନିଟିକିଆ ଧଳାପଥର ବସା ଫୁଲ ଦୁଇଟି ମିଶି ପରିପାଟୀ କରା ମୁହଁଟିର ନୟସ ବେଳର ଛାପ, ଏବୟସର ଶୁଷ୍କ ରୁକ୍ଷତା ଭିତରୁ ବି ଫୁଟି ବାହାରୁଛି । ମୁଁ ପଚାରିଲି- ଆଚ୍ଛା ମଦାଳସା କାମକଳା କଅଣ ତୁମର ନିଜ ଭଉଣୀ ? ତୁମ ଦୁହିଁଙ୍କ ନାଁ ମୋତେ ଭାରି ଭଲ ଲାଗେ । ପାନଖିଆ ପାଟିରେ ସେ ଅଳ୍ପ ହସି କହିଲା- ଆଜ୍ଞା ଆମର ଏଇ ଲୁହାର ଜୀବନ ତ, ଛୁଞ୍ଚି ମୁନରେ ସରିଲା । ଆଉ ନିଜର ହେଲା କିଏ । କାମକଳାକୁ ତା' ମାଆ ନିରୋଟିଆ ବେଳେ, ପାଞ୍ଚସେରେ ଚାଉଳ ନେଇ ବିକି ଦେଇଥିଲା । ଏଡ଼ିକି କଙ୍କାଳ ସାର ପିଲା । ହାତରେ ଖାଇ ଜାଣି ନଥିଲା । ମୋର ସେତେବେଳେ ଜବାନ ବେଳ । ମୋ'ରି ହାତରେ ତାକୁ ମଣିଷ କଲି । ରୂପ ସଙ୍ଗେ ସଙ୍ଗେ ନାଁ ବି ବଦଳେ ଆଜ୍ଞା । ଆଜି ଜେମା ନାହାନ୍ତି । ବାବୁ ଆସିଲେ ସେ ଜଳଖିଆ ଯୋଗାଡ଼ି ଦେବ । ତା'ର କ'ଣ ଅଭାବ ଅସୁବିଧା ଟିକିଏ ମନଖୋଲି କହିବ । ବାଘର ତ ଫାଗକୁ ଭୟ । ମୁଁ ସେଇଥିପାଇଁ ଆପଣଙ୍କ ଘରକୁ ଆସିଲି ଭାରି ।

ମୁଁ ହଠାତ୍ ତା' କଥାର ମର୍ମ ବୁଝି ପାରିଲିନି । ମୁଁ ଭାବିଲି, ଦାସୀମାନେ କ'ଣ ପିଲାରୁ କିଣା ? ସେମାନେ ନିଜ ଇଚ୍ଛାରେ ଦାସୀ ନୁହଁନ୍ତି ? ଏମିତି ମାଲିକ ସାଙ୍ଗେ ଦୁଃଖ ସୁଖ ହେବାକୁ ଏମାନଙ୍କୁ ଏକାନ୍ତରେ ସୁଯୋଗ ଦରକାର ? ଏମିତି ନାନାଦି ଭାବନାର କୁହେଳି ମୋ ମନକୁ ସନ୍ଦେହରେ ଆଚ୍ଛନ୍ନ କରି ପକାଇଲା । ମୁଁ ପଚାରିଲି- ତୁମ ଜେମା ନଥିଲା ବେଳେ, କାମକଳା ବାବୁଙ୍କ ସଙ୍ଗେ କ'ଣ ଦୁଃଖ ସୁଖ ହେବ ? ମୋର ସନ୍ଦେହ ଘେରା ମନକୁ, ଠଉରେଇ ନେଇ ମଦାଳସା କହିଲା, ନାଇଁ ଆଜ୍ଞା ଇଏ ଆମର ରାଜା

ନୁହଁନ୍ତି । ଇଏ ଦେବତା । ଆମେ ରାଜା କି ଆଜ୍ଞା ବୋଲି କହିଲେ, ଆଜ୍ଞା ହସନ୍ତି । କହନ୍ତି ତୁମ ଜେମା ସିନା ରଜାଘରୁ ଆସିଛନ୍ତି । ମୁଁ ପରା ଚାଷୀଘର ପିଲା । ଆମ ବାପାଙ୍କର ଶହେ ବାଟି ସମ୍ପତ୍ତି । ମୋ ବାପା ଜଣେ ବଡ଼ ଚାଷୀ । ତାଙ୍କର ବ୍ୟବସାୟ ଥିଲା ଜମି ଚାଷ, ମୋ ବ୍ୟବସାୟ କଲମ ଚାଷ । ଆମେ ରାଜା କିମିତି ହେବୁ । ରାଜାଙ୍କର ସାତ ପୁରୁଷି ଭାଇୟା । ମତେ ବାପା ନହେଲେ ବାବୁ ଡ଼ାକିବ । ଆଜ୍ଞା ଆମକୁ ଝିଅ ଆଉ ଭଉଣୀ ପରି ଦେଖନ୍ତି । ଜେମା ନଥିଲେ କାମକଲା ଟିକିଏ ପାଖକୁ ବସେ । ପାନ ଭାଙ୍ଗିଦିଏ, ବାବୁ ପଦେ ପଦେ ମଜାଳିଆ କଥା କହନ୍ତି । କାମକଲା ବି ହସି ହସି କଥାବାର୍ତ୍ତା କରେ । ସବୁବେଳର ନିରସିଆ ମୁହଁଟା ସେଦିନ ଟିକେ ସରସ ଦିଶେ । ବାବୁ ପାନ ଖଣ୍ଡେ ତାକୁ ଦେବେ କି ? ମୁଣ୍ଡକୁ ଟିକିଏ ଆଉଁସି ଦେବେ, ଠିକ୍ ବଡ଼ଭାଇ ପରି ।

ମୁଁ ପଚାରିଲି- ମଦାଳସା, ଏ ସବୁ ଦେଖିଲେ ତୁମ ଜେମା ରାଗନ୍ତିନି ? ସେ କହିଲା ନାହିଁ ଆଜ୍ଞା ଜେମା କାହିଁକି ରାଗିବେ ? ସେତ କଂସାରୀଘର ପାରା, ଆଜ୍ଞା କୁଲା ଢ଼ାଉଁ ଢାଉକୁ କାହିଁକି ଡ଼ରିବେ । ସେ'ତ ରାଜା ଘରେ ବଢ଼ିଛନ୍ତି । ଭାରି ଉଦାର । ରାଜାଘର ଚାଲିଚଳଣୀ ସବୁ ତାଙ୍କ ଦିହସୁହା । ପୋଷିଆଁ ଝିଅ ହେଲେ କ'ଣ ହେବ ? ସେ ରାଜାଘରର ଅଲିଅଳୀ ଜେମା । ଯେଡ଼େ ଛୋଟିଆ ରାଜା ହୁଅନ୍ତୁ ପଛେ, ବେଶୀ ନଦେଲେ ନାହିଁ, ଝିଅ ସଙ୍ଗେ ଯୋଡ଼ିଏ ହେଲେ ଦାସୀ ଦେବେ । ଗୋଟିଏ ଫୁଲ ଦାସୀ ରାଜାଙ୍କ ଦେହଲାଗି । ଆଉ ଗୋଟିଏ ଜେମାର ସେବା ଦାସୀ । ରାଜ ଜେମାତ ଏତେ ଅଳି ଅର୍ଦ୍ଦଳି ସହିପାରିବେନି । ରାଜାଙ୍କର ଲକ୍ଷେ କାମ, ଫୁଲ ଦାସୀ କରିବ । ରାଜାଙ୍କ ମାଜଣା ବେଳେ ପାଣି ଢ଼ାଳିଲାଠୁ, ପହୁଡ଼ ବେଳେ ପାଦ ମଞ୍ଜାଳିଲାଯାଏ ଫୁଲଦାସୀର କାମ । ଅନ୍ୟ ଦାସୀଟି ତ ଜେମାଙ୍କ ଦେହଲାଗି । ଏମିତିକି ପିଠି କୁଣ୍ଡେଇ ହେଲାବେଳେ, କଜ୍ଜଳ ସିନ୍ଦୁର ପେଡ଼ିରେ ଆସିଥିବା ସୁନା ଶାମୁକାରେ ସିନା ଦାସୀ ପିଠି କୁଣ୍ଡେଇ ଦେବ, ରାଣୀ ନିଜ ହାତରେ କୁଣ୍ଡେଇବେନି । ଏଇଥିରୁ ଜାଣ ଆଜ୍ଞା ରାଣୀଙ୍କ ସ୍ୱାଧୀନତା । ଆମ ଜେମା କିନ୍ତୁ ଏ ସବୁଥିରୁ ଅଲଗା । କଥାରେ କହନ୍ତି ସିନା, ରାଣୀ ପରି ଭାଗ୍ୟବତୀ । ନହିଲେ ଆଜ୍ଞା ଦାସୀ ଜୀବନ ଭଳି ରାଣୀ ଜୀବନ ବି ଭାରି ହନ୍ତସନ୍ତିଆ ଜୀବନ । ଆମ ବାବୁ ଆଜ୍ଞା ଭିନ୍ନ । ହାକିମ ନା, ଭାରି ବିଚାରବନ୍ତ । ମୁଁ ଭାବେ ଆମ ଜେମା ପୂର୍ବ ଜନ୍ମରେ ତପସ୍ୟା କରିଥିଲେ । ରାଜା ବିଭା ନହୋଇ ହାକିମ ବିଭା ହେଲେ । ଆମ ବଡ଼ରାଣୀ ମା' ଜେମାଙ୍କୁ ଯିଏ ଝିଅ କରିଥିଲେ, ତାଙ୍କ ପିଇସୀ, ଭାରି ଚାଲାକ୍ ତାଙ୍କ ପୁଅ ନାଁବାଳକ ଥିଲାବେଳେ ସେ ଷ୍ଟେଟ୍ ଚଳାନ୍ତି ଟି ?

ମୁଁ ଟିକିଏ ଆଶ୍ଚର୍ଯ୍ୟ ହୋଇ ପଚାରିଲି- ଜେମାଙ୍କୁ ତାଙ୍କ ପିଇସୀ ଝିଅ କରିଥିଲେ କି ? ତାଙ୍କର କ'ଣ ଝିଅ ନଥିଲା ? ମଦାଳସା ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ କହିଲା ହଁ ଆଜ୍ଞା ! ଗୋଟିଏ ପୁଅ ଗୋଟିଏ ଝିଅ ଥିଲେ । ରାଜା ସାହେବଙ୍କର କାଳ ହୋଇଗଲା

ବେଳକୁ, ରାଣୀ ମା'ଙ୍କୁ ମାତ୍ର ବାଇଶି ବର୍ଷ ହୋଇଥିଲା । ସେ ଥିଲେ ରାଜା ସାହେବଙ୍କର ତୃତୀୟ ପକ୍ଷ ସ୍ତ୍ରୀ । ଆମ ଜେମାଙ୍କର ଜନ୍ମର ତିନିଦିନ ପରେ ତାଙ୍କ ମା'ଙ୍କର କାଳ ହୋଇଯାଇଥିଲା, ତେଣୁ ତାଙ୍କ ପିଇସୀ ତାଙ୍କୁ ପାଳିଥିଲେ । ମୁଁ ପଚାରିଲି ଆଚ୍ଛା ମଦାଳସା- ତୁମେ କେତେ ବର୍ଷରେ ୟାଙ୍କ ଘରକୁ ଆସିଥିଲ ? ମଦାଳସା ଘଡ଼ିଏ ନୀରବ ହୋଇଗଲା । ସତେଅବା ତା ମୁହଁଟାରେ ଗୋଟେ କଳା ବଉଦ ଢ଼ାଙ୍କିଦେଲା । ଟିକେଇ ଦେଲା ଆଖି ପତାକୁ । ଘନ ଘନ ବିଜୁଳି ଚମକରେ ଝଲସି ଉଠିଲା ତା' ଅତୀତ । ଗୋଡ଼ଟେକି ସାପୋଇ ପାଲି ଉପରେ ଡେ଼ଉଁଥିବା ଝିଅଟା ଥରେ ଧାନ ମୁନ୍ଦୁରାକୁ ଚାହିଁ ମୁହଁ ଟେକି ଦେଲାବେଳକୁ, ବାଘୁଆନିଶ ଉପରେ ବଡ଼ ବଡ଼ ଆଖି କରି, ଘୋଡ଼ା ଉପରୁ ଚାହିଁ, ସତେ ଅବା କୁଆଁରୀ ଝିଅଟାକୁ କିଏ ଶୋଷି ନେଉଛି । ତା' ବିକଳିଆ ମୁହଁକୁ ଚାହିଁ ଚାହିଁ ମୁଁ ପଚାରିଲି, କଅଣ ହେଲାକି ? ସେ କହିଲା କ'ଣ କହିବି ଆଜ୍ଞା ! ମୋର ପୁଣି ବୟସ । ମୁଁ ଭୁଲି ଯାଇଛି । ସେହି ନ' ଦିନିଆ ଝଡି ଛାଡିଯାଇ ସୂର୍ଯ୍ୟ ଦେବତା ମୁହଁ ଟେକିଥାନ୍ତି । ମୋ ବୋଉ ଚଞ୍ଚଳ ଧାନ ଗଣ୍ଡାକ ଉସେଇଁ, ହେଁସ ପକେଇ ଦାଣ୍ଡରେ ଶୁଖେଇ ଘାଣ୍ଟି ମୋତେ ଜଗେଇ ଦେଇ ଗଲା ଗାଧୋଇ । ମୋର ପୁଣି ଯେତେ ଭୁଜା ପିଠା ଥାଉ, କାଉ କା' କଲା ବେଳକୁ ପିଛେ ପଖାଳ, ଗୋଟେ ଶୁଖୁଆ ପୋଡ଼ା ଲୋଡ଼ା । ଭାଇ ପଛେ ମୁଢି କି ଚାଉଳ ଭୁଜା ଯାହା ଖାଇବ । ମୋର କିନ୍ତୁ ସେତକ ଉଣା ହେଲେ ମୁଁ ଜମା ରଖେଇ ଦେବିନି । ଟୁପାକୁ ଆଉ ସମ୍ଭାଳେ କିଏ ? ମୁଁ ସେତିକି ଟୁଙ୍କି ଦେଇ, ଧାନ ହେଁସ ପାଖେ ଗୋଟେ ସାପୋଇ ପାଲି କାଟି ଏକା ଏକା ଖେଳୁଛି । ବାପର ଖଣ୍ଡେ ଦରବା' (ଅଧା ଚିରା ଲୁଗା) ପିନ୍ଧି, ଅଧେ ଅଣ୍ଟାରେ ଗୁଡ଼େଇ ଦେଇଛି । ପାଲି କି ଗୋଡ଼ିଟେ ପକେଇ ଦେଇ, ଗୋଟିଏ ଗୋଡ଼ରେ ଡେ଼ଇଁ ମୁହଁ ଟେକି ଚାହିଁଦେଲା ବେଳକୁ ଘୋଡ଼ା ଉପରୁ ବାଘପରି ଦୁଇଟା ଜଳନ୍ତା ଆଖି, ମୋ ଆଡ଼ିକି କଟମଟ କରି ଚାହିଁଛି । ସେ ନିଶୁଆ ମୁହଁକୁ ଚାହିଁ ଦେଇ ଆଜ୍ଞା ମୋ ପିଳେହି ପାଣି । ମୁଁ ଦଉଡ଼ି ଯାଇ ଘରେ ପଶି ଦୁଆର ଆଉଜାଇ, କବାଟ ଫାଙ୍କରେ ଚାହିଁଲି । ଘୋଡ଼ାକୁ ଧାନ ହେଁସରୁ ଦି'ପୁଳା ଖୁଆଇ, ସେ ନିଶବାଲା ଗଲେଭାରି । ବୋଉ ଗାଧୋଇ ଆସି ପିଣ୍ଡାକୁ ଉଠିଲା ବେଳକୁ, ମୁଁ ଦୁଆର ଖୋଲି ବୋଉକୁ ସବୁ କହିଲି । ବୋଉ ସେ ଓଦା ଲୁଗାରେ ଲଥ୍ କରି ଘରେ ବସି ପଡ଼ି କହିଲା- ସେ ପରା ଆମ ରାଜା । ମୁଁ ଭାରି ଖୁସି ହୋଇଗଲି । ଯାହା ହେଉ ମୁଁ ଆଜି ରାଜାଙ୍କୁ ଦେଖିଲି । କିନ୍ତୁ ବୋଉ ମୁହଁଟା କାହିଁକି ସେତିକି ବେଳଠୁଁ ଶେତା ପଡ଼ିଗଲା । ବାପା କାମରୁ ଆସି ଖାଇବସିଲା ବେଳେ ବୋଉ ବାପାକୁ କହିଲା- ଶୁଣିଲଣି, ମୁଁ ଗାଧୋଇ ତୁଠକୁ ଉଠିଲା ବେଳକୁ, ରାଜା ସାହେବ ଘୋଡ଼ାରେ ବସି ଯାଉଥିଲେ ଯେ, ମୁଁ ଦେଖି ଚାଖୁଣ୍ଡା ଗଛମୂଳେ ଲୁଚିଗଲି । ବାପା ଖୁସି ହୋଇ କହିଲେ ଯାହା ହେଉ, ତୋର ଆଜି ରାଜ ଦର୍ଶନ ଯୋଗଥିଲା । ବୋଉ କହିଲା ନାଇଁ ଯେ, ଟୁପା ଧାନ ହେଁସ ଜଗିଥିଲା ବେଳେ, ରାଜା ଆସି ସେଇଠି ଘଡ଼ିଏ ଠିଆ ହୋଇ, ଘୋଡ଼ାକୁ ଧାନ ଖୁଆଇଲେ ।

ମତେ କେଜାଣି କାହିଁକି ଭାରି ଡର ମାଡୁଛି । ବାପା କହିଲା- ମାଇପି ଲୋକ, ତୋର ସବୁଥିକି ଡର । ରାଜାଘର ଘୋଡ଼ା ଧାନ ଦି'କଳ ଖାଇଗଲା । କହନ୍ତି ତ ରାଜା ଗୋଜା । ଆମ ଅଭାବ ଅସୁବିଧା କ'ଣ ତାକୁ ଲଗା ? ହଉ ଏସାଲେ ଭଗବାନ ବେଶୀକରି ଦେବେ ।

ବାପା ଭାତଖାଇ ହାତ ଧୋଇ ନାହାଁନ୍ତି । ଗାଁ ଗଉଁତିଆ ଆସି ଦୁଆରେ ମାଇଲା । ମୁଁ ଯାଇ ଦୁଆର ଫିଟାଇ ଗଉଁତିଆ ମଉସାଙ୍କୁ ଦେଖି, ହେଁସ ପକାଇ ବାପାଙ୍କୁ ଆସି କହିଲି । ବାପା ଧଡ଼ପଡ଼ ହେଇ ବିଡ଼ିକଠା ଦିଆସିଲି ନେଇ ପିଣ୍ଡାକୁ ଗଲେ । ବାପା ଆନନ୍ଦରେ ମଉସାଙ୍କ ହାତକୁ ବିଡ଼ି ବଢ଼ାଇ ଦେଲେ । କିନ୍ତୁ ମଉସା ବିଡ଼ି ଧଇଲେନି କି କିଛି କଥା କହିଲେନି । ବାପା ପଚରା ପଚରି କଲାରୁ କ'ଣ ଆସ୍ତେ ଆସ୍ତେ ବାପାଙ୍କ କାନରେ କହିଲେ । ବାପା ଅଜ୍ଞାନ ପରି କାନ୍ଥକୁ ଆଉଜି ଘଡିଏ ରହିଗଲେ । ମଉ଼ସା ବାପାଙ୍କୁ ବହୁତ ବୁଝା ବୁଝି କରେଇ କହିଲେ ଆରେ ଲିଙ୍ଗା ରଜାଙ୍କ କୋପ ଦୃଷ୍ଟିରେ ପଡିଲେ, ତୋର ତ ନିସ୍ତାର ନାହିଁ । ମୋର ବି ସର୍ବନାଶ କରିବାକୁ ପଛେଇବେନି । କହିଯାଇଛନ୍ତି ମୁଁ ଯଦି ଏତକ ନ କରେଇଦେବି, ମୋ ଦୁଆରେ ଗୋଟିଏ ହାତୀ ବାନ୍ଧିଦେବେ । ତା ଅର୍ଥ ହାତୀକୁ ଖୁଆଇ ପିଆଇ ରଖିଲେ ମୁଁ ଯିମିତି ଉଛନ୍ନ ହୋଇଯିବି । ତୁ ଚଣ୍ଡାଳ କଣ କଲୁରେ ? ତୋ ଝିଅ ତ ଗାଁ ଯାକରେ ସାର ଖଣ୍ଡେ । କାହିଁକି ତାକୁ ଦାଣ୍ଡକୁ ଛାଡୁଥିଲୁ, ହଉ ବନସ୍ତରେ ଥିଲେ ତ ହାତୀ ରଜାଙ୍କର ବଞ୍ଚିରହୁ । ତା ମାଆ ଅଗାଧୁ ବୋଉ ଦୁହେଁ ସମଧୁଣୀ ଡକା ଡକି ହେଉଥିଲେ । ମୁଁ କେତେ ଆଶା କରିଥିଲି ତାକୁ ବୋହୁକରି ଘରକୁ ନେବି ବୋଲି । ଛାଡ ତୋ କର୍ମ ଛୋଟ, ମୋ ଭାଗ୍ୟରେ ନାହିଁ ।

ଆଜ୍ଞା ! ବାପା ଘରକୁ ଆସିଲା ବେଳକୁ ଦିହରେ ଯେମିତି ଜୀବନ ନାହିଁ । ମଲା ମାଛ ପରି ଆଖି ଯୋଡିକ ଦିଶୁଛି । ଥର ଥର ପାଟିରେ ଯେମିତି ବୋଉକୁ ଏତକ କହିଛନ୍ତି, ମୋ ବୋଉ ତ ମୋତେ କୁଣ୍ଢେଇଧରି ମଡା କାନ୍ଦଣା ଛାଡିଲା । କହିଲା ମୋର ତ ସେଇଥିକି ଡର ଥିଲାଲୋ । ମୋ ବୋଉ ମନେ ମନେ ଗାଁ ଗଉଁତିଆ ପୁଅ ଅଗାଧୁକୁ ଜ୍ୱାଇଁ କରିସାରିଥିଲା । କିମିତି ବାହା ପୁଆଣୀ କରିଥାନ୍ତା । କ'ଣ କ'ଣ ଦିଆ ନିଁଅ କରିଥାନ୍ତା । ଯାହା କାମ ଦାମ କରୁଥାଏ, ଗୁଣୁ ଗୁଣୁ ହୋଇ ଖାଲି ସେହି କଥା ବାହୁନା ପକାଉଥାଏ । ଗଉଁତିଆ ମଉସା ବି ୟା ଭିତରେ ଦି ତିନି ଥର ଆସି ବାପାଙ୍କୁ ତାଗିଦ୍ କଲାପରେ, ଦିନେ ଗୋଟେ ପିଆଦା ଚିତେ ଉଁଚରେ ବାଉଁଶ ତଡା ଧରି ଆସି ଆମ ଦୁଆରେ ହାଜର । ତଡାଟାକୁ ଦୁଆରେ ତିନିଥର ଜୋରରେ ବାଡେଇଦେଇ ବାପ ନାଁ ଧରି ଜୋରରେ ଗୋଟେ ରଡି ଛାଡିଲା । ବାପ ବିକଳରେ ଦାଣ୍ଡକୁ ଦଉଡିଗଲେ । ବେକରେ ଗାମୁଛା ପକେଇ ହାତ ଯୋଡି ତାକୁ ବହୁତ ନେହୁରା ହୋଇ କହିଲେ, କଅଣ ପାଉଁଣା ପତର ଦେଇ ତା'ଠୁ ସାତ ଦିନ ସମୟ ନେଲେ । ସେହି ସାତ ଦିନି ପୁରିଲା ବେଳକୁ ଆଜ୍ଞା ବୋଉ କାନ୍ଦି କାନ୍ଦି କତରାଲଗା ହୋଇଗଲାଣି । ମତେ ବାପା ନେଇ ଉଆସକୁ ବାହାରିଲେ । ବୋଉ ମୋ ଛିଟ ଲୁଗା କାନିରେ ଗଣ୍ଡିଏ ଭୁଜା ବାନ୍ଧିଦେଲା । ମୁଁ ତାକୁଇ

ମୁଣ୍ଡରେ ଥୋଇ କାନ୍ଦି କାନ୍ଦି ପଛକୁ ଚାହିଁ ଚାହିଁ ଯାଉଥାଏ ।ବୋଉର ବୋବାଳି ମୋତେ ଡାକେ ବାଟ ଯାଏଁ ଶୁଭୁଥାଏ । ମୋତେ ଲାଗୁଥାଏ ବୋଉ ବୋବାଳି ପକେଇ ହାତ ଯୋଡାକ ଲମ୍ୱେଇ ମୋ ପଛରେ ଅବା ଦଉଡୁଛି, ବଳିକାଠକୁ ଛେଳି ଗଲେ,ତାକୁ ଏମିତି ଲାଗିବନି । ମୁଁ ପାଦେ ଆଗକୁ ଚାଲିଲେ, ମୋର ଦି ପାଦ ପଛକୁ ପଡୁଥାଏ । ଛାଇ ଲେଉଟା ବେଳକୁ ଉଆସ ପାଖେ ପହଞ୍ଚିଲି । ଭିତରକୁ ଖବର ଗଲା । ଗୋଟେ ଲୋକ ଆସି ମତେ ଭିତରକୁ ଚାଲ୍ ଚାଲ୍ ବୋଲି କହିଲା । ମୁଁ ବାପା ହାତକୁ ଭିଡି ଧରିଥାଏ ।ସେ ଲୋକ ଯେତେ ଛଡାଇଲା, ମୁଁ ଆଉ ବାପା ହାତକୁ ଛାଡିଲିନି । ସେ କହିଲା ହଉ ତାହେଲେ ଦିହେଁ ଭିତରକୁ ଚାଲ । ଆମେ ଦୁହେଁ ଯାଇ ଭିତର ଖଞ୍ଜାର ପିଣ୍ଡା ଉପରେ ଠିଆ ହେଲୁ । ମୁଁ ବାପା ହାତକୁ ସେମିତି ମୁଠାଇ ଧରିଥାଏ । ଗୋଟିଏ ଦରବୁଢୀ ମାଇପି ଆସି, ଯୋଡିଏ ତାଟିଆରେ ବାପାକୁ ଆଉ ମତେ ଆରିସାପିଠା, ଲଡୁ ଖାଇବାକୁ ଦେଇ ବସ ବୋଲି କହିଲା । ବାପାତ କିଛି ଛୁଇଁ ନଥାନ୍ତି । ମତେ କହିଲେ ଖାଆ । ମତେ ତ ସେତେବେଳକୁ ଭାରି ଭୋକ କରୁଥିଲା । ମୁଁ ମୋର ସବୁ ଖାଇ, ବାପ କହିଲାରୁ ତା ଥାଳିଆରୁ ବି ଅଧେ ଖାଇଦେଲି । ଆଉ ସବୁ କେତେ ମାଇପି ସେ ଖଞ୍ଜାରୁ ମୁହଁ କାଢି, ଆମ ବାପ ଝିଅକୁ ଚାହିଁଥାନ୍ତି । ବାପାଙ୍କ ଆଖିରୁ ଲୁହ ଧାର ଧାର ବୋହିଯାଉଥାଏ । ସେହି ଚମ୍ପା ମାଉସୀ ବାପାଙ୍କୁ କେତେ ବୁଝାସୁଝା କଲା । କହିଲା ବାପ ଏଇ ମାଇପି ଖଞ୍ଜା । ଏଠି ଆଉ ଏତେ ବେଳ ବସନି । ଝିଅ ଥାଉକି, ତୁମେ ଆର ଖଞ୍ଜାକୁ ଚାଲ । ମୁଁ ଅଛି କିଛି ଚିନ୍ତା କରନି । ଯେତେବେଳେ ମନ ହେବ, ଆସି ଝିଅକୁ ଦେଖିଯାଉଥିବ । ମୁଁ ଆଜ୍ଞା ବାପାକୁ ଛାଡୁଛି କେତେବେ । ତାକୁ କୁଣ୍ଢେଇ ଧରି ବଡ ପାଟିରେ କାନ୍ଦିଲି । କହିଲି ମୁଁ ବୋଉ ପାଖକୁ ଯିବି ଏଠି ଜମା ରହିବିନି । କୋଉଠି ଥିଲା ସେ ଯେଉଁ ତଡା ଧରା ପିଆଦାଟା, ଆସି ଯେମିତି ତଡାଟାକୁ ତଳେ ପିଟିଦେଇ ରଡିଟେ କରିଦେଇଛି, ବାପ ମୋ ହାତ ଛଡେଇ, କହିଲେ ଯାଉଛି । ତୋ ବୋଉକୁ ମୁଁ ଏଠିକି ଘେନି ଆସିବି, କହି ତା ପଛେ ପଛେ ଗଲେଭାରି । ମୋ ହାତକୁ ଚମ୍ପା ମାଉସୀ ଭିଡି ନେଇ ଗୋଟେ ଖଟରେ ସୁଆଇ ଦେଲା । ମୁଁ କାନ୍ଦି କାନ୍ଦି କେତେବେଳେ ଶୋଇପଡିଲି । ଶୁଣିଥିଲି ବାପକୁ ରାଜବାଟୀରୁ ବାଟଖର୍ଚ୍ଚକୁ , ଦଶଟଙ୍କା ଦେଇଥିଲେ ।

ସେଇଦିନ ଜାଣ ଆଜ୍ଞା ନୂଆ ଜନ୍ମ ହେଲା । ଟୁପା ମରିଗଲା, ନାଁ ଲୁଚିଗଲା । ରାଜା ନାଁ ଦେଇ ପଠେଇଲେ ''ମଦାଳସା ଦାସୀ'' । ଆଜ୍ଞା ! ନିଇତି ସଂନ୍ଧ୍ୟା ବେଳକୁ ବୋଉ, ବାପା, ଭାଇ ଗାଁ ଗୋଟିକର ଲୋକେ ମନେ ପଡନ୍ତି । ଗୋଟିଏ କୁଣରେ ବସି କାନ୍ଦେ । ସାତଜଣ ଦାସୀ ଥାଆନ୍ତି । ସମସ୍ତେ ବୁଝାନ୍ତି । କେତେ କ'ଣ ଖେଳ ଜିନିଷ ଦିଅନ୍ତି । ଭୂଜା ପିଠା ଆଣି ଦିଅନ୍ତି । ମୁଁ କାହାରି ଆଡିକି ଚାହେଁନି କି କିଛି ଛୁଏଁନି । ଶେଷକୁ ଚମ୍ପା ମାଉସୀ ଗୋଟିଏ ସର୍ବନାଶିଆ ବୁଦ୍ଧି ପାଞ୍ଚିଲା । ମୋ ଦେହରେ କାଳୀ ବୋଳି ଦେଲା । ମୋ ଦେହରେ କ'ଣ ଆଜ୍ଞା ! ରାଜା ଘର ପିଲାଙ୍କୁ ବି ବୁଝେଇ ରଖିବାକୁ

ଏଇ ଦାସୀମାନେ ଏମିତି ନାନାକୌଶଳ ପାଞ୍ଚନ୍ତି । ସେ ଟେଳେ ଅଫିମ ଖାଏ । ନିତି ସଂନ୍ଧ୍ୟା ବେଳକୁ ଚିନି ପକେଇ ଅଧ ଡାଟିଏ ଦୁଧ ଆଣିବ । ତା'ଅଫିମ ଟେଳାକ ହାତରେ ଗୋଳାକରି, ତା ପାଟିଭିତର ତାଳୁରେ ଜାକି ଦେବ କି, ସେହି ଆଙ୍ଗୁଠିତକ ଦୁଧ ଡାଟିଆରେ ଧୋଇ ମତେ ପିଆଇ ଦେବ । ମୁଁ ପିଲାଦିନୁ ଦୁଧ ଦହି ଖାଇବାକୁ ଭଲ ପାଏ । ବେଶୀ ଚିନି ପଡିଥାଏ ତ, ମୁଁ ଦୁଧ ଲୋଭରେ ସେତିକି ପିଇଦିଏ । ଆଉ ଯାଏ କୁଆଡେ ଆଜ୍ଞା ! ମାସ ଗୋଟେ ଯାଇଛି କି ନାହିଁ, ତା ହାତଧୂଆ ଦୁଧ ଡାଟିଆକୁ ତ ଚାକି ବସିଲି । କେତେବେଳେ ସଂନ୍ଧ୍ୟା ହେବ, ତା ପଛେ ପଛେ ଗୋଡେଇଥିବି । ସେ ଠାକୁର ଘରକୁ ତୁଳସୀ ମୂଳ, ତଳ ଖଞ୍ଜାକୁ ବାଡି ଖଞ୍ଜା ଯୁଆଡେ ଯାଉଥିବ ମୁଁ ପଛେ ପଛେ ଥିବି । କେତେବେଳେ ସଂନ୍ଧ୍ୟା ହେବ, ମୁଁ ଦୁଧ ପିଇବି ସେଇ ଦୁଧ ଡାଟିଆରେ ନିଘା ରହିଲା । ଆସ୍ତେ ଆସ୍ତେ ସବୁରିକି ଭୁଲିଗଲି । ଦୁଧ ବଦଳରେ ଖାଲି ତା ହାତଧୂଆ ପାଣି ଟୋପାକ, ସେବା ନକଲେ ଆଉ ଶୋଇଲିନି । ସବୁ କାଳକୁ ନିଆଁଲଗା ଅଭ୍ୟାସ ରହିଗଲା । ତାଙ୍କ ମାନଙ୍କଠୁ ମୋ ଖାଇବା ଟିକିଏ ନିଆରା ହେଲା । ରାଜାଙ୍କ ପତରେ ଯାହା ବଳିବ, ସେ ପ୍ରସାଦ ପରି ବଣ୍ଟା ହେବ । ସେଥିରୁ ମୋ ଭାଗ ଅଧିକ । ବୟସ ବଢିବା ସାଙ୍ଗେ ସାଙ୍ଗେ ସବୁ ଦିହ ସୁହା ହୋଇଗଲା । କିଏ ଗଲା ଅଇଲା ବକ୍ସିସ୍, ଭଲ ଶାଢୀ, କାନକୁ ନାକକୁ ଅଳଙ୍କାର ମିଳିଲା । ଥରେ ରାଜାଙ୍କ ବରାଦରେ ମୋ ବେକକୁ ଖଣ୍ଡେ ତଙ୍କିମାଳି ଗଢା ହୋଇଥିଲା । ଯାହା ଯେମିତି ଟଙ୍କା ପଇସା ପାଇଲେ, ରଖି ରଖି ସମସ୍ତେ ଅଳଙ୍କାର କରୁ । ଚମ୍ପା ମାଉସୀ ତ ସବୁରି ହେଡ୍ । ସେ ସବୁ କରେଇଦିଏ । ତା'ର ସବୁ ମହଲରେ ପ୍ରବେଶ । ଆମେ ତା'ର ବିନା ଅନୁମତିରେ ଉପର ଖଞ୍ଜାକୁ ବି ବାହାରିବୁନି ।

ମୋ କର୍ମକୁ ଜାଣ ରାଣୀ ମା'ଙ୍କର ତିନି କୁମାର ପରେ, ଜେମା ଜନ୍ମ ହେଲେ । ମୋ ଉପରେ ତାଙ୍କର ସବୁ ଭାର ପଡିଲା । ଏମିତି କି ରାତିଯାକ ମୋ କୋଡରେ ଶୋଇବେ । ରାତିରେ ତିନିଥର ନେଇ, ରାଣୀ ଆଜ୍ଞାଙ୍କୁ ଉଠେଇ, କ୍ଷୀର ଖୋଇ ଆଣି ମୋ କୋଡରେ ଶୁଆଇବି । ରାତିଯାକ ମୋ ଦେହରେ ସେଇଁ ହୋଇ ରହିଥିବେ । ଅନ୍ତ ଫାଡି ଜନମ କଲେ ବି ଆଜ୍ଞା ଏତେ ଆପଣାର ହେବନି । ସେ ଜେମା ଆଜ୍ଞା ! ଯେମିତି ବଡ ହେଲେ, ମୋତେ ଆଉ ଦଣ୍ଡେ ଛାଡିଲେନି । ମୁଁ ବି ତାଙ୍କୁ ନୟନ ପିତୁଳି କରି ରଖିଲି । ମୁଁ ଏତେ ଗୁଡ଼ିଏ କଥା ମଦାଳସା ଠାରୁ ଶୁଣିଲା ବେଳକୁ, ମୋତେ ସତେ ଯେମିତି ପିଲାଦିନର ରାଜା-ରାଣୀ ଗପ ଶୁଣିଲା ପରି ଲାଗୁଥାଏ । ମୁଁ ଅତି ସନ୍ତର୍ପଣରେ ପଚାରିଲି- ମଦାଳସା ଗୋଟେ କଥା କହିବି କିଛି ଭାବିବନିତ । ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲା- କ'ଣ କହୁଛନ୍ତି ଆଜ୍ଞା ! ଆଜି ମୋର କେଡ଼େ ଭାଗ୍ୟ ! ମନଖୋଲି ଦି'ପଦ କଥା କହିବାର ସୁଯୋଗ ମିଳିଛି, ମୁଁ ପୁଣି କ'ଣ ଭାବିବି । ମୁଁ ପଚାରିଲି- ଆଚ୍ଛା ମଦାଳସା ସେ ଦାସୀମାନଙ୍କ ଭିତରୁ କାଁ, ଭାଁ କାହାର ପିଲା ପିଲି ହୁଏନି ? ସେ କହିଲା- ହଁ ଆଜ୍ଞା କାଁ ଭାଁ କାହିଁକି କେତେ ହୁଅନ୍ତି । ଯାହାର ପିଲା ହେବ, ସେ ଆଉ ଖଞ୍ଜାରେ ରହିବନି । ସେ

ଯିବଭାରି ଉଆଁସଠୁ ଅଳ୍ପ ଦୂରରେ ଥାଏ ଗୋଲାମ ସାହି । ତାକୁ ଗୋଲା ସାହି ବି କହନ୍ତି । ସେଇଠି ରହିବେ । ତାଙ୍କ ପୁଅ ଝିଅମାନଙ୍କ ଭିତରେ ବିଭାଘର ବି ହେବ । ଉଆସରୁ ଖର୍ଚ୍ଚ-ବାର୍ଚ୍ଚ ଦିଆହେବ । ରାଜା ମଲେ ସେମାନେ ମୁର୍ଦ୍ଦାର ଉଠେଇବେ ଶୁଦ୍ଧ ହେବେ । କିନ୍ତୁ ୟା'ଙ୍କ ସାଙ୍ଗେ ଖାଇବେନି । ଆଉ ରାଜା ପିଲାମାନେ ବି ନାଉଳି (କାନଫୋଡ଼ା) ହୋଇଗଲେ, ଆମ ହାତେ ଭାତ ଖାଇବେନି । ଆଉ ସବୁ କରିବୁ । ମୁଁ ଜାଣିଲି ମଦାଳସା ମୋ କଥାର ଅର୍ଥ ଭଲ ଭାବରେ ବୁଝି ବି ସେ କଥାକୁ ଡେଇଁ ଯିବାକୁ ଚେଷ୍ଟା କଲା । ମୁଁ ବି ଆଉ ବେଶୀ ପଚାରିଲିନି ।

ମଦାଳସା କହିଲା, ହଁ ଆଜ୍ଞା ! ଜେମାଙ୍କ କଥା ପରା କହୁଥିଲି । ସେ ଯେତିକି ବଡ଼ ହେଲେ, ସେତିକି ଗୁଣର, ସେତିକି ସୁନ୍ଦର । ଆଉ ପୁଣି ଏଡ଼ିକି ଦୟାଳୁ । ଫୁଲ ଆଉ ପଶୁ ପକ୍ଷୀତ ତାଙ୍କର ଜୀବନ ହେଲା । ଯୋଡ଼େ ଲୋକ ରହିଲେ ଫୁଲ ବଗିଚା କରିବାକୁ ଆଉ ଦି'ଜଣ ଶୁଆ, ଶାରୀ, ମୟୁର, କାକତୁଆ, ବାରମାସୀ, ବଣୀ, ଆଜ୍ଞା କ'ଣ କହିବି କୋଇଲି ହଳଦୀ ବସନ୍ତ ବି ବାଦ୍ ଗଲେନି । ଏଣେ ବିଲାତୀ କୁକୁର, ବିଲାତି ବିଲେଇ, ଧଳା ମୂଷା, ନେପାଳି ମୂଷା, କୋକିଶିଆଳି, ନେଉଳ, କୁଟୁରା, ହରିଣ ଧରି ଗୋଟିଏ ଛୋଟ କାଚିଆ ଚିଡ଼ିଆଖାନା ଜାଣ । ଯେତିକି ପ୍ରକାର ଜୀବ, ସେତିକି ପ୍ରକାର ଫୁଲ । ଜେମା ବେଶଭୁଷା ହୋଇ, ବଗିଚାରେ ବୁଲି ଜୀବଜନ୍ତୁଙ୍କୁ ଖାଇବାକୁ ଦେଲାବେଳେ ମୋତେ ଲାଗେ ଇଏ ମର୍ତ୍ତ୍ୟର ନୁହେଁ, ସତେ ଅବା ସରଗରୁ ଡେଣା କଟା ପରିଟିଏ ଓହ୍ଲାଇ ଆସିଛି । ରଜାଘରେ ସିନା ଜନମ ଆଜ୍ଞା, କିନ୍ତୁ ସେ ଦେବକନ୍ୟା । ଦେବତା ଅଂଶରେ ଜନ୍ମ ହୋଇଥିଲେ । ବାଳ କାଳ କଟିଗଲା । ଯାହା କହନ୍ତି, ଦିନକୁ ଦିନ ଚନ୍ଦ୍ରକାନ୍ତି ପରି ରୂପ ବିକଶିଲା । ବିଭାଘର ପାଇଁ ବାପ ବରଖୋଜା ଲଗେଇଲେ । ବାପ ଆସି ଜୋଇଁ ଦେଖି ତିଳକ କରିଗଲେ । ରାଣୀ ମା' କୋଉଠୁ କଣ ଜାଣିଲେ କେଜାଣି, ପୁଅ ପାଠ ଶାଠ ବିଶେଷ ପଢ଼ିନି, ପୁଣି ପ୍ରକୃତି ବି ସେତେ ଭଲ ନୁହଁ । ସେଠି ଝିଅକୁ ଦେବେନି ବୋଲି, ଯେତେ ପ୍ରକାର କଟାକ୍ଷ କଲେ, ତିଳକ (ନିର୍ବନ୍ଧ) ହେଇଗଲା ପରେ ରାଜା କି ଆଉ ଶୁଣନ୍ତି, ''ଦେଲା ନାରୀ ହେଲା ପାରୀ'' । ରାଣୀ ମା'ଙ୍କର କିନ୍ତୁ ମନରେ ସୁଖ ନଥାଏ । ଜେମା ବି ଏତେ ଭଲ ମନ୍ଦ ବୁଝୁନଥାନ୍ତି । ଆମେମାନେତ ଗହଳରେ ଯିଏ ଯାହା କାମରେ ଲାଗିଗଲୁ । ରାଜ ଘରେ ଆଜ୍ଞା ! ବହୁତ ବିଧି, ଆଗତ ଚାରିମାସଠୁଁ, ସବୁ ଦାସୀମାନେ ଲାଗିଯିବୁ । ଖଲିପତ୍ର, ଖଲି ଦନା ସିଲେଇ କରିବାରେ । ପୁଣି ପାଟ ପିଢ଼ା, ପାଟକୁଲା, ସବୁ ଆମେ ତିଆରି କରିବୁ । ପିଢ଼ା ଆଉ କୁଲାରେ ପାଟକନା ପଡ଼ି ସିଲାଇ ହେବ । ଆଉ ବାସନ-କୁସନତ ସବୁ ରୂପାର । ଝିଅର ମୁଣ୍ଡ କଣ୍ଟାଠୁଁ ଗୋଡ଼ ମୁଦି, ସବୁ ସୁନା । ଜୁଅ କଉଡ଼ି ଖେଳିବା ପାଇଁ ବଣିଆକୁ ବରାଦ ହୋଇ, ଏକୋଇଶ କଡ଼ା କଉଡ଼ି ଉପରେ ସୁନା ଛପର ହେବ । ଝିଅ ଯେଉଁ ଓଳିକି ମିଠାଇ ଶାଶୁ ପାଇଁ ନେବ, ବହୁତ ମସଲା ପଡ଼ି ବଡ଼ ଲଡୁ ଭିତରେ ଗୋଟେ କରାଟରେ

ଗୋଟେ ସୁନା ମୋହର ରହିଥିବ । ଝିଅ ଶାଶୂ ହାତକୁ ଦେଇ ପ୍ରଥମ ଓଳିକି ହେବ । ଏଇ ବିଧି ବିଧାନ ସବୁ ଆମ୍ଭମାନଙ୍କ ଦାୟିତ୍ୱରେ । ତେଣେ ଜେମାଙ୍କର କ'ଣ ହେଲା କେଜାଣି ? ସବୁବେଳେ ଖାଲି କାନ୍ଦ । ତାଙ୍କୁ ବୁଝାଇବା ଭାର ମୋ ଉପରେ ପଡ଼ିଲା । ମୁଁ ଭାବିଲି, ଜେମାଙ୍କର ବର ବୋଧେ ମନକୁ ପାଉନି । ଦିନେ ବୁଝା ବୁଝି କରୁକରୁ ଜେମା ଅସଲ କଥା କହିଦେଲେ । କହିଲେ, 'ଧାଇମା ମୁଁ ତତେ ଆଉ ମୋ ଚିଡ଼ିଆଖାନାକୁ ନ ନେଲେ ଜମା ଯିବିନି' । ଜେମାଙ୍କର କ'ଣ ହେଲା ନହେଲା କେଜାଣି ମୋ ହାତରେ ସତେ ଅବା ଚାନ୍ଦ ଖସି ପଡ଼ିଲା । ମୁଁ ଜେମାଙ୍କୁ ଛାଡ଼ି ରହିଥାନ୍ତି କେମିତି । ସତକୁ ସତ ରାଣୀ ମା'ବି ଆଉ କେଉଁଥିରେ ଊଣା କଲେନି । ରାଣୀମା'ଙ୍କର ଭାରି ଭରସା ମୋ ଉପରେ । ମୋ ବାଦ୍ ଫୁଲ ଦାସୀକି ମିଶାଇ, ଆଉ ଦି'ଜଣ ଦାସୀ, ଫୁଲ ଗଛରୁ ଭଲ ଭଲ ଚାରା, ସବୁତିକ ପଶୁ-ପକ୍ଷୀ, ତାଙ୍କ ପାଇଁ ଦି'ଟା ନୌକର, ଏମିତି ଜାଣ ଗୋଟେ ସର୍କସ ପାଟୀ, ଆମେ ଜେମା ସାଙ୍ଗେ ଆସିଲୁ ।

ଆଜ୍ଞା କେଡ଼େ ଆନନ୍ଦରେ, ନୂଆ-ଜାଗା, ନୂଆ-ରାଜା, ଜେମାଙ୍କର ନୂଆ ଖେଳଘର ଦେଖି ମନ ଭାରି ଆନନ୍ଦ ହେଉଥିଲା । କିନ୍ତୁ କ'ଣ ହେଲା କେଜାଣି, ଆଜି ଦେଖିଲେ ହରିଣ ମଲାଣି ତ, କାଲି ଠେକୁଆ, ତହିଁ ଆରଦିନ କୁଟୁରା, ଏକା ଦିନକେ ଦୁଇ ତିନି ମୂଷା, ସେଇଠୁ ପକ୍ଷୀଙ୍କ ପାଳି । ସଭା ଆଗ ପୁଚ୍ଛ ଥିବା ଅଣ୍ଡିରା ମୟୁର, କାକତୁଆ, ଶୁଆ, ଦିନେ ଦି'ଦିନରେ ଏମିତି ମରିବାକୁ ଲାଗିଲେ । ଜେମାଙ୍କ ମୁହଁ ଏକଦମ୍ କଳାକାଠ ପଡ଼ିଯାଉଥାଏ । ମୁଁ ବିକଳରେ, ଶୁଆ-ଶାରୀ, ବିରାଡ଼ି, କୁକୁର, ଏଇ ଗଣ୍ଡାକ ଉଆସ ଭିତରକୁ ଘେନି ଆସିଲି । ନିତି ଜେମାଙ୍କ ହାତରେ ତାଙ୍କୁ ଖୁଆଏ । ଜେମାଙ୍କ ମନ ଟିକିଏ ଆନ-ମାନ ହୋଇଯିବ ବୋଲି ମୁଁ ଭାବୁଥାଏ । ମୁଁ ଯାହା ଜାଣୁଥାଏ ଆଜ୍ଞା, ଜେମାଙ୍କର ରାଜା ସାହେବଙ୍କ ଆଡ଼କୁ ଜମା ମନ ନଥାଏ । ତାଙ୍କ ଉଆସର ତ ନିୟମ ରାଜା ତାଙ୍କ ଉଆସରେ, ରାଣୀ-ରାଣୀଙ୍କ ଉଆସରେ ରହନ୍ତି । ଯେଉଁ ଦିନ ନାହାକ ପଣ୍ଡିତେ ଆସି ଦିନ ଧାର୍ଯ୍ୟ କରିବେ, ସେହିଦିନ ସେତିକି ବେଳକୁ ଡାକୁଆ ଡାକିବ, ରାଜା ରାଣୀଙ୍କ ଉଆସକୁ ବିଜେ କରିବା ହେବେ । ତେଣେ ପଣ୍ଡିତେ ମଝିରେ ମଝିରେ ବେଳ ଲଗ୍ନ କହୁଥିବେ । ଡାକୁଆ ଡାକୁଥିବ । ଶୁଭ ବେଳାରେ କୁଆଡ଼େ ଭାଗ୍ୟବାନ ରାଜକୁମାର ଜନ୍ମ ହେବେ । ଏଗୁଡ଼ାକ ଜମା ଜେମାଙ୍କୁ ଭଲ ଲାଗେନି । କଅଣ କରିବା, ''ଯେଉଁ ଦେଶ ଯାଇ, ସେ ଫଳ ଖାଇ ।'' ଯାହାର ଯାହା ନିୟମ, କେତେ ଦିନକେ, ଯୁବରାଜ ଜନ୍ମ ହେଲେ । ମୋ ଗୋଡ଼ ଆଉ ତଳେ ଲାଗୁନଥାଏ । ହେଲେ କଅଣ ହେବ । ଜେମାଙ୍କର ସବୁବେଳେ ମନ ଭିତରେ ଗୋଟେ ଦୁଃଖ ରହିଗଲା ପରି ମୋତେ ଲାଗୁଥାଏ । ଭାବିଥିଲି ରାଜକୁମାରଙ୍କୁ ଦେଖି ଜେମା ସବୁ ଭୁଲିଯିବେ । ଜେମା ଭୁଲିବେ କଅଣ ? ସେତେବେଳକୁ ଫୁଲ ଦାସୀ ପୁରା ମୁରବୀ ବନିଗଲାଣୀ । ସେ ଆଉ ଜେମାଙ୍କୁ ଖାତିରି କରୁ ନଥାଏ । ହେଲେ ଆଜ୍ଞା ଭଗବାନ ବଡ଼ଲୋକ । ସେ ସବୁ ସହିବେ ଗର୍ବ ସହିବେନି ।

ଯା ଭିତରେ କ'ଣ ହେଲା କେଜାଣି, ଆମେ ସବୁ ଭାବିଲୁ ଫୁଲ ଦାସୀ ସିନା ଗୋଲା-ସାହୀ ଯିବ । ସେ କଥା ନହୋଉ ରାତା ରାତି ତାକୁ ଜିଲ୍ଲା ପାରି କରି ଦିଆଗଲା । କୁଆଡ଼େ ମଲା କି ଗଲା କେଜାଣି । ଆମେ କେହି ତାର ଟେର ପାଇଲୁନି । କୁଆଡ଼େ ଗଲା ବୋଲି ଦୁଃଖ ଯେତିକି ଲାଗିଲା, ସୁଖ ବି ସେତିକି ଲାଗିଲା ଭାବିଲି ମୋ ଜେମାଙ୍କର କଣ୍ଟାଗଲା ।

ଦୁଇ ବର୍ଷ ପୁରିଛି କି ନାହିଁ ଜେମାଙ୍କର ପୁଣି ସାନକୁମାର ଜାତ ହେଲେ । ସାନକୁ ପାଞ୍ଚ ବରଷରେ ଦୁଇ ଭାଇଙ୍କର ଜାକ ଜମକରେ ନାଉଳି ହେଲା । ବାପ ତ ବେଶୀ ପାଠ ଷାଠ ପଢ଼ି ନାହାଁନ୍ତି । ଜେମା କିନ୍ତୁ କଟାଳ କରି, ଦିନେ ଦେୱାନକୁ ଡକାଇ ରାଜା ସାହେବଙ୍କୁ କହି ଦୁଇ କୁମାରଙ୍କର ପାଠ ପଢ଼ା ପାଇଁ ବାଧ୍ୟ କଲେ । ଦେୱାନ ବାହାଦୂର ଦୁଇ କୁମାରଙ୍କୁ ନେଇ ରାଜସ୍ଥାନରେ ରାଜକୁମାରଙ୍କ ସ୍କୁଲରେ ନାଁ ଲେଖାଇ ପଢ଼ାପଢ଼ିର ବ୍ୟବସ୍ଥା କରାଇଲେ । ସେତେବେଳକୁ ପୁଣି ସାନକୁମାର ପେଟରେ । କିନ୍ତୁ ଜେମାଙ୍କର ଜମା ଏତେ ଦୂରରେ ପିଲାଙ୍କୁ ଛାଡ଼ିବାକୁ ମନ ନଥିଲା । ହେଲେ ଜେମା ତ ଭାରି ଧୀରସ୍ଥିର, ଆଜ୍ଞା ! ମଲା ମାଛିକି ମ' କହନ୍ତିନି । ଆଉ ରାଜାଙ୍କ କଥାରେ ପ୍ରତିବାଦ କଲେନି । କହିଛି ପରା ଜେମାରୁ ରାଣୀ ହୋଇଗଲେ, ଦେହରେ ମଶା ବସିଲେ ଦାସୀ ମାରିଦେବ । ମାଛି ବସିଲେ ଦାସୀ ଉଡ଼ାଇଦେବ । ପିଠି କୁଣ୍ଡେଇ ହେଲେ ସୁନା ଶାମୁକାରେ ସିନା କୁଣ୍ଡିଆ ହେବ ଆଜ୍ଞା ! କିନ୍ତୁ ନିଜେ ନୁହେଁ ସେହି ଦାସୀ । ଆଉ ଯୋଡ଼ିକ ଯାକ ପିଲା ଏତେ ଦୂରରେ  ତାଙ୍କ ଦିନ କେମିତି ସରିବ ? ସବୁବେଳେ କାନ୍ଦ କାନ୍ଦ ଶୁଖିଲା ମୁହଁ । ମତେ ଭାରି ବାଧେ । ଆମ ଜେମାଙ୍କ ପ୍ରତି ରାଜାଙ୍କ ଉଷୁମ ଜମା ନଥାଏ ।

ଏଣେ ରାଜାସାହେବ ପଲେ ହୁଣ୍ଡାଗୁଣ୍ଡା ପାଖ ଲୋକ ଧରି ମଉଜ ମଜଲିସରେ ଉତ୍ପାତ ହେଉଥାନ୍ତି । ଦିନେ ପଦେ ମନ ଘିନି ଜେମାଙ୍କୁ କ'ଣ କହିବା କି, କୁଆଡ଼େ ଯିବା ଆସିବା କରିବା ଆନନ୍ଦ ଉତ୍ସବ କି ତୀର୍ଥ ବାର୍ଥ କିଛି ନାହିଁ । ରାଜାଙ୍କ କଥା ରାଜାଙ୍କ ଉଆସରେ । ଦିନେ କ'ଣ ହେଇଛି ରାତି ଘଡ଼ିଏ ଅଛି । ସିଂହ ଦରଜା ଫିଟିନି, ବାଡ଼ି ଦରଜାରେ କିଏ ବାଡ଼େଇଲା । ମୁଁ ଦୁଆର ଖୋଲିଲା ବେଳକୁ ସେହି ରାଜାଙ୍କ ପାଖ ଲୋକରୁ ଲଫଙ୍ଗା ଗୁଣ୍ଡା ଚାରିଟା । ହାତରେ ତଡ଼ା, ମୁଣ୍ଡରେ ପଗଡ଼ି, ଆଖିରେ କଳା ଚଷମା, ତାଗେଡ଼ା ତାଗେଡ଼ା ନିଶ । କାଳ ପୁରୁଷ ପରି ଚେହେରା । ଗୋଟିଏ ଝିଅର ପାଟିରେ ଲୁଗାଭିଡ଼ା ହୋଇଛି ହାତଗୋଡ଼ ବନ୍ଧା ହୋଇଛି, ଆଣି ଆମ ଖଞ୍ଜାରେ ଶୁଆଇ ଦେଇ ଯିଏ ଯୁଆଡ଼େ ଚମ୍ପଟ । ପଛରେ ସିନା ଅନୁମାନ କଲି ଜାଣିଲି ଆଜ୍ଞା ! ନହେଲେ ଜମଦୂତ ପରି ଦିଶୁଥାଆନ୍ତି । ଦେଖିଦେଇ ମୋ ପିଳେହି ପାଣି ହୋଇଗଲା । ଆମେ ସମସ୍ତେ ତାକୁ ଦେଖି ତାଟକା ହୋଇଗଲୁଣି । ତେଣୁ ରାଜାଙ୍କ ଉଆସରୁ ଖବର ଆସିଲା, ସୁରଙ୍ଗିଣୀଙ୍କି ଚଞ୍ଚଳ ସେବା ଯତ୍ନ କରି ସାଷ୍ଟାଙ୍ଗ କର । ଆମେ ହାତ ଗୋଡ଼ ଫିଟେଇ, ପାଣି ଘେରିକା ମାରି, ଛିଞ୍ଚା ବିଞ୍ଚା କରି ଉଠେଇଲୁ । ବଡ଼ କଷ୍ଟରେ  ଉଷୁମ ଦୁଧ ଟିକିଏ ପିଆଇଲୁ । ରସୁଣ ତେଲ ଫୁଟାଇ ଦେହରେ ମାଳିସ କରି, ତୁନି ତୁନି ପଚାରିଲି ଇଏ

କଥା କଣ ସୁରଙ୍ଗିଣୀ ? ସେ ମୋତେ କଟମଟ କରି ଚାହିଁ କହିଲା, ମୋ ନାଁ ନୀଳମଣୀ । ମୁଁ ସୁରଙ୍ଗିଣୀ ନୁହେଁ । ମୁଁ ଜାଣିଲି ଇଏ ରାଜା ସାହେବଙ୍କ ଗେଲ ବସରିଆ ଶୁଭ ନାମ । ଏଣେ ରାଣୀଙ୍କ ପାଖୁ ରାଜାଙ୍କ ଉଆସରୁ ଖବର ଆସିଛି, ସୁରଙ୍ଗିଣୀଙ୍କି ଦେଖି ତାର ଭଲକରି ଯତ୍ନ ନେବାକୁ । ଜେମା ତ ମୋର ଅଟଳ ମହାମେରୁ । ଧୀରେ ଧୀରେ ଓହ୍ଲାଇ ଆସି, ଖମ୍ଭକୁ ଆଉଜି ଯେମିତି ଠିଆ ହୋଇଯାଇଛନ୍ତି, ସୁରଙ୍ଗିଣୀ ଘୁଞ୍ଚୁରି ଯାଇ ଜେମାଙ୍କ ଦୁଇଗୋଡ଼ ଧରି ଦୁମ୍ ଦୁମ୍ ମୁଣ୍ଡ ପିଟିଦେଇଗଲା । କହିଲା ତୁମେ ମୋ ମା' ମୋତେ ରକ୍ଷାକର । ଜେମା ଲଇଁପଡ଼ି ତା ମୁଣ୍ଡ ଟେକିଦେଲା ବେଳକୁ, ଜେମାଙ୍କ ହାତଯାକ ରକ୍ତ ଜୁଡୁବୁଡୁ । ସେତେବେଳେ ଆଞ୍ଚା ଜେମାଙ୍କୁ ଦେଖିଲେ, ଲାଗୁଥାଏ ଜେମାଙ୍କ ଦେହର ରକ୍ତ କ'ଣ ସୁରଙ୍ଗିଣୀ ମୁଣ୍ଡଦେଇ ନିଗିଡ଼ିଗଲା କି ? ଜେମାଙ୍କ ଓଠ ମୁହଁ ଶେତାପଡ଼ି ତାର ପାଖରେ ଦୁମ୍‌କରି ବସି ପଡ଼ିଲେ । ଏଣେ ଜେମାଙ୍କୁ ଦେଖିବୁ ନା ତା ରକ୍ତ ପୋଛି ପୋଡ଼ା କନା ମଡ଼େଇବୁ । ଯାହା ହେଉ ଦୁହେଁ ସୁସ୍ଥ ହେଲେ । ଜେମା ଉପରକୁ ଗଲେ । ସୁରଙ୍ଗିଣୀକି ଆଣି ମୋ ଖଟରେ ଶୁଆଇଲି । ଏମିତିରେ ତିନି ଚାରି ଦିନ କଟିଗଲା । ସୁରଙ୍ଗିଣୀର ସବୁ ଇତିହାସ ଜେମା ଜାଣିଲେ । ଏଇ ଅତ୍ୟାଚାରୀ ରାଜାଙ୍କ ବରକନ୍ଦାଜମାନେ କେତେ ଦିନରୁ ସୁରଙ୍ଗିଣୀଙ୍କି ଠାବ କରିଥିଲେ । ତା'ର ମା' ନଥିଲା । ବାପର ଏକମାତ୍ର ଝିଅ । ଭାରି ଜଭର, ଆଉ ମୁହଁ ଖୋର । ଯାହା କହନ୍ତି ନବାବ ପୁଅକୁ ଜବାବ୍ ଦେଲାବାଲା । ବଳିଲା ପରି ମଜବୁତିଆ ଦେହ । ବେଶୀ ଗୁଡ଼େ ସୁନ୍ଦରୀ ନୁହେଁ । କିନ୍ତୁ ଦେହରେ ଗୋଟେ ଠାଣୀ ଅଛି । ସତେଯେମିତି ଲାବଣ୍ୟମଇ । କୁନ୍ଦିଲାପରି ଗୋଡ଼ ହାତ । ପିଟା ହେଲାପରି ଦେହ, ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣ । କୁଞ୍ଚୁକୁଞ୍ଚିଆ ବାଳପିଠିଏ । ନୁହେଁ ଡେଙ୍ଗା, ନୁହେଁ ଗେଡ଼ା । ବାପ କୁଆଡ଼େ ଦିନେ ଦୁଇ ଦିନି ବାହାରକୁ ଗଲେ ଝିଅର କାହାକୁ ଖାତିରି ନଥାଏ । ଖଣ୍ଡେ କଟୁରୀ ମୁଣ୍ଡ ଉପରେ ଥୋଇ ଏକା ଏକା ଘରେ ଶୁଏ । ଏଇ ଟାଣ ପଣର କରାମତି କେତେ ଦିନରୁ ରାଜାଙ୍କ କାନରେ ପଡ଼ିଥିଲା । ସେ ଝିଅ ପାଇଁ ତା ବାପକୁ ନାନା ପ୍ରକାର ସଙ୍କେତ ଦିଆହେଉଥିଲା । ବାପ ବି ସେମିତି ଚତୁର । ଝିଅ ଯାହା ଆଉ କେତେଦିନ ରହିଥାଆନ୍ତା । ଏମାନଙ୍କୁ କାବା କରିଦେଇ ଝିଅଟିକୁ ଟିକିଏ ଦୂର ଗାଁରେ ବିଭା କରିଦେଲା । ଝିଅ ଶାଶୁଘରୁ ଫେରିଆସି ଦେଖେଇ ଶିଖେଇ ଏମାନଙ୍କୁ ଟାହିଟାପରାରେ ଯା'ଙ୍କ ନାକ ନିଶତଳକୁ କରିଦେଲା । ସେଇ ରାଗରେ ଝିଅ ଦୋଡ଼ପାଳି ଶାଶୁଘର ଗଲା ପୂର୍ବରୁ, ଦଳବଳ ବାନ୍ଧି ରାତି ରାତି ଇଏ କାମ ।

ସେହିଦିନ ରାଜା ସାହେବ, ମୁଣୋହିଁରେ ବସି, ଡ଼କେଇ ପଠେଇଲେ ତାଙ୍କ ବାପାଙ୍କ ଅମଳ ଦାସୀ କଉତୁକୀକି । କଳା କଉତିକୀ ହାତରେ ରାଣୀଙ୍କ ପାଖକୁ ଖବର ପଠେଇ ଦେଲେ ଯେ, ସୁରଙ୍ଗିଣୀ ପାଇଁ ଗହଣା ଆଉ ଶାଢ଼ୀ ଦେଇ ସଜବାଜ କରି, ରାତିକୁ ରାଜ ଉଆସକୁ ପଠାଇବା ଦାୟିତ୍ୱ ନେବେ । ସେ ସବୁବେଳେ ଦୁଃଖିତ ଅଛି । ଯା'ଙ୍କର ରାଣୀ ହିସାବରେ ତା'ମନ ଆନନ୍ଦ କରି ଭୁଲାଭୁଲି କରାଇବା କଥା । କଉତୁକୀ

ବି ବଡ଼ କୁଣ୍ଠିତରେ ରାଣୀଙ୍କୁ ଖବର ଦେଇ, ସୁରଙ୍ଗିଣୀଙ୍କୁ ରାତିକି ପ୍ରସ୍ତୁତ ହେବା ପାଇଁ ଜଣାଇଦେଲା । ପ୍ରାୟ ଦିନ ରତ ରତ ହେଉଛି, ଜେମା ତଳକୁ ଆସିଲେ । ଆମ ଦୁଆର ମୁହଁକୁ ଆସି ଯେମିତି କବାଟରେ ହାତ ଦେଇ ଠିଆ ହୋଇ ଯାଇଛନ୍ତି , ପୁଣି ଥରେ ବିଜୁଳି ପରି ସୁରଙ୍ଗିଣୀ ଯାଇ ତାଙ୍କ ପାଦ ଉପରେ କଚାଡ଼ି ହୋଇ ପଡ଼ିଲା । କହିଲା, ରାଣୀ ମା' ମୁଁ ତୁମର ଝିଅ । ତୁମର ଧର୍ମ ହେବ । ମୋତେ ଟିକିଏ ବିଷ ଦେଇଦିଅ । ନାଇଁ ତ ତୁମ ଦାସୀମାନଙ୍କୁ କହ, ମୋତେ ବାଧା ଦେବେନି ମୁଁ ଦଉଡ଼ି ଦେଇ ଏ ଖଞ୍ଜାରେ ଝୁଲି ପଡ଼ିବାକୁ ଅନୁମତି ଦିଅ । ରାଣୀ ଟିକିଏ ଛିଡ଼ା ହୋଇ ସୁରଙ୍ଗିଣୀଙ୍କି କହିଲେ, ତୁ ଲୁଗାପଟା ସଜଡ଼ାସଜଡ଼ି କରି ପିନ୍ଧ୍ । କଉତୁକୀକି କହିଲେ, ତୁ ୟା'କୁ ନେଇ ଏ ସୀମା ପାରି କରି, ତା ବାପଘର ପାଖେ ଛାଡ଼ିଦେବୁ । ଯେତେ ଶୀଘ୍ର ପାରୁ ଫେରି ଆସିବୁ । କିଛି ଟଙ୍କା ଆଉ ହାତରୁ ସୁନା ମୁଦିଟିଏ କାଢ଼ି ତା' ହାତରେ ଦେଲେ । କହିଲେ, ବାପକୁ କହିବୁ ରାତାରାତି ଗଡ଼ଜାତ ପାରି କରି ତୋତେ ମୋଗଲ ବନ୍ଦୀରେ ଛାଡ଼ିଦେବ । ସେ ମା' ବୋଲି ବିକଳରେ ଡ଼ାକି, ଗୋଡ଼ତଳେ ମୁଣ୍ଡିଆ ମାରିଲା । ଜେମା କହିଲେ ହଁ ଲୋ ମା' । ମୋର ଝିଅ ନାହିଁ, ତୁ ମୋର ଝିଅ, ହେଲେ ସୁଦ୍ଧା ସେ ଚଣ୍ଡାଳ ତୋ ବାପା ହେବାକୁ ଯୋଗ୍ୟ ନୁହଁନ୍ତି । ଏତିକି କହି ଜେମା ଉପରକୁ ଚାଲିଗଲେ । କଉତୁକୀ ପ୍ରାୟ ତିନିଘଣ୍ଟା ଭିତରେ ଫେରି ଆସିଲା । କିଛି ସମୟ ପରେ ଧଇଁସଇଁ ହୋଇ ଯାଇ ରାଜାଙ୍କୁ ଜଣାଇଲା । ଯେ, ସୁରଙ୍ଗିଣୀ ଏଇ ସାଙ୍ଗେ ସାଙ୍ଗେ ପାଇଖାନା ଯିବା ବାହାନାରେ ଦଉଡ଼ି ଦଉଡ଼ି ପଳେଇଲା । ମୁଁ ଖଣ୍ଡେଦୂର ଗୋଡ଼ାଇ ଗୋଡ଼ାଇ ଅନ୍ଧାରରେ ଆଉ ଦେଖି ପାରିଲିନି ।

କଉତୁକୀ ପାଟିରୁ କଥା ସରିଛି କି ନାହିଁ, ରାଜାଙ୍କର ସାଙ୍ଗେ ସାଙ୍ଗେ ଦୂତ ପ୍ରେରଣ ହୋଇଗଲା । ସତେ ଯେମିତି ରାଜା ଅନ୍ଧାର ଭେଦି, ସାତତାଳ ପାଣି, ଚଉଦ ତାଳ ପଙ୍କ ଭିତରୁ କେଶବତୀ କନ୍ୟାକୁ ଠାବ କରି ପକାଇବେ । କିଛି ସମୟ ପରେ ଖବର ଆସି ପହଞ୍ଚିଗଲା ଯେ, ବହୁତ ବେଳରୁ ତା ବାପ ତାକୁ କୁଆଡ଼େ ନେଇ ଗଲାଣି । ସେଇଠି ତ କଉତୁକୀର ଛାମୁଦାନ୍ତ ଦୋହଲିଗଲା । ରାଜାଙ୍କର ରାତିଯାକ ମଦର ପ୍ରଳାପ ଚାଲିଲା ସେଇଥିରୁ ଦି ଚାରିଟା ଷଣ୍ଢା ଭେଣ୍ଡା ଜଗି ରହିଥାନ୍ତି । କେଜାଣି ପାହାନ୍ତିଆକୁ ଘଡ଼ିଏ ଶୋଇ ପଡ଼ିଲେ କି କ'ଣ ? ସେଦିନ ଜାଣ ରାତିରେ ଖାଅ ପିଅ ବନ୍ଦ । ଜେମା ଏଣେ ଦଶମ୍ୟାସୀ ।

ଜେମା ସବୁଦିନ ଅତି ଭୋରରୁ ଉଠନ୍ତି । ମୁଁ ରାତିରୁ ଗରମ ପାଣି କରି, ତେଲ ଘଷି, ମୁଣ୍ଡ କୁଣ୍ଡେଇ, ସିନ୍ଦୁରା ଫାଟିଲା ବେଳକୁ ଜେମାଙ୍କ ମାଜେଣା ସାରି ଦେଇଥାଏ । ତା'ପରେ ତାଙ୍କର ଜାଣ ତିନିଘଣ୍ଟା କଟିଯାଏ ପୂଜା ଘରେ । ପୂଜା ଘରୁ ବାହାରି ବାଦାମ ସରବତ ଖାଇ, ତଳକୁ ଆସୁ ଆସୁ, ଜାଣ ନଅଟା ପାଖାପାଖି । କୁକୁରକୁ ଦୁଧ ବିସ୍କୁଟ, ବିରାଡ଼ିକୁ ଦୁଧ ମୁଢ଼ି, ତା' ଉତାରୁ ଶୁଆକୁ କଇଁଚି କାକୁଡ଼ି, ପାଚିଲା ଲଙ୍କା, ବରଫଳ,

ପିଜୁଳି, ଆମ୍ବ ଯେଉଁଦିନ ଯାହା ; ସାରୀକୁ ଦୁଧ, ବୁଟ, ଛତୁ ଏତକ ସେ ନିଜ ହାତରେ ଖୁଆଇବେ । ମୁଁ ଜେମାଙ୍କ ହାତକୁ ସବୁ ବଢ଼େଇ ଦେଲା ବେଳକୁ ସେ ଜୀବ ଗୁଡ଼ିକ, ସତେ ଯେମିତି ପେଟର ଛୁଆ । କିଏ ମାଆ- ମାଆ, କିଏ ମିଆଉଁ- ମିଆଉଁ, ମଇନା ମଇନି ଦୁହେଁ- ଜେମାମଣୀ ଜେମାମଣୀ ବୋଲି ଯିଏ ଯାହା ଭାଷାରେ ଡ଼ାକି ଲାଗିବେ । ସେଦିନ ସବୁ ସାରି, ରୂପ ଆଉ ରୂପା ଦୁଇଟି ଶୁଆଙ୍କୁ ବରଫଳ ଖୁଆଉଛନ୍ତି । ସେମାନେ ଲୋଟଣୀ ଭାଙ୍ଗି, ସାନ ପିଲାଙ୍କ ପରି, ପିଜୁଳି ଦିଅ ବୋଲି ଅଳି କରୁଛନ୍ତି । ରାଣୀ ମା' ଦେବା ହୁଅନ୍ତୁ । ଭାରି ଭୋକ, ଭାରି ଭୋକ । ସବୁଦିନେ ଆମେ ସମସ୍ତେ ଜେମା ଆଉ ତାଙ୍କ ପଶୁପକ୍ଷୀଙ୍କ ଆଦର ଦେଖି, ବିଭୋର ହୋଇଯାଉ । ସେଦିନ ହଠାତ୍ କ'ଣ ହେଲା ବୋଲି ମୁଁ ବୁଲିପଡ଼ି ଚାହିଁଲା ବେଳକୁ, ରାଜା ପହଞ୍ଚି, ଗୋଟେ ବ୍ରହ୍ମ ଚାପୁଡ଼ା କଷି ଦେଇ ଜେମାଙ୍କ ଗାଲରେ, ହାରାମଜାଦ, ବେଇମାନୀ, ମାଇକିନିଆ କହି ଯେଡ଼ିକି ବେଗରେ ଆସିଥିଲେ, ସେମିତି ବିଜୁଳି ବେଗରେ ଚାଲିଗଲେ । କେଡ଼େ ଚଞ୍ଚଳ ଆଜ୍ଞା କ'ଣ ହୋଇଗଲା । ଆମେ କେହି କିଛିବୁଝିବା ପୂର୍ବରୁ, ଜେମା ତ' କାହାକୁ କିଛି ନକହି ଉଠି ଚାଲିଗଲେ ଉପରକୁ । ଶୋଇବା ଘରୁ ଦୁଆର ବନ୍ଦ । ଆମେ ଯେତେ ଯିଏ ଡ଼ାକି ଡ଼ାକି ଥକିଗଲୁ । ଆଉ ଦୁଆର ଫିଟିଲାନି । ରାଜାଙ୍କ ରାଗ କମିଗଲା ପରେ ବି, ଭାରି ବ୍ୟସ୍ତରେ ଜଣ ଜଣ କରି ଲୋକ ପଠାଉଥାନ୍ତି । କିନ୍ତୁ ସବୁ ବୃଥା । ଉଆସରେ କିଏ କ'ଣ ଖାଇଲେ ନ ଖାଇଲେ, ଆଜ୍ଞା ମୁଁ ପୁରା ଦି'ଦିନ ପାଟିରେ ପାଣି ଦେଇନି । ଖାଲି ସେଇ ଦୁଆର ମୁହଁରେ ବସିଥାଏ । ତିନିଦିନ ଦିନ ରାଜା ନର୍ସକୁ ଡ଼କାଇ ପଠାଇଲେ । ସାଇବାଣୀ ନର୍ସ, ଜେମାଙ୍କୁ ଭାରି ସୁଖ ପାଏ । ଜେମାଙ୍କୁ ଇଂରାଜୀ ପଢ଼ାଇଦିଏ । ଜେମା ତା ସାଙ୍ଗେ ଇଂରାଜୀରେ କଥାବାର୍ତ୍ତା ହୁଅନ୍ତି । ତା'ରି ଡ଼ାକରେ, ଦୁଆର ଫିଟିଲା । ସେତେବେଳକୁ ଜେମା ଦି'ଦିନି ଗର୍ଭ ଯନ୍ତ୍ରଣା ଭୋଗିଲେଣି । ନର୍ସ ସେ ଘରେ ବହୁତ ସମୟ ରହିଲା ପରେ ଦୁଧ ମଗାଇ ଜେମାଙ୍କୁ ପିଆଇଲା । ସେଇଠି ଜଗି ରହିଲା । ମୁଁ ଗରମ ପାଣି ନେଇ ଜେମାଙ୍କ ନିତ୍ୟକର୍ମ ମାଜଣା ସବୁ କରାଇଦେଲି । ସନ୍ଧ୍ୟା ବେଳକୁ ସାହେବ ଡ଼ାକ୍ତର ଆସିଲେ । ସେହିଦିନ ରାତି ଅଧରେ, ଛୋଟ କୁମାର ଜନ୍ମ ହେଲେ । ସାଙ୍ଗେ ସାଙ୍ଗେ ଗହଳ ଚହଳ ଲାଗିଗଲା । ନାହାକ ପଣ୍ଡିତ ଆସି ଯାହା ବିଧି ବିଧାନ ହେଲା । ସକାଳୁ ବାଳଗୋପାଳ ସେବା, ମିଠେଇ ବଣ୍ଟା, କାଙ୍ଗାଳ ଭୋଜନ, ସବୁ ରୀତିମତ ହେଲା । ଧୀରେ ଧୀରେ, ଜେମାଙ୍କର ମନ ପରିବର୍ତ୍ତନ ହେଲା ସିନା, ରାଜା ସାହେବ ଯେତେଥର ଆସି, ପୁଅକୁ ଦେଖି ଯାହା ପଚାରନ୍ତି ଜେମା ମୁହଁ ଟେକି ଚାହାଁନ୍ତିନି । ଅତି ବେଶୀ ପଚାରିଲେ ହଁ କି ନାଁ ପଦେ ମୁଣ୍ଡ ହଲେଇ ଦିଅନ୍ତି ।

ଯା' ଭିତରେ ଆଜ୍ଞା କଉତୁକୀ କାହାଠାରୁ ଖବର ପାଇ ଜାଣିଲାଯେ, ନୀଳମଣିକୁ ସେହିଦିନ ତା ବାପ ସିଧା ସିଧା ନେଇ ଶାଶୁଘରେ ଛାଡ଼ିଦେଇ ଆସିଲା । କିନ୍ତୁ ତା ବର, ରୋକ୍ ଠକ୍ କହିଦେଲା ଯେ, ମୁଁ ଆଉ ତାକୁ ଗ୍ରହଣ କରିବିନି । ନୀଳମଣି ସମସ୍ତଙ୍କ

ଆଗରେ ନିଜେ ତା ସ୍ୱାମୀଙ୍କି ପଚାରିଲା । ମୋର କିଛି ଦୋଷ ନାହିଁ । କି ମୋ ଦେହରେ କଳାଦାଗ ଲାଗିନି । ତୁମେ କ'ଣ କହୁଛ କହ ! ମୋତେ ଗ୍ରହଣ କରିବନି ? ତା' ସ୍ୱାମୀ କହିଥିଲା, ପୁରୁଷ ସିନା ପିତଳ ହଣ୍ଡା, ମାଜି ମୁଜି ଦେଲେ ସଫା । ମାଇପିତ ମାଟି ହାଣ୍ଡି । ଥରେ କଳା ପଡ଼ିଗଲେ ଆଉ କଣ ସଫାହୁଏ ? ନୀଳମଣି କହିଲା- ତା ହେଲେ କ'ଣ ମାଟି ହାଣ୍ଡିଟାକୁ ଭାଙ୍ଗିଦେବି । ସ୍ୱାମୀ ଆଉ କିଛି ଉତ୍ତର ଦେଇ ନଥିଲା । ପରିବାରର ସମସ୍ତେ ବି ନୀରବ ରହିଲେ । ସେହି ଦିନକ ଯାକ ଘରକୁ ନ ଯାଇ ନୀଳମଣି ଟାଙ୍କ ବାଡ଼ି ପିଣ୍ଡାରେ ବସିଲା । ତହିଁ ଆରଦିନ ବଡ଼ି ସକାଳୁ ଦେଖିଲା ବେଳକୁ ଗୋଡ଼ ହାତରେ ଲୁଗା କାନି ଚିରି ଗଣ୍ଠି ପକେଇ, ବାଡ଼ି ପୋଖରୀରେ ମୁହଁ ମାଡ଼ି ଭାସୁଛି । ଏତକ ଶୁଣିଲା ପରେ ଜେମାଙ୍କ ସଜଡ଼ା ମନ ପୁଣି ବିଗିଡ଼ି ଗଲା ଯେ ଗଲା । ଆଉ ସଜାଡ଼ିବାର ଅବକାଶ ମିଳିଲାନି । ଦିନେ ଜେମା ସ୍ୱପ୍ନ ଦେଖିଲେ, ରାଜସ୍ଥାନରେ ବଡ଼ କୁମାର କୁଆଡ଼େ ହଜି ଯାଇଛନ୍ତି । ସାନ କୁମାର ଏଣେତେଣେ କାନ୍ଦି କାନ୍ଦି ବୁଲୁଛନ୍ତି । ତହିଁ ଆରଦିନ ଜେମା ଦେବାନ୍‌କୁ ଡାକି ପିଲାଙ୍କ ଖବର ନେବାକୁ କହିଲେ । କିନ୍ତୁ ସେତେବେଳକୁ ରାଜା ଓ ଦେବାନ ବାହାଦୂର ଟେଲିଗ୍ରାମ ପାଇ ଜାଣି ଯାଇଛନ୍ତି ଯେ ମଝିଆ କୁମାର ସେଇଠି କଲେରାରେ ଚାଲିଯାଇଛନ୍ତି । ତାଙ୍କ (ଶବ) ବରଫରେ ରଖାଯାଇଥିଲା । ସେ କଥା ଜେମାଙ୍କୁ ଲୁଚେଇ କୁମାରଙ୍କୁ ଦେଖିବା ବାହାନାରେ ରାଜା ଓ ଦେୱାନ ଦୁହେଁ ଯାଇ ସେଇଠି କ୍ରିୟା କର୍ମ ସାରି ଆସିଲେ । ଆଉ ଜଣା ପଡ଼ିଯିବା ଭୟରେ ଯୁବରାଜଙ୍କୁ ନଆଣି ସେଇଠି ପୁଣି ରଖେଇଦେଇ ଆସିଲେ । ସେମାନେ ଆସି ପହଞ୍ଚିବା ପୂର୍ବରୁ ଯୁବରାଜଙ୍କର ଖଣ୍ଡିଏ ଚିଠି ଆସି ପହଞ୍ଚି ଯାଇଥିଲା, ଜେମାଙ୍କ ପାଖରେ । ଯୁବରାଜ ଆଉ ସେଠି ଏକାକୀ ରହିପାରିବେ ନାହିଁ ବୋଲି, ମା' ପାଖକୁ ବଡ଼ ବିକଳ ହୋଇ ଲେଖିଥିଲେ । ଜେମା ସେ ଚିଠି ପାଇବା ପରେ ପୁରା ନୀରବ ହୋଇଯାଇ ଅନବରତ ଆଖିରୁ ଲୁହଧାର ଗଡ଼ାଉଥିଲେ । ସେହି ଅବସ୍ଥାରେ ଆମେମାନେବି କେହି ବୁଝାଇବାକୁ ସାହାସ କରିପାରୁ ନଥିଲୁ । ଜେମା ଦିନେ ଦେବାନ୍‌କୁ ଡକାଇ ପଠାଇଲେ । ଦେବାନ୍ ଆସିବାରୁ କହିଲେ । ରାଜା ପାଷାଣ୍ଡ ହେଲେ ଦେଶ ଚଳିବ ସିନା, ଦେବାନ୍ ଯଦି ସେଇଆ ହେବେ, ଏ ରାଜ୍ୟରେ ଲୋକ ଆଉ ରହିବେଟି ? ସେତିକି କହିଲା ପରେ ଆଉ କାନ୍ଦ ନାହିଁ, କି କଥାବାର୍ତ୍ତା ନାହିଁ । ଖାଇବାକୁ ବାଢ଼ି ହାତ ଧରି ଆଣି ଠାଆରେ ବସାଇଲେ, କେତେବେଳେ ମନ ହେଲେ ଦି'ଗୁଣ୍ଡା ଖାଆନ୍ତିତ, କେତେବେଳେ କୁଆଡ଼େ ଚାହିଁ ଘଣ୍ଟା ଘଣ୍ଟା ବସିଥାନ୍ତି । ଆସ୍ତେ ପିଲାକୁ ଆଉ ଖାଇବାକୁ ଦେଲେନି । ମୁଁ ସାନ କୁମାରଙ୍କୁ ଜେମାଙ୍କ କୋଡ଼ରେ ଶୁଆଇ ଦେଇ ଆସିବି । ପିଲାର ପିଲା କାନ୍ଦୁଥିବ ସେ ଉପରକୁ ସେମିତି ଜଳ ଜଳ ଚାହିଁ ରହିଥିବେ, ସେ ଆଖିରୁ ଲୁହ ବି କୁଆଡ଼େ ଶୁଖିଗଲା, ବେଳେ ବେଳେ କହନ୍ତି ଯୁବରାଜଙ୍କର କିଛି ଖବର ଆସିଲେ, ଏମାନେ ମତେ ଜଣେଇବେନି ବୋଧେ ।

ଆଜ୍ଞା ! କ'ଣ କହିବି । ମା'ର ଏତିକି ଅଣହେଳାରେ ସାନକୁମାର ଦଶମାସକୁ ମୋଟେ ଦେଢ଼ ବର୍ଷର ପିଲାପରି ଗୋରା ତକ ତକ ହୋଇ ଭାରି ସୁନ୍ଦର ଚନ୍ଦ୍ରଉଦିଆ ପରି ରୂପ ହୋଇଗଲା । ଏଣେ ସେହି ସାହିବାଣୀ ନର୍ସ, ଜେମାଙ୍କ ସଙ୍ଗେ ଲାଗି ଲାଗି ବହୁ କଷ୍ଟରେ ରାଜାସାହେବ ଆଉ ଜେମାଙ୍କର କଥାବାର୍ତ୍ତା କରାଇ, ରାଜାଙ୍କୁ କହି, ରାଜାଙ୍କର ଗୋଟେ ବଡ଼ ବାଗାନ ବାଡ଼ି ଥାଏ । ଅଳ୍ପ ଦୂର ମଫସଲ, ପାହାଡ଼ ତଳ, ଭାରି ସୁନ୍ଦର ଜାଗା ସେଇଠି ବୁଢ଼ାରାଜାଙ୍କ ଅମଳରେ ସାହେବମାନେ ଆସିଲେ ଯାଇ ରହନ୍ତି । ନାଚ, ଗୀତ, ଗାଅଣା, ମାଜଣା, ଖାଅପିଅ, ସବୁ ସେଇଠି ହୁଏ । ଝରଣା, ଫୁଲ ବଗିଚା ଯେଡ଼େ ସୁନ୍ଦର ଶଙ୍ଖ ମଲ ମଲ ମୂର୍ତ୍ତିମାନ, ଦେଖିଲେ ମନ ଛାଡ଼ିବନି । ସତେ ଅବା ଜିଅନ୍ତା ପରୀମାନେ ଓହ୍ଲାଇ ଆସୁଛନ୍ତି । ସେଇଠିକି ରାଜା ସାହେବ ଜେମା, ସାନ କୁମାର, ମୁଁ ଆଉ ଗୋଟେ ଶୁଆର (ରାନ୍ଧୁଣିଆ) ନର୍ସ, ସମସ୍ତେ ଗଲୁ । ନର୍ସ ଦିଦି, ଦି'ଚାରିଦିନ ରହି, ଫେରି ଆସିଲେ । ରାଜା ସାହେବ ନାନା ବାହାନାରେ ଜେମାଙ୍କୁ ସବୁବେଳେ ଭଲ ମନ୍ଦ ପଚାରୁଥାନ୍ତି । ମଣିଷ ମନତ, ଆସ୍ତେ ଆସ୍ତେ ଟିକିଏ ପରିବର୍ତ୍ତନ ହେଇ ଯାଇଥାନ୍ତା । କିନ୍ତୁ ଆଜ୍ଞା ! ଭାଗ୍ୟ ଉପରେ କ'ଣ କାହାର ହାତ ଅଛି ! ସେ ପରା ଅଦୃଶ୍ୟ । ଦିନେ ଜେମା ପିଣ୍ଡାରେ ଆରାମ ଚେୟାରରେ ବସିଛନ୍ତି । ମୁଁ ସାନ କୁମାରଙ୍କୁ ଜେମାଙ୍କ ଗୋଡ଼ରେ ବସେଇ ଦେଇ ଲୁଗାପଟା ଧୋଇବାକୁ ଗଲି । କୁମାର ରୂପା ଝୁମୁକାକୁ ହାତରେ ଧରି କୁଆକୁ ହାତ ଦେଖାଇ ଆ' ଆ' ଡାକୁଥିଲେ । ଜେମା ପୁଅର ଖେଳ ଦେଖି ଶୁଆରକୁ ଖଣ୍ଡେ ରୁଟି ଆଣି କୁଆକୁ ଦେବାକୁ କହିଲେ । ଶୁଆର ରୁଟିଖଣ୍ଡି ଧରି ଆସି, କୁମାରଙ୍କୁ ଚାହିଁ ଦେଇ ବଡ଼ ପାଟିରେ ରଡ଼ି ପକାଇଲା ଇଏ ଆଜ୍ଞା କ'ଣ ହେଲା ଜେମା ପୁଅକୁ ବୁଲାଇ ଚାହିଁଲା ବେଳକୁ ଝୁମୁକାର ଗୋଟେ ପଟରୁ ଗୋଟାକିଟି ଖସି କୁମାରଙ୍କ ତୋଟିରେ ଲାଗି ମୁହଁ ନେଳି ପଡ଼ି, ଆଖି ଢ଼ିମା ଢ଼ିମା ହୋଇ ଉପରକୁ ବାହାରି ପଡୁଛି । ପାଟି ଶୁଣି ସମସ୍ତେ ଦୌଡ଼ିଆସି ରଜାଙ୍କୁ ଖବର ଦେଇ ରାଜା ଆସିଲା ବେଳକୁ କୁମାର ନିସ୍ତେଜ ହୋଇଗଲେଣି । କ'ଣ କରିବା କ'ଣ କରିବା, ହଉ ହଉ, ଛାତିରେ ରୁନ୍ଧି ହେଇଥିବା ପବନ ଟିକକ ବନ୍ଦ ହେଇଗଲା ।

ପୁଣି ଜେମାଙ୍କୁ ଧରି ନଅରକୁ ଆସିଲେ । ଖବର ପାଇ ଜେମାଙ୍କ ମାମା ଆସି, କେତେଦିନି ପାଖରେ ରହିଲେ । ସବୁବେଳେ ଜେମାଙ୍କୁ ବୁଝାଉଥାନ୍ତି । ଜେମାଙ୍କର କିନ୍ତୁ ପଦିଏ କଥା, ତୁମେ ଜାଣିନ ମାମା ? ଜଣେ ପାପ କରିବ, ଆଉ ଜଣେ ପ୍ରାୟଶ୍ଚିତ କରିବ । ଯେତେବେଳେ କଥା କହିବେ ବଡ଼ ଧୀରେ ଧୀରେ କହିବେ । ଏ ଅମଣିଷ ପାଷାଣ୍ଡ ପାପର ଫଳ କି ଭୟଙ୍କର । ମାମା କେତେଦିନି ରହି ଗଲେଭାରି । ଆଉ କ'ଣ କହିବି ଆଜ୍ଞା ! ତା'ପରେ ଜାଣ ଶେଷ ଅଧ୍ୟାୟ । ସେହି ବାଗାନ ବାଡ଼ିରୁ, ଜେମା ଆସି ଶୋଇଲେ ଯେ, ଆଉ ଉଠି ନାହାନ୍ତି କହିଲେ ଚକେ । ଆମେ ଦି ଜଣ ଦାସୀ ଲାଗି ଯାହା

ନିତ୍ୟକର୍ମ କରେଇ ଦଉ । ସେଦିନ ବଡ଼ ଏକାଦଶୀ ହୋଇଥାଏ । ସକାଳୁ ଉଠି ଜେମାଙ୍କ କାମଦାମ ସାରି ଆଉଜାଇ ବସେଇ ଦେଲୁ । ସେଦିନ ଜେମାଙ୍କ ମୁହଁଟି ଭାରି ଉଜ୍ଜ୍ୱଳ ଦିଶିଲା । ମୋ ମନରେ ଆଶା ହେଲା । ମୋତେ ପାଖକୁ ଡାକି କହିଲେ, କୁଉତୁକିକୁ ଡାକି ମୋର କାମ ଦାମ ଚଞ୍ଚଳ ସାରିଦିଅ । ଟିକିଏ ତାଂ ହାତରେ ରାଜା ସାହେବକୁ ଡାକ । ଏଇକଥା ଶୁଣିଲାବେଳେ ମୋ ମନ ସତେ ଆଞ୍ଚା, ଆକାଶକୁ ଛୁଇଁ ଯାଉଥାଏ । ମୋର ପୁରା ଆଶା ହେଲା ଜେମା ମୋର ଏଥର ଉଠି ବସିବେ । ପୁଣି ପୂର୍ବପରି ଏଘର ସଂସାର ଚାଲିବ । କାଲି ପରି ପୁଣି, କୁମାର କି ନୂଆ ଜେମା କୋଡ଼କୁ ଆସିବେ । ଜେମାଙ୍କ କଥା ଅନୁସାରେ, ରାଜା ସାହେବଙ୍କୁ ଡକେଇ ପଠେଇ, ସରବତ ଗିଲାସଟି ଜେମାଙ୍କ ହାତକୁ ବଢ଼େଇ ଦେଲି । ନିର୍ମାଲ୍ୟ ପଡ଼ିଛିଟି ପଚାରି ଢ଼କ ଢ଼କ କରି ପିଇଦେଲେ । ଜଗନ୍ନାଥଙ୍କ ରୂପା ବନ୍ଧେଇ ଫଟୋଟି ମାଗି, ମୁଣ୍ଡରେ ଲଗାଇ ତକିଆ ତଳେ ଥୋଇଲେ । ରାଜାସାହେବ ଖବର ପାଉ ପାଉ, ଉଠି ମୁହଁ ଧୋଇ, ସାଙ୍ଗେ ସାଙ୍ଗେ ଆସି ପହଞ୍ଚି ଗଲେ । ସତେ ଯେମିତି, ଜେମାଙ୍କ ଡ଼ାକରାକୁ ଚାହିଁ ବସିଥିଲେ । ଜେମା ତାଙ୍କୁ ପାଖରେ ବସିବାକୁ କହି, ଜଗନ୍ନାଥଙ୍କ ଫଟୋଟି କାଢ଼ି, ତାଙ୍କ ହାତରେ ଦେଲେ । ତାଙ୍କ ଗୋଡ଼କୁ ଟିକିଏ ଉପରକୁ ଟେକିବାକୁ କହି, ପାଦଧୂଳି ନେଇ ମୁଣ୍ଡରେ ମାରିଲେ । ରାଜା ସାହେବ ଏମିତି କାବା ହୋଇ ଚାହିଁଥାଆନ୍ତି ଯେ, ସତେ ଯେମିତି କାଳ କାଳ ହେଲା ଜେମାଙ୍କୁ ଦେଖିନାହାନ୍ତି । ରାଜା ସାହେବ ବଡ଼ ବିକଳିଆ ହୋଇ ପଚାରିଲେ, ଇଏ କ'ଣ ହେଉଛି ? ଜେମା ଉପରକୁ ଆଙ୍ଗୁଠି ଦେଖାଇ କହିଲେ, ଏଇ ଦେଖ ମୋର ରଥ ଆସିଗଲାଣି । ଏଇ ପହଞ୍ଚିଯିବ । ଜଗନ୍ନାଥଙ୍କ ଫଟୋ ଉପରେ ହାତଟି ରଖି, ୟାଙ୍କୁଇ ସାକ୍ଷୀରଖି ବଡ଼ କୁମାରଙ୍କୁ ତୁମ ହାତରେ ଦେଇଗଲି । ଆଉ ମୋ ସାଙ୍ଗରେ ଆସିଥିବା ସମସ୍ତଙ୍କ ପିଞ୍ଜରା ଖୋଲିଦେବ । ଯିଏ ରହିବ, ରହିବ, ଯିଏ ଉଡ଼ିଯିବ ତାକୁ ବାଧା ଦେବନି । ପୁଣି ବଡ଼ ବଡ଼ ଆଖିରେ, ଲୁହ ଢ଼ଳ ଢ଼ଳ କରି, ଉପରକୁ ଚାହିଁ, କହିଲେ ଦେଖ, ୟାକୁ ଚିହ୍ନି ପାରୁଛ । ରଥରେ ବସି ଯିଏ ଆସୁଛି ମୋତେ ନେବାକୁ । ସେ ସତୀ, ସ୍ୱାଧୀ ସୁରଙ୍ଗିଣୀ, ମୁଁ ତାକୁ ଛାଡ଼ି ଦେଇଥିଲି । ତା' ସ୍ୱାମୀର ଅବିଶ୍ୱାସ, ମାନି ନେଇ ଆନନ୍ଦରେ ଜୀବନ ହାରିଦେଇଛି । ମୁଁ କିନ୍ତୁ ସେତିକି କରି ପାରିନି । କିନ୍ତୁ ଜୀବନ ଭରି ପ୍ରାୟଶ୍ଚିତ କରିଛି । ସେ ସ୍ୱର୍ଗରେ ମୋ ପାଇଁ ଜାଗା ରଖିଥିବ ମୋତେ ନେବାକୁ ଆସିଛି । ଏକଥା ଶୁଣିବାକୁ, ରାଜା ସାହେବଙ୍କର ଆଉ ଦମ୍ଭ ନଥିଲା । ସେ ପିଲାଙ୍କ ପରି, ଜେମାଙ୍କୁ କୁଣ୍ଢେଇ ଧରି, ଭୋ-ଭୋ କାନ୍ଦି ଉଠିଲେ । ସେଇଦିନ ଦିନ ଦୁଇଟା ସୁଦ୍ଧା ସବୁ ଶେଷ । ଜେମାଙ୍କ ସାଙ୍ଗେ ରାଜଲକ୍ଷ୍ମୀ ରାଜାଙ୍କ କାନ୍ଧରୁ ଓହ୍ଲେଇଗଲେ ଜାଣ ।

## ପଞ୍ଜୁରୀ ଖୋଲିଗଲା...

ପଞ୍ଜୁରୀତ ଖୋଲା ହେଲା । ସେଇଦିନଠାରୁ ରାଜାସାହେବଙ୍କର କ'ଣ ହେଲା କେଜାଣି । ସବୁ ଓଲଟ ପାଲଟ ହୋଇଗଲା । ଗୁଣ୍ଡାଦଳ କିଏ କୁଆଡ଼େ ଗଲେ । ଆନନ୍ଦ ଉତ୍ସବ ଆଉ ନଅରରେ ପଶିଲାନି । ପୂଜା ପର୍ବ ବି ବନ୍ଦ ହେବାକୁ ବସିଲା । ଜେମାଙ୍କ କହିବା ଅନୁସାରେ ଜୀବ ଜନ୍ତୁଙ୍କୁ ମୁକ୍ତ କରିଦେଲେ ସିନା ସେମାନେ ଯିଏ ଯୁଆଡ଼େ ବୁଲି, ଠିକ୍ ଖାଇବା ଶୋଇବା ବେଳକୁ ଯିଏ ଯାହା ସ୍ଥାନରେ ଆସି ବସିଯାଆନ୍ତି । ତାଙ୍କ କରୁଣ ଚିତ୍କାର ମତେ ଠିକ୍ ତାଙ୍କର କାନ୍ଦ ଭଳିଆ ଶୁଭେ । ମୁଁ ବି ତାଙ୍କ ସାଙ୍ଗରେ ଜେମାଙ୍କୁ ମନେ ପକାଇ କାନ୍ଦେ । କିଛି ଦିନି ପରେ ଜୀବ ଜନ୍ତୁଙ୍କର ଅଭ୍ୟାସ ଛାଡ଼ିଗଲା ସିନା, ମୁଁ ଆଉ କୁକୁର ଦିହେଁ ରହିଗଲୁ । କେତେଦିନରେ କୁକୁରଟି ପାଗଳା ହୋଇଗଲା, ମୋର ବି ଆଉ କାମରେ ମନ ଲାଗିଲାନି । ଦିନେ ରାଜାସାହେବ ଗୁଳିକରି କୁକୁରଟିକୁ ମାରିଦେଲେ । ରାଜାଙ୍କର ପ୍ରାୟ ସମସ୍ତ ଭାର, ପଡ଼ିଲା ତିଳ ମାଉସୀ ଉପରେ । ଦେୱାନ ବାହାଦୂର ବାହାର କାମ ଆଉ ତିଳ ମାଉସୀ ଉଆସ ଚଳାଇବାରେ ଲାଗିଲେ ।

ମୁଁ ଆଜ୍ଞା ପାଗଳ ହେଲିନି ସିନା,. ରହିଗଲି ସେଇ କୁକୁର ଅବସ୍ଥାରେ । ମୋ' ଜେମାଙ୍କ ବିହୁନେ ମୁଁ ସେ ପୁରରେ ରହି ପାରିଲିନି କି, ବଡ଼ କୁମାରଙ୍କ କଥା ବିଚାରି ଛାଡ଼ି ଆସି ପାରିଲିନି । କାରଣ ମୁଁ ଜାଣି ପାରିଥିଲି ଯେ, ତିଳ ମାଉସୀ ଆସ୍ତେ ଆସ୍ତେ ରାଜାଙ୍କ ସହିତେ, ଟ୍ରେଜେରି ଚାବି ବି ଅକ୍ତିୟାର କରି ନେଲାଣି । ଆଉ ରାଜା ସାହେବଙ୍କ ମନ ପରିବର୍ତ୍ତନ ପାଇଁ ନିଜର ଝିଆରୀଟିକୁ ଆଣି ଦ୍ୱିତୀୟ ବିବାହର ଆୟୋଜନରେ ଅଛି । ନିଜେ କାମକୁ ପାରୁନି ବୋଲି ଯାହାକୁ ଆଣି ସାହାଯ୍ୟକାରୀ ରଖିଛି ସେ ତା ଭାଇର ଝିଅ । ଘର ବି ଖଣ୍ଡେଇତ ଘର । ମୁଁ ବା ଆଉ କେତେ ସହନ୍ତି । ମୋ' ଜେମାତ ମୋ ପଞ୍ଜୁରୀ ଦୁଆର ଖୋଲି ଦେଇ ଯାଇଥିଲେ । ମୁଁ ବଡ଼ କୁମାରଙ୍କୁ ତାଙ୍କ ଭାଗ୍ୟ ଉପରେ ଛାଡ଼ିଦେଇ ସେ ଘରୁ ଗୋଡ଼ କାଢ଼ିଲି । ଜାଣିଥିଲି ବଡ଼ କୁମାର ବି ଭଲ ପଢ଼ାପଢ଼ି କରୁନଥିଲେ । ସେଇଠି ଥାଇ ତାଙ୍କର ବହୁତ ବଦ ଅଭ୍ୟାସ ହୋଇ ଯାଇଥିଲା ଏଣେ ଘରକୁ ଆସି ଦେଖିଲା ବେଳକୁ, ତାଙ୍କ ମା'ର ସ୍ଥାନ ଅଧିକାର କରି ବସିଲାଣି ତିଳ ମାଉସୀର ଝିଆରୀ କାମିନୀରାଣୀ । ରାଜା ସାହେବ ତ ଅକାଳରେ ବୁଢ଼ା ହୋଇ ଯାଇଥିଲେ । ସେ କାମିନୀରାଣୀ ଭୟରେ ପୁଅକୁ ଅତି ଶୀଘ୍ର ବିଭା କରାଇ ସେଇ ବାଗାନ ବାଡ଼ିରେ ରଖାଇଦେଲେ । ପରେ ବାପ ପୁଅଙ୍କର କଳି ତକରାଳ ହୋଇ, କୋର୍ଟ କଚେରୀ ଯାଏଁ ଗଲା ବୋଲି ଶୁଣିଥିଲି ।

ଆଜ୍ଞା ! ମୁଁ ସିନା ପଞ୍ଜୁରୀରୁ ଉଡ଼ି ଆସିଲି, ଆବାଲ୍ୟରୁ ଯିଏ ସୁନା ପଞ୍ଜୁରୀରେ ବନ୍ଧା ହୋଇ ରହିଛି ସିଏ ଉଡ଼ିବ କେମିତି ? ପୁଣି ସୁନା ପଞ୍ଜୁରୀରେ ରହି ଦୁଧଭାତ ଖାଇଛି । ଖାଇବା ପିଇବା ଭଲ ମନ୍ଦ ବ୍ୟବହାର କରିବା କାହିଁରେ କେବେ ଉଣା ଜାଣିନି ତେବେ-କେ ଭାବି ଭାବି ମୋ ବାପ ଘରକୁ ଗଲି । ସେଠିକି ଯାଇ ମଦାଳସା ଖୋଜିଲା ଟୁପାକୁ । ବାପ ବୋଉ ସାଙ୍ଗେ ଭାଇ ବି ଗଲାଣି । ଭାଉଜ ଆଉ ପୁତୁରାର ଘର । ଢ଼ୋକେ ପିଇ ଦଣ୍ଡେ ଜିଇବା ଅବସ୍ଥା । ସେତେବେଳର ଟୁପା ଆଉ କ'ଣ ଧାନ ଉସୁଆ, ଧାନ ଘଣ୍ଟା, କରିବ ? ସେ ବି ତାଙ୍କ ସାଙ୍ଗେ ହଜିଗଲାଣି । ବସି ଖାଇଲେ ତ ନଈବାଲି ସରିବ । ପୁଣି ତ ମୋର ରଜା ଉଆସରୁ ବଦ ଅଭ୍ୟାସ ଟିକେ ଅଛି । ଯାହା କେତେଦିନ ତାଙ୍କୁ ଚଳେଇ, ମୁଁ ଚଳିଲି । ପୁଣି ସେଇ ସୁନା ପଞ୍ଜୁରୀ ଖୋଜି ବାହାରିଲି । କେତେ କାହାକୁ ପଚାରି, ପଚାରି ଆସି ପହଞ୍ଚିଲି ଆମ ଏଇ ଜେମାଙ୍କ ବାପ ଘରେ । ତାଙ୍କ ବାପା ରାଜା ନହେଲେ ବି, ରାଜାଙ୍କ ଭାଇୟା ତ । ଘର ଚାଲି ଚଳଣି ଭଲ । କେତେ ଗାଁ ଜମିଦାରୀ, ଖମାର, ପାହାଡ଼, ବଣ ତାଙ୍କ ଭାଗରେ ପଡ଼ିଥାଏ । ଜାଣ କୁଣ ରଜାଟିଏ । ଆଉ ଇଏ ଜେମାଙ୍କର ଯିଏ ମାମା (ବୋଉ) ତାଙ୍କ ନାଁ ଭାଗ୍ୟଲକ୍ଷ୍ମୀ । ସିଏ ସାକ୍ଷାତ ଲକ୍ଷ୍ମୀ ଠାକୁରାଣୀ । ଯାହା କହନ୍ତି ଅନ୍ନପୂର୍ଣ୍ଣା । ହାତ ଟେକି ମୁଠେ ବାଢ଼ିଦେଲେ ପେଟେ ହୋଇଯିବ । ନୂଆ ବିଭା ହୋଇ ଆସିଥାନ୍ତି । ଏକୁଟିଆ ଘର । ଦଇବ ବଡ଼ ଲୋକ ଆଜ୍ଞା । ପୁଣି ମୁଁ ସେଇଠି ପହଞ୍ଚିଗଲି । ଜାଣ ଅଧେ ମାଲିକାଣୀ ସେ ଘରେ ହୋଇଗଲି । ସେଇଠି ରାଜାଙ୍କୁ ମୁଁ ଦଦେଇ (ବାପା) ରାଜା ବୋଲି ଡ଼ାକେ । ରାଜା ଭାରି ସନ୍ଦେହୀ । ଆଉ ଟିକିଏ ରାଗି । ତାଙ୍କ ରାଗରୁ କ'ଣ ମିଳିବ । ମାମା ତ ଦେବୀଟିଏ । ଦଦେଇ ଯେତିକି ସନ୍ଦେହ କରନ୍ତି, ମାମା ସେତିକି କଉତୁକ କରନ୍ତି । ଦିନେ ଦିନେ ଦଦେଇ ଆସି, ଦାଣ୍ଡପଟରୁ ଉଣ୍ଡିବେ । ମାମା କିମିତି ତାକୁ ଜାଣିପାରି, ସତେ ଯେମିତି କିଏ ତାଙ୍କ ସାଙ୍ଗେ କଥାବାର୍ତ୍ତା ହଉଛି ସେମିତି ଅଭିନୟ କରି, ପଳା, ପଳା ବୋଲି ହାତ ହଲେଇବେ । ଦଦେଇ ଚୋର ଧରିଲାପରି, ରାଗରେ ଆସି ପହଞ୍ଚିଗଲା ବେଳକୁ ମୁଁ କି ଆଉ କିଏ ମାଇପି ଲୋକ ଥିବେ । ମାମା ହସି ହସି ଗଡ଼ିଯିବେ । ଦଦେଇ ଲାଜରେ ରାଗ ଗରଗର ହୋଇ ପୁଣି ବାହାରକୁ ଯିବେ ଭାରି ।

ସେତିକିବେଳେ ମା' ଖାଇ ହାଡ ଗିଜି ଗିଜି ସୁକୁଟୀ କୋକିଳାକୁ ତା' ବାପ ପାଞ୍ଚଶେର ଚାଉଳକୁ ବିକି ଦେଇଥିଲା । ଆଉ କାଳେ କୁଆଡ଼େ ଦେଇଦେବ ବୋଲି, ମାମା ଚାଉଳ ପୁରୁଣା ଲୁଗା ଖଣ୍ଡେ ଦେଇ ରଖିଦେଲେ ମୋରି ଭରସାରେ । ଝିଅଟି ସୁକୁଟି ହୋଇଥିଲା ସିନା ଚମଡ଼ାଟି ସଫା । ଘରେ ପଶୁ ପଶୁ କାନ୍ଦ ବୋବା କିଛି ନାହିଁ । ଏ' ଘର ସେ ଘର ପଶି, ମୋ ପଛେ ପଛେ ବୁଲିଲା । ମତେ ବି ଭାରି ସୁଖ ଲାଗିଲା । ଜାଣ ମୁଁ ତାକୁ ପାଳିଲି । ମୋ ସାଙ୍ଗରେ ମିଶି, ଇଆଡୁ ସିଆଡୁ ଠୁକୁରୁ ମୁକୁରୁ ଟିକିଏ ଟିକିଏ କାମ କଲା । ଦଦେଇ ତା ନାଁ ଦେଲେ କାମକଳା । ମାମାଙ୍କର ପାଞ୍ଚ ଛଅ ବରଷରେ ଜେମା

ପେଟରେ ରହିଲେ । ଦଦେଇଙ୍କର ଗୋଟିଏ ଭଉଣୀ ଥାଆନ୍ତି । ସେ ଜଣେ ରାଜାଙ୍କୁ ବିଭା ହୋଇଥିଲେ । ସେ ରାଜାଙ୍କର ସେ ଥିଲେ ତୃତୀୟ ସ୍ତ୍ରୀ । ପ୍ରଥମ ପକ୍ଷରେ ରାଜା ଝିଅଙ୍କୁ ରାଜାମାନେ ବିଭା ହୁଅନ୍ତି । ଆଉ ଦ୍ୱିତୀୟ ତୃତୀୟ ବେଳକୁ ଭାଇୟା ଘରର ଝିଅମାନେ ଚଳନ୍ତି । ପ୍ରାୟ ସୁନ୍ଦର ଝିଅ ଦେଖି ରାଜାମାନେ ବିଭା ହୁଅନ୍ତି । ଭାଇୟା ଘର ବି ରାଣୀ ହେବା ଲୋଭରେ ବୁଢ଼ା ବରରେ ଝିଅ ଦେଇ ଦିଅନ୍ତି । ଏ ଦଦେଇଙ୍କ ଭଉଣୀ, ଆମେ ତାଙ୍କୁ ଆତା ମାମା (ପିଇସୀ) ଡାକୁ । ସେ ଥିଲେ ଯେମିତି ସୁନ୍ଦରୀ ସେମିତି ବୁଦ୍ଧିମତୀ । ତାଙ୍କ ପ୍ରଥମ ସଉତୁଣୀ ଥିଲେ ବାଞ୍ଝ । ସେ ବଞ୍ଚିଥାଇ ରାଜାଙ୍କୁ ବାଧ୍ୟ କରି ଆଉ ଥରେ ବିଭା କରାଇଥିଲେ । କିନ୍ତୁ ସେ ଅଳ୍ପଦିନ ପରେ ପ୍ରସବ କରି ନପାରି ମରିଗଲେ । ପୁଣି ଆତା ତୃତୀୟ ପକ୍ଷରେ ଗୋଟିଏ ପୁଅ ଆଉ ଗୋଟିଏ ଝିଅ ଜନ୍ମ କଲେ । ବଡ଼ ସଉତୁଣୀ ବି ଚାଲିଗଲେ । ରାଜା କିନ୍ତୁ ଆତାଙ୍କୁ ମୁଣ୍ଡେଇ ଥାଆନ୍ତି । ଆତାଙ୍କର କିନ୍ତୁ ସବୁବେଳେ ଭାଇ ଉପରେ ଭାରି ନିଘା । ଜେମା ପେଟରେ ହେଲାଠୁ ମାସେ ଦିମାସରେ ଆତା ଥରେ ଦେଖିବାକୁ ଆସିବେ । ସାଙ୍ଗରେ ଦାସୀ, ଦାସ, ମୂଲକର ଜିନିଷ ଆଣିଥିବେ । ମାମାଙ୍କର ନଣନ୍ଦ ଆସିଗଲେ ଆଉ ଗୋଡ଼ ତଳେ ଲାଗେନି । ଆଜି ଯାଏଁ ଏମିତି ନଣନ୍ଦ ଭାଉଜ ମୁଁ ଆଉ କାହିଁ ଦେଖିନି । ମାମାଙ୍କର ଘର ଆନ୍ଧ୍ର ସୀମାରେ ହେଲାବେଳକୁ ପିଇସୀଙ୍କ ଘର ଓଡିଶାଏପଟେ, ହେଲେ ଖାସେ ଆସି ହାଜର । ସମସ୍ତଙ୍କର ଆତାଙ୍କୁ ଭାରି ଭୟ । ଯେଡ଼ିକି ସ୍ନେହୀ, ସେଡ଼ିକି କଡ଼ା । ହେଲେ ଆଜ୍ଞା (କପାଳ ଲିଖନ କେ କରିବ ଆନ) ଆତା ପନ୍ଦର ଦିନ ଆଗରୁ ଆସି ପାଖରେ ଥାଆନ୍ତି । କବିରାଜଠୁଁ ଧାଇ ପର୍ଯ୍ୟନ୍ତ ସମସ୍ତେ ଖଞ୍ଜା ଥାଆନ୍ତି । ଜେମା ଜନମ ହେବାକୁ ତିନି ଦିନ ତିନି ରାତି ବିତିଗଲା । ଗୋଟେ ପଟରୁ ଯମ ଟାଣୁଥାଏ ତ ଗୋଟେ ପଟରୁ ଆତା ଭିଡ଼ି ଧରିଥାଆନ୍ତି । ଯେତିକି ଠୁଣୁକା ଠୁଣୁକି, ଢେଉଁରିଆ, କାଟପାଣି, କବିରାଜ, ଦିଅଁ-ଦେବତା, ଝଡ଼ା-ଫୁଙ୍କା, ହୋମ ଚାଲିଥାଏ; ମାଢଣା ବି ସେତିକି ଚାଲିଥାଏ । ଏମିତି ଯମ ମଣିଷ ଟଣା ଓଟରାରେ ଜାଣ ଆତା ଜିଣିଗଲେ । ଜେମା ତଳେ ପଡ଼ିଲେ । ତଳେ ପଡ଼ିଲେ ସିନା ହେଲେ ମାମା ଅଜ୍ଞାନ । ଆତା ଝିଅକୁ ମୋତେ ସଂପି ଦେଇ ଲାଗିଗଲେ ଚଣ୍ଡୀପାଠ, ମୃତ୍ୟୁ ସଂଜୀବନୀ ମନ୍ତ୍ର ଜପ, ମହାଦେବଙ୍କୁ କ୍ଷୀର ଅଭିଷେକ, ଯେତେ ପ୍ରକାର ହୋଇପାରେ କରାଇଲେ । ହେଲେ ଯମ ଫଳଟିକୁ ଥୋଇ ଦେଇ ତିନିଦିନି ପର୍ଯ୍ୟନ୍ତ ସଂଜ୍ଞା ହରାଇଥିବା ମୂଳଟିକୁ ଘେନି ଚାଲିଗଲା । ଦଦେଇତ ବସିଲା ଜାଗାରୁ ଉଠିଲେନି । ଆତା କିନ୍ତୁ ଲାଗିଲେ ଜେମା ସେବାରେ । କଥା ହେଲା ଜେମାଙ୍କୁ ରଖିବ କିଏ ? ମାମାଙ୍କ ମାମା ବି ସେତେବେଳେ ସେଇଠି ଥାଆନ୍ତି । ସେ ଅହରହ ଝିଅକୁ ବାହୁନି ବାହୁନି କାନ୍ଦୁଥାନ୍ତି । କିନ୍ତୁ ସେଇ ଦିନକ ପରେ ଆତାଙ୍କ ଆଖିରୁ ଆଉ ଲୁହ ବୋହିନି । ଆଈ ମାମା ଯେତେ ଯିବାକୁ ବାହାରିଲେ, ଆତା କୌଣସି ଉପାୟ କରି ତାଙ୍କୁ ଆଉ ଯିବାକୁ ଦେଲେନି । ଏଣେ ଭାଇଙ୍କି ତେଣେ ତାଙ୍କ ଶାଶୁଙ୍କୁ, ପନ୍ଦର ଦିନ କାଳ ବୁଝେଇ ବୁଝେଇ

ସେହି ଦୁଃଖ ଭିତରେ କେମିତି ବାଗରେ ସ୍ଥିର କରିଦେଲେ ଯେ, ମାମାଙ୍କ ସାନ ଭଉଣୀ ସୌଭାଗ୍ୟ ଲକ୍ଷ୍ମୀଙ୍କୁ ପୁଣି ଦଦେଇଙ୍କ ସହିତ ବିଭାଘର ହେବ । ଏତକ କରି ଆଈ ମାମାଙ୍କ ହାତେ ଦଦେଇଙ୍କ ଭାର ଦେଇ ମୋତେ ଆଉ ଜେମାଙ୍କୁ ନେଇ ବାହାରିଲେ ତାଙ୍କ ରାଜ୍ୟକୁ । କିନ୍ତୁ କାମକଳା ନଛୋଡ଼ ବନ୍ଧା । ମୋତେ ଛାଡ଼ି ସେ ଜମା ରହିବନି । ପୁଣି ଆଈମାଙ୍କ ସାଙ୍ଗେ ଆତା ବିଚାର କରି କାମକଳାର ଆମ ସାଙ୍ଗେ ଯିବାର ସ୍ଥିର ହେଲା ।

ପୁଣି ଆଜ୍ଞା ଆସି ପଶିଲି ସୁନା ପଞ୍ଜୁରୀରେ । ଉଆସ, ଚଉଁରୀ ବଗିଚା, ପୋଖରୀ, ମନ୍ଦିର, ଦାସ-ଦାସୀ, ଯୁବରାଜ, ଜେମାଦେଇ, କାହିଁରେ କଣ ସୁନ୍ଦର ସଂସାର । ହେଲେ କ'ଣ ହେବ ଆଜ୍ଞା । ଗୋଟିଏ କଥା ମତେ ବଡ଼ ଖାପଛଡ଼ା ଲାଗେ । ଆତାଙ୍କର ଗୋରା ତକ ତକ ଦେବୀ ପ୍ରତିମାପରି ରୂପ, ଟିପ ମାରିଦେଲେ ସତେ ଅବା ରକତ ନିଗିଡ଼ି ପଡ଼ିବ । ଆଉ ରାଜା ସାହେବ ଥନ୍ତଲ ପେଟ । ଷାଠିଏ ବର୍ଷର ପୃଥୁଳକାୟ କଳା ମଚ,ମଚ ଦେହ । ମୁହଁରେ ଅବା ଟୋକିଏ ମାଉଁସ ଲଦା ହେଇଛି । ଦେହରେ ରାଜାର ଲକ୍ଷଣ ଟୋପେ ନାହିଁ । ଯାହାକୁ ଅସୁନ୍ଦର କହନ୍ତି କୁମାର ରାଜା ଏତେ କଳା ନୁହଁନ୍ତି । ମା-ବାପା ମିଶା-ମିଶି ସାବେନା ରଙ୍ଗ । ହୃଷ୍ଟ-ପୃଷ୍ଟ ଚେହେରା । ମାମାଙ୍କ ପରି ମୁହଁ ନାକ ଗଢ଼ଣ । ହେଲେ ଜେମାଙ୍କୁ ନେବ ମଣିମାଙ୍କୁ ଆଣିବ । ଆତା ତ ଆଉ ରାଜାଘର ଝିଅ ନୁହଁନ୍ତି, ସେ ଭାଇୟା ଘର । ସାଧାରଣରେ ରାଜା ଘର ଝିଅ ରାଣୀ ହେବା କଥା । ଏଠି କଣ କି ? ରାଜା ସାହେବଙ୍କର ଆଗରୁ ଦି'ଟା ସ୍ତ୍ରୀ ମରିଛନ୍ତି । ତୃତୀୟ ପକ୍ଷରେ ଆଉ ରାଜା ଘର କ'ଣ ଖୋଜିବେ ? ସହଜେ ସୁନ୍ଦର ଝିଅ । ରାଜା ଲୋଡେଇଲା ବେଳକୁ ଭାଇୟା ଘର ଝିଅ ତ । ରାଣୀ ହୋଇ ପାରିଲା ଯଦି ତାକୁ ବଳି ଆଉ ଭାଗ୍ୟ କଣ ? ହଉ ତୃତୀୟ ପକ୍ଷ ପୁଅ-ଝିଅତ ନାହିଁ । ପ୍ରଥମ ରାଣୀ ବାଞ୍ଝ ହୋଇ ବାପଘରେ ରହି ମଲା । ଦ୍ୱିତୀୟ ପେଟରେ ପିଲାଥାଇ ଜନ୍ମ କରି ନପାରି ମଲା । ଇଏ ତୃତୀୟ ରାଣୀ । ଯାଙ୍କର ପୁଣି ପୁଅ ପରେ ଝିଅ । ସେଇଥି ପାଇଁ ରାଣୀ ମା' ଯାହା କହିବେ, ମଣିମା ସେଇୟା କରିବେ । କାନ୍ଧରେ ଯେମିତି ରାଜଲକ୍ଷ୍ମୀ ବସିଛନ୍ତି । ଦିଅଁ-ଦେଉଳ, ବିଧି-ବିଧାନ, ପୁନିଅଁ-ପର୍ବ, ବାରମାସେ ତେର ଯାତ୍ରା । କିଛି ଯେମିତି ଟିକିଏ ବ୍ୟତିକ୍ରମ ନାହିଁ । ଏତେ ଠା ଦେଖି ଆସିଲି କିନ୍ତୁ ଏଠି ରାଣୀ ମା' ଉପରୁ ଓହ୍ଲାଇ ଆସିଲେ, ସମସ୍ତେ ତଟସ୍ଥ । ଏଠି ଆଉ ରାଣୀ ଉଆସ କି ରାଜା ଉଆସ ଭିନ୍ନ ନୁହେଁ । ତାରି ପାଖୁ ଲାଗି ଦୁଇ ବଖରା ଘର । ଗୋଟିକରେ ଯୁବରାଜ, ଗୋଟିକରେ ଜେମାମଣି । ବଇସିଆ ଦାସୀଟିଏ ପୁଅ ଘରେ ଯେମିତି, ବଇସିଆ ଦାସୀଟିଏ ସେମିତି ଝିଅ ବଖରାରେ । ସେମିତି ଆମ ଜେମାଙ୍କ ପାଇଁ ଟିକିଏ ଛାଡ଼ି ଆଉ ଗୋଟିଏ ବଖରା । ଗୋଟିଏ ଦାସୀ ମୁଁ ଆଉ କାମକଳା ସେଇ ବଖରାରେ ରହିଲୁ । ହେଲେ ଏତେ ସୁଖ ଆଖି ଫୁଟା ଦଇବ ସହନ୍ତା କେମିତି ଆଜ୍ଞା ! ରାଣୀ ମା'ଙ୍କୁ ଦେଖିଲେ ଲାଗେ ସତେ ଯେମିତି ଏ ରାଜ୍ୟ ସେ ଚଳାଉଛନ୍ତି । ରାଜା ସାହେବ ରାଣୀମା'ଙ୍କୁ ସବୁବେଳେ ଡାକନ୍ତି ମହାରାଣୀ ଭିକ୍ଟୋରିଆ ବୋଲି । ଦିନେ ବିପତି ଆସି ହାଜର

ହୋଇଗଲା । ରାଣୀ ମା'ଙ୍କର ଦୁଃଖର ସୀମା ରହିଲାନି । ଡାକ୍ତର ଉପରେ ଡାକ୍ତର ସବୁଠୁ ବଡ଼ ଡାକ୍ତର କଲିକତାରୁ ଆସିଲା । ମଣିମା ବେଳକୁ ବେଳ ଅଧିକରୁ ଅଧିକ ରୋଗାକ୍ରାନ୍ତ ହେଲେ । ଦିନେ ପାହାନ୍ତିଆରୁ ରାଣୀ ମା' ମାଜେଣା ସାରି ସବୁଦିନ ପରି ଅଳତା ସିନ୍ଦୁର ଫୁଲ ପାଟ ପିନ୍ଧି ଯାଇ ରାଜାଙ୍କ ପଲଙ୍କ ପାଖେ ବସିଲେ । ଆମେ ଜାଣିଲୁ ଯେ, ରାଣୀ ମା' ଯିବେ ତାଙ୍କ ଆରାଧ୍ୟ ଦେବତା ମହାଦେବଙ୍କ ପାଖେ ଅଧିଆ ପଡ଼ିବାକୁ । ସତକୁ ସତ ରାଜା ମଣିମାଙ୍କ ଜୀବନ ଭିକ୍ଷା କରି ନିଜ ଜୀବନକୁ ସମର୍ପଣ କରିଦେଇ ଯାଇ ସେଇ ରାଜବାଟୀର ମହାଦେବ ଚନ୍ଦ୍ରଶେଖରଙ୍କ ମନ୍ଦିରରେ ଅଧିଆ ପଡ଼ିଲେ । ଆଜ୍ଞା ! ତିନିଦିନି ଦୁଇ ରାତି କେବଳ ବେଲପତ୍ର ଆଉ ପାଦୁକ ଟିକିଏ ପାଇ, ସେମିତି କାଷ୍ଠାରେ ପଡ଼ିଥାନ୍ତି । କିନ୍ତୁ ଯାହା ଭାଗ୍ୟରେ ଅଛି ତାକୁ କିଏ ବଦଳେଇ ଦେବ ! ତିନିଦିନି ଦିନ ସଂଧ୍ୟାରେ ଆଉ ପାଦୁକ ନ ପାଇ, କିଛି ନଛୁଇଁ ସିଧା ଉଠି ଆସି ମାଜେଣା ଘରେ ପଶିଲେ । ଦାସୀ ଯାଇ ଯାହା ଯେମିତି ଗାଧୁଆ ବିଧାନ ଦେଇଆସିଲା । ରାଣୀ ମା' ଗାଧୋଇ ପାଧୋଇ ଆସି ବାହାର ଘରେ ପଡ଼ିଥିବା ପଲଙ୍କରେ ଶୋଇ କାନ୍ଦିବାର ଆମେ ସବୁ ଦେଖିଲୁ । ଲୁହା ପରି ମନ, ପଥର ପରି ଆଖି, କେତିକି କଷ୍ଟ ହେଲେ ସେ ଆଖିରୁ ଲୁହ ଗଡ଼ିବ, ତାହା ନ ଦେଖିଲେ କେହି ବିଶ୍ୱାସ କରିପାରିବେନି । ତାପରେ ଡାକ୍ତରଙ୍କ ବାଧରେ ଯାଇ ମଣିମାଙ୍କ ପାଖରେ ବସିଲେ । ରାତି ଦୁଇଟାରେ ରାଜାଙ୍କ ପ୍ରୟାଣ ହେଲା । ଭୋରୁ ଭୋରୁ ଯୁବ ରାଜାଙ୍କ ଅଭିଷେକ ହେଲା । ଯୁବରାଜ ନାମକୁ ମାତ୍ର ଗାଦିରେ ବସିଲେ । ଶୁଦ୍ଧ ଘରଠାରୁ ରାଜକାର୍ଯ୍ୟ ଯାଏଁ ରାଣୀମା' ନିର୍ବିଘ୍ନରେ ଚଳେଇନେଲେ । ସମୟ ତା ବାଟରେ ଚାଲିଲା । ଜେମା ଦେଈ ଭାରି ହୁଣ୍ଡି । ପାଠ ଷାଠ କିଛି ପଢ଼ନ୍ତିନି । ଯୁବରାଜ ଯାହା ଯେମିତି ପାଠ ପଢୁଥିଲେ । ତାଙ୍କରି ସାହେବ ମାଷ୍ଟ୍ରାଣୀ ଆସି, ଆମ ଏ ଛୋଟ ଜେମା କାଞ୍ଚନମୟୀକୁ ପାଠ ପଢ଼େଇଲେ । ଆମ କୁନୀ ଜେମା କୁଆଡ଼େ ପାଠ ଗୁଡ଼ାକ ପିଇଦେଇ ଯାଆନ୍ତି । ରାଣୀ ମା'ଙ୍କର ଆଜ୍ଞା ମୁଣ୍ଡ ଚାରିପଟେ ଆଖି । ଗୋଟେ କଡ଼ା ନଜର, ଆମ ଜେମାଙ୍କ ଉପରେ ଥାଏ । ସତେ ଯେମିତି ନଡ଼ିଆ ଫଳ । ବାହାରକୁ ଭାରି ଟାଣ । ଭିତର କିନ୍ତୁ ଭାରି ସରସ । ଯୁବରାଜ ରାଜା ହେଲା ପରେ ତାଙ୍କୁ ଅଳ୍ପ ବୟସରୁ ବିଭା କରାଇଦେଲେ । ଦେବଗଡ଼ ରାଜ ପରିବାରରୁ ସୁନ୍ଦରୀଆ ଝିଅଟିଏ । ସେ ପ୍ରଚୁର ଧନ ସମ୍ପତ୍ତି ଦାସ ଦାସୀ ନେଇ ଆସିଲେ । ପୁଣି ଘରେ ଗହଳ ଚହଳ ଅଧିକରୁ ଅଧିକ ହେଲା । କିନ୍ତୁ ଗୋଟିଏ ଦୁଃଖ ରହିଲା ଜେମା ଦେଈଙ୍କ ପାଇଁ ଖୋଜି ଖୋଜି କୌଣସି ଭଲ ପାତ୍ର ସୁବିଧାରେ ମିଳିଲାନି । ବାଧ୍ୟରେ ଆନ୍ଧ୍ର ରାଇଜରେ କୋଉ ରାଜାଙ୍କର ଗୋଟିଏ ଅକର୍ମା ପୁଅ ଥିଲା । ରାଣୀ ମା'ଙ୍କ ଅନିଚ୍ଛା ସତ୍ତ୍ୱେ ତାକୁଇ ବହୁ ଯାନି ଯୌତୁକ ଦେଇ, ଜେମାଙ୍କୁ ବିଦା କଲେ । ପୁଣି ସେ ଜୋଇଁ କୁଆଡ଼େ ଘୋଡ଼ା ମଦୁଆ । ରାଜାଘର କଥା ତ ଭଲ ମନ୍ଦ ସବୁ ଚଳେ । ପୁଣି ରାଣୀ ମା'ଙ୍କର ନାତିଟିଏ ହେଲା । ଏଥର ନିୟମ ଆଉ ଟିକିଏ ବଦଳିଗଲା । ରାଜା ରାଣୀଙ୍କ ଘରେ କୁମାରଙ୍କର ଖଟ ପଡ଼ିଲା ।

ଦାସୀ ବାହାରେ ରହିବେ । ଯେତେବେଳେ ପୁଅ କାନ୍ଦିବ ଦାସୀ ଯାଇ ରାଣୀଙ୍କ କୋଡ଼ରେ ଦେବ ।

ଆଜ୍ଞା ! ରାଣୀ ମା' ଯେତେ ଟାଣୁଆ ହେଲେ କ'ଣ ହେବ ବେଳେ ବେଳେ ଅଘଟଣ ଓର ଉଣ୍ଡୁଥାଏ । ନୂଆ ବୋହୂ ରାଣୀଙ୍କ ସାଙ୍ଗେ ଆସିଥିବା ଫୁଲଦାସୀ ଲବଙ୍ଗଲତାଟା ଭାରି ଉଦ୍ଧତ । ରାଣୀ ମା'ଙ୍କୁ ଓପରେ ଡରେ ସିନା ଭିତରେ ବଦମାସୀଟେ । ତା' କାମ ରାଜାଙ୍କୁ ମାଜଣାବେଳେ ପାଣି ଢାଳି ଦେବ, ଧୋତି କୁଞ୍ଚିବ, ପଞ୍ଜାବୀ ଭାଙ୍ଗିବ, ଜାମା, ଗେଞ୍ଜି ହାତକୁ ଦେବ । ରାଜା ଗାଧୋଇ ସାରିଲେ ଦେହରେ ଅତର ସିଞ୍ଚିଦେବ । ଆଜ୍ଞା ଯାଠି ଭିତରେ କ'ଣ ରାଣୀ ମା' ଜାଣିପାରିଲେ, ତାକୁ ଜଗାଜଗି କରି ଆଖିରେ ଆଖିରେ ରଖିଥାନ୍ତି । କାଳେ ବୋହୂରାଣୀ ଜାଣିବେ ବୋଲି ପ୍ରାଣ ପଣେ ଜଗିଥାନ୍ତି । ଦିନେ ତାକୁ ପଟକା ପଟକି କରି, ବୁଢ଼ା ନାଏବଙ୍କୁ ଡାକି, ତାକୁ ତୀର୍ଥାଟନରେ ପଠେଇ ଦେଲେ ବୋଲି କହିଲେ । ନାଏବ ଏକା ଫେରି ଆସିଲେ । କହିଲେ ହରିଦ୍ୱାରରୁ ଫେରି ବୃନ୍ଦାବନ ଯାଇଥିଲେ । କିନ୍ତୁ ଆମେ ଶୁଣିଲୁ ନାଏବ ଆଉ ଲବଙ୍ଗଲତାର ଟିକେଟ ହରିଦ୍ୱାରକୁ କାଟି, ଗୋଟେ କୋଉ ଷ୍ଟେସନରୁ ନାଏବ ରାତିରେ ଓହ୍ଲେଇ, ଲେଉଟ ଗାଡିରେ ପଳେଇ ଆସିଲେ । ତା ଭାଗ୍ୟ ଘେନି ସେ କୁଆଡେ ଗଲା ଆଉ କେହି ଜାଣିଲେନି । ଏଣେ ଆମ ଜେମାଙ୍କର ଯେମିତି ଷୋହଳ ବର୍ଷ ପୁରିଛି, ବିଭାଘର ପାଇଁ ଚାରିଆଡେ ନଜର ପକେଇଲେ । ଆଉ ରାଣୀ ମା' ରାଜବାଟୀ ଆଡେ ମୁହଁ ବୁଲେଇଲେନି । ଖାଲି ପାଠ ପଢୁଆ ପୁଅ ଖୋଜିଲେ । କିଛି ନଥିବ ପଛେ, ଖାଲି ପାଠ ପଢି ଚାକିରୀ ଖଣ୍ଡିଏ କରିଥିବ । ଏମିତି ଖୋଜି ଖୋଜି, ଦେବାନ୍ ଘର ପୁଅ, ଆମ ବାବୁଙ୍କ ସାଙ୍ଗେ ଠିକ୍ ହେଲା । ଜେମାଙ୍କ ପରି ତାଙ୍କୁ ବି ପିଉସୀ ପାଳିଛନ୍ତି । ବାପଙ୍କର ମାତ୍ର ଯୋଡିଏ ପୁଅ । ସାନଟି ପୁଅ ହୋଇ ଯାଇଛି । ରାଣୀମା'ଙ୍କର ଭାରି ମନ ପାଇଗଲା । ପ୍ରଜାପତିର ଘଟସୂତ୍ର । ଝିଅକୁ ପିଉସୀ ପାଳିଲା ବେଳକୁ, ପୁଅକୁ ବି ପିଉସୀ ପାଳିଛନ୍ତି । ଖୁବ୍ ଧୁମ୍ ଧାମ୍‌ରେ ବିଭାଘର ହୋଇଗଲା । ଯେମିତି ଦବାର କଥା ସେମିତି ଯାନି ଯୌତୁକ ସାଙ୍ଗେ ମୁଁ ଆଉ କାମକଳା ଆସିଲୁ । କାମକଳା ନାଁ ସିନା ଫୁଲଦାସୀ । କାମକଳା କିନ୍ତୁ ଏଠି ପିଉସୀଙ୍କ କଡା ନଜରରେ ହାଣ୍ଡିଶାଳ ବୋହୂ ହୋଇ ରହିଗଲା । ମୁଁ ଏକା ହାତରେ ଜେମାଙ୍କର ଆଉ ସବୁ କାମ କରେ । ହେଲେ ମୋ ଭିତରେ କାମକଳା ପାଇଁ ସବୁବେଳେ ଗୋଟେ ଦୁଃଖ ରହିଯାଇଛି । ମୋ'ରି ଆଖି ଆଗରେ ଅଣ୍ଟାରେ କଉପୁନି ଗୁଡେଇ ଆସିଥିଲା । ଏବେ ମୋରି ଆଗରେ ବଇସ ଗଡିଗଲାଣି । ତା' ଜୀବନରେ ଆଉ କେବେ ଖାଇବା ପିନ୍ଧିବା ନିଅଣ୍ଟ ହୋଇନି । ହେଲେ କି ଜୀବନ ଆମର ! ଭଗବାନ କାହିଁକି ଆମକୁ ଏ ଚୀର କୁମାରୀ ଜନମ ଦେଇଥିଲେ ? ରାଜମାତାମାନଙ୍କ ବିଧବା ଜୀବନ ଦେଖିଲେ ବି ମୋର ଲୋଭ ହୁଏ । କାହାର ପୁତ୍ର କଷ୍ଟ ଦେଖିଲେ ବି ମୋତେ ଅମୁଛିକିଆ ଲାଗେ । ଏ ଜୀବନରେ ଆନନ୍ଦ ତ ନାହିଁ କାହା ପାଇଁ ଛାତି ଫଟା ଯନ୍ତ୍ରଣା ବି ନାହିଁ ।

ସେଇପିଲାଦିନ ବୋଉ ବାପା ମନେ ପଡନ୍ତି । ତାହା ଛଡା ଆଉ ରକ୍ତନାଡୀ ତ କାହା ଦିହରେ ଯୋଡି ହୋଇନି । ଏଇ ବାବୁ କିନ୍ତୁ, ମାଆ ବାପଙ୍କ ବଳି ସ୍ନେହ ଆଦର ଦେଇଛନ୍ତି । ଆଉ ଜଗନ୍ନାଥଙ୍କୁ କୋଟି କୋଟି ମୁଣ୍ଡିଆ । ମୋ ଭାଗ୍ୟକୁ ତାଙ୍କରି ଆଶ୍ରାକୁ ଆସିଛି । ଏଇଠି ସ୍ୱର୍ଗଦ୍ୱାରରେ ସେଇ ବାବୁ ପୁଅ ହୋଇ ମୋ ମୁହଁରେ ଲୁଣ୍ଡିଏ ନିଆଁ ଦେଇଦେବେ, ଏ ହତାଶିଆ ଜନ୍ମରୁ ମୁକ୍ତି ହୋଇଯିବି । ହଁ ଆଜ୍ଞା ! ଏ ଛୋଟ ମୁହଁରେ ଏତେ ବଡ କଥା କାହିଁକି ଭାବିବି । ପୁଣିତ ଗୋଟିଏ ଭାଗ୍ୟ ଅଛି । ''କପାଳ ଲିଖନ କେ କରିବ ଆନ'' । ହେଇଟି ଦେଖିଲେ ରାଜମାତା ଆତାଙ୍କ କଥା । ଏଡିକି ଭକ୍ତି, ଏଡ଼ିକି ନିଷ୍ଠା । ମା' ପୁଅ ସନ୍ଧ୍ୟା ଆଳତୀ ସାରିଲେ, ମା' ପୁଅ ହବିଷ କରିବେ । ରାଜାଙ୍କର ଟିକିଏ ଦେହ କୁଣ୍ଢେଇ ହେଉଥିଲା । ଡାକ୍ତର ଦେଖି ଇଞ୍ଜେକ୍‌ସନ ଦିଆହେବ ବୋଲି କହିଲେ । ସକାଳୁ ଖାଲି ସର୍ବତ ପିଇଛନ୍ତି । ଖରାବେଳେ ପୁଅ ବସିଛନ୍ତି । ମା' ଫୁଲ ଗୁନ୍ଥୁଛନ୍ତି । ଡାକ୍ତର ଆସି ଇଞ୍ଜେକ୍‌ସନ ଦେଲା । ଆଜ୍ଞା ପାଞ୍ଚ ମିନିଟ୍ ଲାଗିଲାନି । ମୁହଁ ଦିହ ରଙ୍ଗ ପଡିଗଲା । ଗୋଟା ଗୋଟା ଝାଳ ବୋହି ଦିହ ଯାକ ଟେକା ଟେକା ଫୁଲିଗଲା । ପାଣି ପାଣି କହୁ କହୁ ହାତୀ ପରି ଭେଣ୍ଡା ଟଳି ପଡିଲେ । ରାଜମାତା କାଠରୁ ପଥର ହୋଇଗଲେ । ପୁଣି ନାତି ଯୁବ ରାଜରୁ ରାଜା ହେଲେ । ବିଧବା ବୋହୂକୁ ଚାହିଁ, ମୂର୍ଚ୍ଛନାପାତ ହେଲେ ବି, ପୁଣି ରାଣୀ ମା' ଶାସନ ଦଣ୍ଡ ଧରିଲେ । ରାତି ନ'ଟା ବେଳକୁ ଗାଡି ଶବ୍ଦ ଶୁଣି ମୁଁ କହିଲି- ମଦାଳସା ତୁମ ଜେମା ଫେରିଲେଣି । ସେ ଉଠୁ ଉଠୁ କହିଲା ଆଜ୍ଞା ! କେଜାଣି କାହିଁକି, ଆପଣଙ୍କୁ ଦେଖିଲେ ମୋ ମନ ଉଛୁଳି ଯାଏ । ମୁଁ ମୋ ଅକୁହା ଜୀବନ ପୋଥିକି ଆପଣଙ୍କ ଆଗେ ଖୋଲିଦେଲି, ଆଉ ଯେମିତି କେହି ଜାଣିବେନି । ମୋର ଆପଣଙ୍କ ଉପରେ ସେତିକି ଭରସା ଅଛି ।

ଆଉ ଦିନେ ମନ୍ଦିରକୁ ଯିବା ବାଟରୁ, ଉଠି ଆସି କାନ୍ଦ କାନ୍ଦ ହୋଇ କହିଲା ଆଜ୍ଞା ! ଜଗା ଡୋରୀ ଛିଡିଗଲା । ବାବୁଙ୍କୁ ଗଞ୍ଜାମ ବଦଳି ହୋଇଗଲା । ଆଉ କାଲି ଜେମା ବାପଘର ଯିବାହେବେ, ଜେମାଙ୍କୁ ଯେଉଁ ମାଣିକ ଅପା ପାଳିଥିଲା ସେ ଭାରି ବାଧେକା ପଡିଛି । ଦେଖିବାକୁ ଡାକିଛି କହି ତରତରହୋଇ ମନ୍ଦିରକୁ ଗଲାଭାରି । ସତକୁ ସତ ଜେମା ଧାଇମା'ଙ୍କୁ ଦେଖି, ଚାରିଦିନରେ ଫେରି ଆସିଲେ । ପୋଇଲି ମା' ମରିଗଲା । ତା' ବେକର ଗୋଟିଏ ସୁନା ହାର ଆଉ କାନର ହଳେ ନୋଳି ଜେମାଙ୍କୁ ଦବାକୁ ଡକାଇଥିଲା । ଜେମା ଆଉ ବାବୁ ଦଶକୁ ପୁଣି ଯିବେ । ସେଉଠୁ ଫେରିଲେ ଜିନିଷ ପତ୍ର ସଜାଡି ଡେରା ଉଠେଇବେ ଗଞ୍ଜାମକୁ । ଏପରି ବନ୍ଧୁ ବିଚ୍ଛେଦରେ ମୋ ମନରେ ଭାରି ଆଘାତ ଲାଗିଲା । କିନ୍ତୁ ଗଞ୍ଜାମରେ ଥିଲାବେଳେ ମୋର ସେ ବାନ୍ଧବୀଙ୍କ ସହିତ ପତ୍ରାଳାପ ଚାଲିଥିଲା । ଖଣ୍ଡିଏ ପତ୍ର କାମକଳାର ମୃତ୍ୟୁ ଖବର ସହିତ ତାଙ୍କର ବାରିପଦା ବଦଳି ଖବର ଧରି ଆସିଥିଲା । ସେଦିନ କାମକଳା ପାଇଁ ମୋ ଆଖିର ଲୁହ ବାଧା ମାନିନଥିଲା । ଆଉ ଜଗନ୍ନାଥଙ୍କ ଉପରେ ଭୟଙ୍କର ଅଭିମାନ ହୋଇଥିଲା । ସାରା ଜୀବନ ହନ୍ତସନ୍ତ

କଲାପରେ, ମୃତ୍ୟୁପରେ ସ୍ୱର୍ଗଦ୍ୱାରରେ ସାମାନ୍ୟ ମୁଠିଏ ପାଉଁଶ କରି ଉଡାଇଦେବାରେ କଅଣ ବା ତୁମର କ୍ଷତି ହୋଇଥାନ୍ତା । ବିଚାରୀ କାମକାଳାକୁ ଜନମ ଦେଇଥିଲ ସତ, ଆଉ ତା' ଜୀବନରେ କ'ଣ ଦେଲ ପ୍ରଭୁ ? ବାସ୍ତବରେ ଲୁହାର ଜୀବନ ଲୁହରେ ସରିଗଲା ।

ଦିନ ତ ନଈ ପାଣି ପରି ବୋହି ଚାଲିଛି । କେବେ ବଢି ପାଣିରେ କୂଳ ଖାଉଛି ତ, କେତେବେଳେ ଶୁଖିଲା ନଈର ଛାତିକି ଚିରି ଖରାଦିନିଆ ବାଟପରି, ବାଟୋଇ ବାଟ ଚାଲି ଯାଉଛି । ପୁଣି ବଢି ପାଣିତ ପୁଣି ଚଲାବାଟ । ସେମିତି ଦିନେ ମୋ' ସ୍ୱାମୀ ଆସି କହିଲେ ତୁମ ବାନ୍ଧବୀ ପୁଣି ପୁରୀ ଆସୁଛନ୍ତି । ଆମ ବନ୍ଧୁ ଏବେ ସବଜଜ୍‌ରୁ ଜଜ୍ ହୋଇ ପୁରୀରେ ଯୋଗ ଦେବେ । କିନ୍ତୁ ଏଥର ଭଡାଘର ନୁହଁ । ବଙ୍ଗଳା ମିଳିବ । ମୁଁ କହିଲି ହଉ ଯୋଉଠି ହେଲେ ଏଇ ପୁରୀ ତ । ସତକୁ ସତ ଆସି, କଚେରୀ ପଛ ବଙ୍ଗଳାରେ ରହିଲେ । ସେତେବେଳକୁ ତାଙ୍କର ଝିଅ ଦୁହେଁ ବିଭାହୋଇ, ନାତି ନାତୁଣୀ ହୋଇଗଲେଣି । ଏକମାତ୍ର ପୁଅ ମିଲିଟାରୀ ଅଫିସର ହୋଇ ଗଲାଣି । ମନେ ପଡିଲା କେଜେବାପା, ବାପମାଆଙ୍କର, କେତେ ଅନୁରୋଧ ଅନୁନୟ, ଯେହି ବାର ବର୍ଷର ପୁଅ ପାଖରେ । ତୁ ଗୋଟଏ ବୋଲି ପୁଅ, ତୁ ଜମା ଯୁଦ୍ଧ ବିଭାଗରେ ଯିବୁନି । କିନ୍ତୁ ପୁଅର ଏକା ଜିଦ୍ ମୁଁ କ୍ଷତ୍ରିୟ । ମୁଁ ଦେଶରକ୍ଷା କରିବିନିତ ଆଉ କିଏ କରିବ ? ଜବରଦସ୍ତି ବଛା ବଛି ପରୀକ୍ଷା ଦେଇ, ସୈନିକ ସ୍କୁଲ୍‌ରେ ନାଁ ଲେଖାଇଥିଲା । ଆଜି ସେ ସୈନ୍ୟ ବିଭାଗରେ ଅଫିସର । ବଡ ଝିଅଟି ଅଧ୍ୟାପିକା । ତା' ପୁଅ ଯୋଡିକ ଯାଙ୍କ ପାଖରେ । ବଙ୍ଗଳାରେତ ଅର୍ଦ୍ଦଳୀ ପିଅନ, ଆଉ ଅସୁବିଧା କଅଣ ? ହେଲେ ପୂର୍ବଥର ପରି, ଏତେ ନିକଟ ଘନିଷ୍ଠତା ନହେଲେ ସୁଦ୍ଧା ବେଳେ ବେଳେ ମୁଁ ତାଙ୍କ ବଙ୍ଗଳାକୁ ତ କେତେବେଳେ ସେ ଆମ ଘରକୁ ଚାଲିଆସନ୍ତି । ଦୀର୍ଘ ସମୟ ଗପସପ ହୁଏ । ଦିନେ ତାଙ୍କ ବଙ୍ଗଳାରୁ ଯାଇ ସମୁଦ୍ର କୂଳରେ ଚନ୍ଦ୍ର କିରଣରେ ବସିଥିଲୁ । ବାନ୍ଧବୀ କହିଲେ, ଏ ମଧୁଚନ୍ଦ୍ରିକାରେ ଅତୀତ ରୋମନ୍ଥନ କରିବାକୁ ଭାରି ମନ ହେଉଛି । ତୁମର ଆର ଥର କଥା ମନେ ପଡେନି ?

ଥରେ ଆମେ ତିନିଜଣଯାକ ଚାରିଟା ବେଳିଆ ଷ୍ଟେସନ ମାଷ୍ଟ୍ର ଅଧିକାରୀ ବାବୁଙ୍କ ଘରକୁ ବୁଲି ଯାଇଥିଲେ । ଟିକିଏ ଅନ୍ଧାର ହୋଇଗଲା, ଆଉ ରିକ୍ସା ମିଳିଲାନି । ଗୋଟିଏ ରିକ୍ସାରେ, ଏ.ଡି.ଏମ୍.ଙ୍କ ସ୍ତ୍ରୀ, ଆଉ ତୁମେ, ଦିହେଁ ବସି ମୋତେ କୋଡରେ ବସେଇଲ । ଛକରେ ପୋଲିସ୍ ଅଟକେଇଲେ । ତୁମେ ଯେମିତି ବ୍ୟତିବ୍ୟସ୍ତର ଛଳନା କରି ପୋଲିସ୍‌କୁ କହିଲନା ସେ କଥା ଯେ ମୁଁ କେତେ କାହା ଆଗରେ ନ କହିଛି ନାହିଁ । ତୁମ ବୁଦ୍ଧିକି ତାରିଫ୍ କରେ । ତାଙ୍କ କଥା ଶୁଣି, ସେତେବେଳର ଅତୀତ ମୋ ଆଖି ଆଗରେ ନାଚିଗଲା । ତା ସାଙ୍ଗେ ସାଙ୍ଗେ ଆହୁରି କେତେ ଯେ ଘଟଣା ଚିତ୍ର ପରି ଭାସି ଆସିଲା । ସେଦିନ ପୋଲିସର ଧମକରେ, ବିଚରା ରିକ୍ସା ବାଲାଟି, ହଡବଡେଇ ଯାଇ, ମୋ ମୁହଁକୁ ବଲବଲ କରି ଚାହିଁଲା । କାରଣ ମୁହିଁ ତାକୁ ଦମ୍ଭ ଦେଇଥିଲି ତିନିଜଣିଆ କିଛି ହବନି

ଚାଲ । ଯାହା ହେଲେ ମୁଁ ବୁଝିବି । ମନେ ମନେ ଭାବିଥିଲି, କାହିଁକି ବା ପୋଲିସ୍ ଆଗରେ ପଡିବା । ଅନ୍ଧାର ତ ହେଲାଣି । କିନ୍ତୁ କ'ଣ ହେବ ''ଚୋର ଯେଉଁଠି, ରାତି ପାହିବ ସେଇଠି ।'' ମୁଁ ସାଙ୍ଗେ ସାଙ୍ଗେ ପୋଲିସ୍ ବାବୁଙ୍କୁ କହିଲି- ହଉ ରିକ୍ସା ବାଲାକୁ ଯାହା ଦଣ୍ଡ ଜୋରିମାନା କରିବ କର । ରାତି ହୋଇଗଲାଣି । ଆମ ବାବୁମାନେ ବ୍ୟସ୍ତ ହୋଇ ଯିବେଣି । ତୁମେ ପଛରେ ଆସ । ଜଣକୁ ଏଡି.ଏମ୍‌ଙ୍କ କ୍ୱାଟରରେ, ଆଉ ଜଣକୁ ଏସ୍.ଡି.ଜି.ଏମ୍.ଙ୍କ କ୍ୱାଟରରେ, ଆଉ ଜଣଙ୍କୁ ଚେୟାରମ୍ୟାନ୍‌ଙ୍କ ଘରେ ଛାଡିଦେବ । ଆମେ ତାକୁ ପଇସା ଦେଇଦେଲେ, ତୁମେ ତାଠୁ ଜୋରିମାନା ନେଇଯିବ । ପୋଲିସ୍‌ଟି ମୁହଁ ସାଲୁ ବାଲୁ କରି, ବଡ ବିଚରା ହୋଇଗଲା । ସାଙ୍ଗେ ସାଙ୍ଗେ ସ୍ୱର ବଦଳାଇ କହିଲା, ବଦ୍‌ମାସ ଏତେ ଅନ୍ଧାର ହୋଇଗଲାଣି, ତୁ ଶୀଘ୍ର ନଉଚି କି ଦେଖିବୁ ଏଇଲେ । ଠିଆ ହୋଇ ଗାଲୁ ମାରୁଛି । ଚଞ୍ଚଳ ଯା କହି, ପୋଲିସ୍ ତା'ବାଟରେ ଚାଲିଗଲା । ପୁଣି ମନେ ପଡିଗଲା । ହୋଲିରେ ଆମ ମାଇପିଙ୍କ ରଙ୍ଗଖେଳ, ସମସ୍ତଙ୍କ ସମୁଦ୍ର ଗାଧୁଆ । ବାନ୍ଧବୀଙ୍କ ନବଜିଆ ବାବୁଙ୍କର ଗୋରା ତକ ତକ ଦେହରେ କଳା ବୋଳି, ନାଲିଆ କାଗଜଟେ ଜିଭରେ ମାରି, ବୁଲି ବୁଲି ରଙ୍ଗଖେଳ । ସେଇ ମହାକାଳୀ ବେଶରେ ।

ଆଉ ଦିନେ-ଦିନେ ଦାଣ୍ଡରୁ ଖୁବ୍ ବଡ ପାଟିରେ, ବାନ୍ଧବୀ, ବାନ୍ଧବୀ ସମ୍ବୋଧନ କରି, ଘରକୁ ପଶିଯାଇ, ଗୋଟିଏ ଚୌକିରେ ବସିପଡି ଆଉ ଗୋଟିଏ ଚୌକି ଭିଡିଆଣି,ଅତି ବିନୟ ଭାବରେ ଦି ହାତକୁ ଯୋଡି, ବିନୟ ସ୍ୱରରେ କହିବେ, ଏଇଠି ଚୌକିରେ ଟିକିଏ ମୋ ପାଖକୁ ବସିପଡ । ଗୋଟେ ଭାରି ଗୁପ୍ତ କଥା ଅଛି କହିବି । କାହାକୁ କହିବନି । ବେଶି କରି ତୁମ ବାନ୍ଧବୀଙ୍କୁ ଜମା ନୁହେଁ । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରେ ଏମିତି କଥା କ'ଣ ? ମୋ ବାନ୍ଧବୀ ଜାଣିବେନି । ଆସ୍ତେ କାନ ପାଖେ କହିବେ, ପହିଲା ପାଞ୍ଚଦିନ ଅଛି । ହାତରୁ ପାଣ୍ଠି ସରିଗଲାଣି । ତୁମ ବାନ୍ଧବୀ ଖଡ୍‌ଗହସ୍ତ । ସେ କହିଛନ୍ତି, ଆଉ ଯାହା ଯେମିତି ଚଳେଇଦେବେ । କିନ୍ତୁ, ମୋର କେହି ଲୋକ ଅଫିସ୍ ଘରକୁ ଆସିଲେ, ସେ ଚା, ମୋତେ ଦେବେନି । ମୋତେ ହାତରେ ନ ମାରି ଭାତରେ ମାରିଦେବେ । ହଇହେ, ବାନ୍ଧବୀ ! ମୁଁ ହାକିମଟେ । ମୁଁ କ'ଣ କିଛି ଫନ୍ଦି କରିପାରିବିନି ? ମୁଁ ଭାବିଛି, କେହି ଲୋକ ଆସିଲେ, କେତେ କପ୍ ଚା ଦରକାର, ଚିପା ଖଣ୍ଡେ ପିଅନ ହାତରେ ତୁମ ପାଖକୁ ପଠାଇଦେବି । ତୁମେ ସେତିକି କପ୍ ଚା ତା ହାତରେ ପଠାଇଦେବ । ସେଥିରେ ମୋ ପାଇଁ ବି କପେ ଥିବ । ଦେଖିବି ତୁମ ବାନ୍ଧବୀଙ୍କ ବୁଦ୍ଧି । ମୋତେ କେମିତି ଜବତ୍ କରିବେ । ମୁଁ ସାଙ୍ଗେ ସାଙ୍ଗେ କହେ, ହଉ ସବୁ କରିବି ଯେ, କିନ୍ତୁ ଗୋଟିଏ ସର୍ତ୍ତ । ସେ ତାଙ୍କ ଠାଣିମାଣିରେ ଏତେ ବିନୟ ଭାବ ଦେଖାନ୍ତି ଯେ, ଯେମିତି କି ମୋ ବାକ୍ୟ ତାଙ୍କର ଶିରୋଧାର୍ଯ୍ୟ । ମୁଁ କହେ, ମନେରଖ ଆଜିଠାରୁ ମୋତେ କେବେ ବାନ୍ଧବୀ ବୋଲି ଆଉ ଡାକିବନି । ସେ ସାଙ୍ଗେ ସାଙ୍ଗେ ନିରୀହରୁ ନିରୀହତର ଭଙ୍ଗୀରେ, ଦୁଇହାତକୁ ମକଚି, କାନମୁଣ୍ଡା କୁଣ୍ଡେଇ କହିବେ ଆଜ୍ଞା ! କହନ୍ତୁ ତେବେ । ତୁମେ ଆପଣ କ'ଣ,

ଆମ ବନ୍ଧୁ ପତ୍ନୀ ନୁହଁନ୍ତି କି ? ଯଦି ବନ୍ଧୁ ପତ୍ନୀ ହୋଇଥାନ୍ତି, ତେବେ ଆମ ବନ୍ଧୁପତ୍ନୀ ଆମର କେଉଁ ସମ୍ବନ୍ଧ ହେବେ । ସେତେବେଳର ତାଙ୍କ ଅବସ୍ଥା ଦେଖି, ମୁଁ ହସି ହସି ବେଦମ୍ । ତାପରେ ଦୁହିଁଙ୍କର ସମାଧାନ ହୁଏ । ତାଙ୍କ ବନ୍ଧୁଙ୍କ ସାମ୍ନାରେ, ମୋତେ କେବଳ ବାନ୍ଧବୀ ବୋଲି ଡାକିବେ । ଆଉ ଅନ୍ୟବେଳେ ନୁହଁ କି ମୋ ଶ୍ୱଶୁର କି ଅନ୍ୟ କେହି ଗୁରୁଜନ ଥିଲାବେଳେ ଆଦୌ ନୁହଁ । ମୁଁ ସେଦିନ ସମୁଦ୍ର କୂଳେ, ବାନ୍ଧବୀଙ୍କୁ ଏହିସବୁ କଥା କହି, କହିଲି, ବନ୍ଧୁଙ୍କ କଥା ରକ୍ଷା କରି, ଆଉଥର ତୁମକୁ କହି ନଥିଲି । ଏଥର ଭାବିଲି ଏଥର କହିଦେଲେ ଆଉ ବନ୍ଧୁଦ୍ରୋହୀ ହେବିନି । ବାନ୍ଧବୀ କହିଲେ, ସେ କ'ଣ ଆଜି ତାଙ୍କର ସବୁବେଳେ କଥା ସେମିତି । ବନ୍ଧୁଙ୍କ ସ୍ତ୍ରୀ ମୋତେ ମୁଁ ତାଙ୍କୁ ବାନ୍ଧବୀ ବୋଲି ଡାକୁ, ବାନ୍ଧବୀ କହିଲେ ଏଥରକୁ ମିଶାଇ ବାନ୍ଧବୀ, ପୁରୀକୁ ଆସିବା ଆମର ତିନିଥର ହେଲା । ପ୍ରଥମ ଥର ଏହି ସମୁଦ୍ର ପାଖରେ ଗୋଟିଏ ଛୋଟିଆ ଘରନେଇ ରହିଥିଲୁ । ସବୁବେଳେ ତ, ଟେବୁଲ ଉପରେ ମୁହଁଟା ମାଡି ବସିଥିବେ କାମ ସରିବାଯାଏଁ, ଦିନେ କାମ ସରୁ ସରୁ ବେଶି ରାତି ହୋଇଗଲା । ମୋତେ କହିଲେ ମୁଣ୍ଡଟା ବଡ ଭାରି ଲାଗୁଛି । ଚାଲ ଟିକିଏ ସମୁଦ୍ର କୂଳ ବୁଲି ଆସିବା । ନିଜେ ଲୁଙ୍ଗି ଉପରେ ଗେଞ୍ଜି ଖଣ୍ଡେ ମଡେଇ ଦେଲେକି । ମୁଁ ସେଇ ଘର ପିନ୍ଧା ଲୁଗାରେ ଯାଇ ସମୁଦ୍ର କୂଳେ ଟିକିଏ ବସିପଡିଛୁ । ସେଇ ବେଳାଭୂମି କନେଷ୍ଟବଳ ଆସି ଆମ ପାଖେ ହାଜର । ସେ କନେଷ୍ଟବଳ ଆମ ଆଡିକି ଆସିବା ଦେଖୁ ଦେଖୁ କହିଲେ ଆହେ ଜ୍ୟେଷ୍ଠଙ୍କ ପାଖୁ ଏବେ କନିଷ୍ଠବଳ ଆସିଗଲେ କହି, ମୋ ପାଖରୁ ଦି-ହାତେ ଘୁଞ୍ଚିଗଲେ । କନେଷ୍ଟବଳ ଯେମିତି ଏତକ ଦେଖିଦେଇଛି । ସାଙ୍ଗେ ସାଙ୍ଗେ ପାଖକୁ ଆସି, ବାଡି ଖଣ୍ଡ ହଲେଇ ତା ଭାଷାରେ ୟା'ଙ୍କୁ ଧମକେଇବାକୁ ଲାଗିଲା । ପଚାରିଲା ହଇବେ, ତୋ ନାଁ କଣ ? ବାବୁ ଅତି ଡରିଲା ଭଙ୍ଗିରେ କହିଲେ ଆଜ୍ଞା, ମୋ ନାଁ ରଙ୍ଗୁଆଡମ । କନେଷ୍ଟବଳ କହିଲା ସେ ମାଇକିନିଆ କିଏ ? ବାବୁ ଭାରି ଥଙ୍ଗ ଥଙ୍ଗ ହୋଇ କହିଲେ, ସିଏ, ସିଏ ହଉଚି, ଆଲୋ ତୁ କହୁନୁ । ସେତେବେଳକୁ କନେଷ୍ଟବଳର ବାଡିଖଣ୍ଡି ଆସି, ୟାଙ୍କ ଦେହରେ ଥରେଅଧେ ବାଜେ ନବାଜେ ହେଲାଣି । ସେ କହିଲା ଆବେ ତୁ' କହୁନୁ, ତୋ ଘର କୋଉଠା । ଆଜ୍ଞା ଆମ ଗାଁ ତ ସେହି ଡୋମପଡା । ସାଲା ଏ ମାଇକିନିଆକୁ କେଉଁଠି ଭଡାଇ ଆଣିଛୁ ବେ, ଆ ମୋ ସାଙ୍ଗରେ ଫାଣ୍ଡିକି ଆ । ସେତେବେଳକୁ ବାବୁ ପ୍ରାୟ ତା ପାଦ ଧରିବାର ଅଭିନୟ କରି ସାରିଲେଣି । ଆଜ୍ଞା ! ଅଣ୍ଟାରେ ପାଞ୍ଚଶିଉକା ଅଛି ମୋତେ ଛାଡି ଦିଅନ୍ତୁ । ଇଏ ଆମ ଘର ଲୋକ । କିନ୍ତୁ କନେଷ୍ଟବଳର ଭାଗ୍ୟ ଭଲ । ସେ କିଛି ନ ଶୁଣି, ଚାଲ୍ ଫାଣ୍ଡିକି ବୋଲି ବାଡିରେ ଠୁକିଦେଇ ଆଗେ ଆଗେ ଚାଲିଲା । ଇଏ ତା ପଛରେ, ମୁଁ ୟାଙ୍କ ପଛେ ପଛେ ଚାଲିଲି । ଯେମିତି ଆମ ଘର ବାଟ ହୋଇଗଲା । ମୋତେ ପଛରୁ ହାତ ଠାରି ଦେଲେ । ମୁଁ ଘରକୁ ଗଳିଭାରି । ଆଉ ଟିକିଏ ବାଟ ଯାଇଛନ୍ତି କି ନାହିଁ । ବାବୁ ତ କାହିଁରେ କ'ଣ ପାଟି କରି କହିଲେ, ଆଜ୍ଞା ! ତୁମ ଆପଣଙ୍କ ଡରରେ ମୋ ଭାରିଯା କୁଆଡ଼େ

ଗଲା ଆଜ୍ଞା । ତାକୁ ଆଗ ଖୋଜନ୍ତୁ । ମୁଁ ସମୁଦ୍ରରେ ଜୀବନ ହାରିଦେବି ପଛେ, ତାକୁ ଛାଡ଼ି କୁଆଡେ ଯିବିନି । ସେ ଏତେ ରାତିରେ କୁଆଡେ ଯିବ କ'ଣ କରିବ । ବିଚରା କନେଷ୍ଟବଳ କରେ କ'ଣ । ଯାଙ୍କ ନାଁ ଗାଁ ଟିପି କହିଲା, ଯା ସାଲା, ସେ ମାଉକିନିଆ ଏଇଠି କୋଉଠି ଲୁଚି ଯାଇଥିବ ତୁ ତାକୁ ଖୋଜି, କାଲି ଏଗାରଟା ବେଳେ, ଥାନାରେ ହାଜର ହେବୁ । ତା ଆରଦିନ ବାବୁ ଅଫିସ ଯାଇ, ଚପରାଶିକୁ ପଠେଇଲେ । ଏହି ସମୟରେ, ଯେଉଁ କନେଷ୍ଟବଳ ସମୁଦ୍ର-କୂଳ, ପୁରୀ ହୋଟେଲ ସାମ୍ନାରେ, ରାତି ଡିଉଟ୍‌ରେ ଥିଲା ତାକୁ ଡାକି ଆଣ । ସେ ପାଖକୁ ଆସି, ଆବା କାବା ହୋଇ ବାବୁଙ୍କ ମୁହଁକୁ ଚାହିଁ ରହିଲା । ବାବୁ ତା ହାତକୁ ପାଞ୍ଚଟି ଟଙ୍କା ବଢାଇ କହିଲେ, ନେ ତୋତେ ପୁରସ୍କାର ଦିଆଗଲା । ତୁ ପାଞ୍ଚଶିଉକା ଲାଞ୍ଚ ନ ନେଇ ଠିକ୍ ଡିଉଟି କରୁଛୁ । ବିଚରା କନେଷ୍ଟବଳ, ଜ୍ୟେଷ୍ଠ ବଳଙ୍କ ପାଦ ଦୁଇଟି ଧରି ଲମ୍ବହୋଇ ପଡିଗଲା ।

ମୁଁ ପଚାରିଲି ଆଚ୍ଛା ବାନ୍ଧବୀ ! ତୁମ ବଂଶରେ ଏପରି ଚରିତ୍ରର ଲୋକ ମୋତେ କାହିଁକି ଭାରି ବିରଳ ଲାଗେ । ତୁମ ବାବୁ ଗୋଟିଏ ଲୋକ । ଏ କାଳରେ ଏପରି ନିଷ୍ଠା, ନିୟମ, ସ୍ନେହ, ଶ୍ରଦ୍ଧା ଆଉ ସାହାଯ୍ୟକାରୀ ଲୋକ ଆଉ ନଥିବେ । ଯାହାର ଚରିତ୍ରର ପ୍ରଭାବ, ନିଜ ପରିବାରକୁ, ଆଲୋକିତ କରି, ସାହି ପଡ଼ିଶାଙ୍କୁ ବି ବିହ୍ୱଳିତ କରିଦଉଛି । ବାନ୍ଧବୀ ହସି ହସି କହିଲେ, ମୁଁ ତାଙ୍କୁ ସବୁବେଳେ ଥଟ୍ଟା କରେ । କହେ ''ନେଇ ଆଣି ଥୋଇ ପାରିଲେ ଚୋରି ବିଦ୍ୟା ଭଲ ।'' ତୁମର ସେପରି ବୁଦ୍ଧି ନାହିଁ । ସବୁଥିକି ଡର । ନହିଲେ ସେ ରକ୍ତରେ ଏ ଲୋକ । ମତେ ବି ତ ଆଶ୍ଚର୍ଯ୍ୟ ଲାଗେ । ଖାଲି ସେତିକି କି, ଥରେ ରିକ୍ସାରେ କୁଆଡେ ଗଲେ । ତେବେ ରିକ୍ସାବାଲାର ସବୁ ଦୁଃଖ ସୁଖ ପିଲା ମାଇପ, କଥା ସବୁ ପଚାରିବେ କି, ଓହ୍ଲାଇଲା ବେଳକୁ, ଚାରଣା ଆଠଣା ଅଧିକ ଦେଇ କହିବେ, ଗଲା ବେଳକୁ ତୋ ମାଇପ ପାଇଁ ପାନ ଖଣ୍ଡିଏ ନେଇଯିବୁ । ସେମିତି ପିଅନ ହାତରେ ଅଫିସରେ ଚା ମଗେଇବେ କି ସେ ଆଣି ଥୋଇ ଦେଇ ଗଲେ, ତାକୁ ଡାକ ପକେଇବେ । ହଇବେ ! ତୋ ବାବୁ ଏକା ପିଇବ । ଜମା ତୋ ମନ ହଉନି ଚା ପିଇବାକୁ । ନେ ଧଅ । କହି ଅଧେ ଚା ପିଆଲାରେ ଅଜାଡି ତା ହାତକୁ ଧରାଇଦେବେ । ତା ବୋପାର ଆଉ ସାଧ୍ୟ ନଥିବ ନ ପିଇବାକୁ । ଯଦି ଶୁଣିଦେଲେ କେଉଁ ପିଅନ ସ୍ତ୍ରୀର ଦିହ ଖରାପ, ମିଶିରି ପୁଡେ କି କମଳା ପୁଞ୍ଜେ ହାତରେ ଧରି, ଯାଇ ତା ଦୁଆରେ ହାଜର । ପାଞ୍ଚ ଦଶ ଟଙ୍କା ଦେଇ କହିବେ, ତତେ ଡାକ୍ତର ନ ଦେଖେଇଲେ, ତୁ ତାକୁ କାଲି ଅଫିସ ଛାଡିବୁନି । ମୁଁ ସେ କଥା ବୁଝିବି । ଏହି ପ୍ରକାର ଗୁଣର ଅଧିକାରୀ ଯେଉଁ ଲୋକ, ଯାହା ମୁହଁରେ ବାରମାସ ବସନ୍ତର ସୌରଭ ଝରୁଥାଏ, ଯାହା ହସରେ ନନ୍ଦନ କାନନର ପାରିଜାତ ଫୁଟୁଥାଏ, ଯାହାର ପ୍ରତି ପଦରେ ପ୍ରୀତିର ଅମୃତ ଝଙ୍କୃତ ହେଉଥାଏ, ସେଦିନେ ହୋଇଗଲେ ଏକ ମହା ବ୍ୟାଧିର ଶୀକାର । ଏପରି ବେମାରୀ ସିଏ ଲୋକଟି ଯେମିତି ଲକ୍ଷେକେ ଗୋଟିଏ, ବେମାରୀ ବି ଠିକ୍ ସେହିପରି ଲକ୍ଷେକେ ଗୋଟିଏ । କେହି ଡାକ୍ତର,

କି କିଛି ନିଦାନ, ସେ ରୋଗକୁ ଉପଶମ କରିପାରିଲାନି । ଆସ୍ତେ ଆସ୍ତେ ଦେବତୁଲ୍ୟ ରୂପ କ୍ଷୟ ହେବାକୁ ଲାଗିଲା । କେବଳ ହୋମିଓପାଥିକ ଚିକିତ୍ସାରେ ରହି, ଅଫିସ କାମ ଘରେ ଘରେ ଚାଲିଲା । ଏଣେ ଧିରେ ଧିରେ ବନ୍ଧୁଙ୍କ ରୋଗର ତାପ, ବାନ୍ଧବୀଙ୍କୁ ଭସ୍ମୀଭୂତ କରିବାରେ ଲାଗିଲା । ବନ୍ଧୁତ ରୋଗରେ ଶୀର୍ଣ୍ଣ ଦିଶିଲେ, ବାନ୍ଧବୀ ସେବାରେ ଶୀର୍ଣ୍ଣ ହେବାକୁ ଲାଗିଲେ । ମୋ ସ୍ୱାମୀ କଚେରୀରୁ ଫେରିଲାବେଳେ, ପ୍ରାୟ ତାଙ୍କର ପ୍ରିୟ ବନ୍ଧୁଙ୍କୁ ଦେଖି ଆସନ୍ତି । ଘରେ ଆସି ଭାରି ବ୍ୟସ୍ତ ହୁଅନ୍ତି । ଭଗବାନ କାହାକୁ କି ଦଣ୍ଡ ଦିଅନ୍ତି ବୋଲି, ପ୍ରଭୁଙ୍କ ଉପରେ ଅଭିମାନ କରନ୍ତି । ମୁଁ ମଝିରେ ମଝିରେ ଦେଖିବାକୁ ଯାଏ । ବାନ୍ଧବୀତ ଅତ୍ୟନ୍ତ ଭକ୍ତିମତୀ । ତାଙ୍କ ପକ୍ଷେ ଦେବତା ଆଉ ସ୍ୱାମୀଙ୍କ ଭିତରେ ତିଳେ ମାତ୍ର ତଫାତ ନଥାଏ । ତାଙ୍କ ସ୍ୱାମୀଙ୍କର କୌଣସି ସେବା, ଅନ୍ୟ କାହା ହାତରେ କରାନ୍ତିନି । କେବଳ ଟେକାଟେକି ବେଳେ ସେବାଦାସୀ ମଦାଳସା ଏକମାତ୍ର ସାହାଯ୍ୟକାରୀ, କିନ୍ତୁ ଏପରି ବାବୁଙ୍କର ସାମାନ୍ୟତମ ସେବା ପାଇଁ ପିଅନଠାରୁ ମାଳି ପର୍ଯ୍ୟନ୍ତ କେତେବେଳେ କ'ଣ ଦରକାରରେ ଲାଗିବେ ବୋଲି କାମ କରିବାକୁ ଟାକି ବସିଥାନ୍ତି ।

ଗୋଟିଏ ଦିନର କଥା, ଯାହା ହୃଦୟରେ ପଥରର ଗାର ପରି ଆଙ୍କି ହୋଇ ରହିଗଲା । ପ୍ରାୟ ଦିନ ବାରଟା ବେଳ, ମୁଁ ପହଞ୍ଚିଲା ବେଳକୁ ବାନ୍ଧବୀ ବନ୍ଧୁଙ୍କର ନିତ୍ୟକର୍ମ ସାରି, ଗୋଟିଏ ବାଲ୍‌ଟିରେ ପାଳଟା ଲୁଗାପଟାଧରି, ଗାଧୁଆ ଘରକୁ ବାହାରିଥାଆନ୍ତି । ମୋତେ ଦେଖି, ବାଲ୍ଟିଟି ଥୋଇ ଦେଇ କହିଲେ ଭଲ ହେଲା । ତୁମେ ଟିକିଏ ବନ୍ଧୁଙ୍କ ପାଖରେ ବସ । ମୁଁ କାମ ଛିଣ୍ଡାଇ ଆସୁଛି । ମୋତେ ନେଇ ବନ୍ଧୁଙ୍କ ଶୋଇବା ଘରେ ବସେଇ ଦେଇ ସେ ବସିଲେ । ମୁଁ ତାଙ୍କ କାମ ଛିଣ୍ଡାଇ ଆସିବାକୁ କହି, ସେ ଘରେ ଏକା ବସିଲି । ଗୋଟିଏ ଆରାମ ଚୌକି ଉପରେ ବନ୍ଧୁ ଶୋଇଥାନ୍ତି । ଆରାମ୍ ଚୌକିରେ ପଡ଼ିଥିବା ଶେଯ ଉପରେ, ଗୁଆ ଘିଅ ମରା ହୋଇଥିବା କଦଳୀପତ୍ର ପଡିଥାଏ । ଆଉ ଚୌକିର ହାତ ଉପରେ ଗୋଟିଏ ଧଳା ଚଦର ଘୋଡିଆ ହୋଇ, ଦେହକୁ ନ ଲାଗି, ସାରା ଶରୀର ଆବୃତ କରିଥାଏ । କେବଳ ମୁହଁଟି ଦିଶୁଥାଏ । କିଛି ଦୂରରେ ଗୋଟିଏ ଧୂପ ଦାନିରେ କିଛି ବାସ୍ନା ଧୂପ କାଠି ଜଳୁଥାଏ । ବନ୍ଧୁ ଚିତ୍ ହୋଇ ଶୋଇଥାନ୍ତି । ମୋ ଆଡକୁ ବୁଲି ଚାହିଁବା ସମ୍ଭବ ନଥାଇ ଶୁଦ୍ଧା, ମୁଁ ବସିବା ଜାଣି ପାରିଲେ । ଅତି ଧୀର ଗମ୍ଭୀର ସ୍ୱରରେ କହିଲେ, ବାନ୍ଧବୀ ଭାରି କଷ୍ଟ । ବନ୍ଧୁତ ପାଖରେ ନଥାନ୍ତି । ମୋତେ ଏକାନ୍ତରେ ବାନ୍ଧବୀ ଡାକର ସେହି ଥିଲା ତାଙ୍କ ଶେଷ ଡାକ,ସେହି ବାନ୍ଧବୀ ଡାକଠାରୁ ସହସ୍ର ଗୁଣରେ ଆହୁରି କରୁଣ ଥିଲା ତାଙ୍କର ସେହି ଭାରି କଷ୍ଟ ଶବ୍ଦଟି । ସେହି ଭାରୀ ଶବ୍ଦ ଉପରେ କ'ଣ ଓଜନ ଥିଲା କେଜାଣି । ସେହି ଶବ୍ଦ ଯେମିତି ସବୁଦିନ ପାଇଁ, ମୋ କାନରେ ପ୍ରତିଧ୍ୱନିତ ହୋଇ ରହିଗଲା । କେବଳ ମୋ ଆଖି ସେ ଶବ୍ଦର ଉଚ୍ଛଳା ଉତ୍ତର ଦେଇ ଲାଗିଲା । ମୁଁ ସେମିତି ନୀରବରେ ବସି ରହିଲି । ବନ୍ଧୁ ଧୀରେ ଧୀରେ ଆଖି ଯୋଡିକ

ବନ୍ଦ କଲେ । କେବଳ ଦୁଇଧାର ଲୁହ ଦୁଇଆଡକୁ ଗଡି ପଡିଲା । ସେ ଯେ ଯନ୍ତ୍ରଣାର କେଉଁ ଗଭୀର ଗହ୍ୱରରୁ ନିଗିଡି ଧାସିଥିଲା । ଯେ ତାଙ୍କର ପ୍ରକୃତି ସାଥିରେ ପରିଚୟ ନ ହୋଇଛି, ସେ ବୁଝିବା କଷ୍ଟ । ବାନ୍ଧବୀ ଆସିବା ଜାଣି, ମୁଁ ଆଖି ପୋଛି କିଛି ନହେଲା ପରି ଅଭିନୟ କଲି । ବାନ୍ଧବୀ ବନ୍ଧୁଙ୍କୁ ଚାହିଁ, ମୋତେ ଚାହିଁ ପଚାରିଲେ, କ'ଣ କହୁଥିଲେ କି ? ମୁଁ ହଁ କି ନାହିଁ କିଛି ନକହି ଚିକିତ୍ସା ବିଷୟରେ ପଚାରି ବାଆଁରେଇ ଦେଲି । ବାନ୍ଧବୀ ତାଙ୍କ ଓଦା କାନିରେ ବନ୍ଧୁଙ୍କ ଲୁହ ଦୁଇଧାରରୁ ଆସ୍ତେ ଛାପି ଦେଇ ଠାକୁର ପୂଜାକୁ ବାହାରିଲେ । ମୁଁ ଘରକୁ ଫେରି ଆସିଲି ।

ତା'ର ଦି' ତିନିଦିନ ପରେ ମୋ ସ୍ୱାମୀ କଚେରୀରୁ ଫେରି କହିଲେ, ବନ୍ଧୁଙ୍କୁ ଆଜି ଯାହା ଦେଖିଲି ସେ ଅବସ୍ଥା ମୋତେ କିଛି ଭଲ ଲାଗୁନି । ଆଉ ବେଶୀଦିନ ହୋମିଓପାଥିକ୍ ଔଷଧ ଦେବା ଭଲ ହେବନି । ଆଜି ରାତିକି ଟିକିଏ ଚାଲ ! ତୁମ ବାନ୍ଧବୀଙ୍କି କହିବ ଏଥର ଡ଼ାକ୍ତରୀ ଚିକିତ୍ସା କରନ୍ତୁ । ସେଇ ରାତିରେ ମୁଁ ପୂଜାରୀକି ରୋଷେଇ ବରାଦ ଦେଇ ଯିବାକୁ ବାହାରିଲା ବେଳକୁ, ବାବୁ ଅଫିସଘରୁ ଡ଼ାକ ପକେଇଲେ, ଚଞ୍ଚଳ ମୋର ଖଣ୍ଡେ ସାର୍ଟ ଧରି ଆସ । ମହକିଲଙ୍କୁ ଜୁନିୟର ଓକିଲଙ୍କ ଜିମା କରିଦେଇ, ଚଞ୍ଚଳ ସାର୍ଟ ଖଣ୍ଡେ ଗଳେଇ ପକେଇ ବାହାରି ପଡ଼ିଲେ । ସେତେବେଳକୁ ଜଜ୍ ସାହେବଙ୍କ ପିଅନ ଆସି ରିକ୍ସା ଧରି ଦୁଆରେ ହାଜର । କହିଲା କାଲିଠାରୁ ବଡ଼ ଜେମା ଆସିଛନ୍ତି । ଆଉ ମାମା ଆପଣଙ୍କୁ ଡ଼କେଇଛନ୍ତି, ଶୀଘ୍ର ଆସନ୍ତୁ । ପାଞ୍ଚ ମିନିଟରେ ଆମେ ଦୁହେଁ ଯାଇ ପହଞ୍ଚିଗଲୁ । ଦେଖିଲୁ ମା'ଝିଅ ଦୁହେଁ ଏକବାରେ ବିବ୍ରତ । ଝିଅ ବିକଳ ହୋଇ କହିଲା ମଉସା, ଦଦେଇ (ବାପା) କାହିଁକି କେତେବେଳ ହେଲା ଭାରି ବ୍ୟସ୍ତ ହେଉଛନ୍ତି । ଆସନ୍ତୁ ଦେଖିବେ । ସେତେବେଳକୁ ବନ୍ଧୁ ପ୍ରାୟ ନିଃଶ୍ୱାସ କଷ୍ଟରେ ଅତିଷ୍ଠ ହେଉଥାନ୍ତି । ୟା'ଙ୍କୁ ଦେଖୁ ଦେଖୁ କହିଲେ, କିଛି ବ୍ୟବସ୍ଥା କର ! ମୁଁ ଆଉ ସମ୍ଭାଳି ପାରୁନି । ଆଗରୁ ହୋମିଓପାଥିକ୍ ଔଷଧ ଦେଉଥିବା ଜଣେ ଓକିଲ ବନ୍ଧୁଙ୍କୁ ସାଙ୍ଗେ ସାଙ୍ଗେ ଡ଼କା ହେଲା । କିନ୍ତୁ ସେ ଆଉ ଜମା ଆସିଲେନି । ଆଉ କିଏ କେମିତି ଭଦ୍ର ଲୋକ ଆସି ପହଞ୍ଚିଗଲେ । ଡ଼ାକ୍ତରୀ ଚିକିତ୍ସା କରି ଆଗ ଯନ୍ତ୍ରଣା କମେଇ ଦେବାର ସ୍ଥିର କରାଗଲା । ସେତେବେଳକୁ ରାତିର ପ୍ରଥମ ପ୍ରହର ପ୍ରାୟ ଅତିକ୍ରାନ୍ତ ହେଲାଣି । ତାଙ୍କ (ଜଜ୍‌ଙ୍କ) ପଡ଼ିଶା ଘର ହେଉଛି ମୁଖ୍ୟ ଚିକିତ୍ସକଙ୍କ କୋଠୀ । କିଛି ଉପାୟ ନଦେଖି ତାଙ୍କ ଝିଅ ବଡ଼ଜେମା ଯାଇ ମୁଖ୍ୟ ଚିକିତ୍ସକଙ୍କ ଦୁଆର ବାଡ଼େଇ, ଚିତ୍କାର କଲା । ତାର ସେ ବିକଳିଆ 'ଡ଼ାକ୍ତର ମଉସା ଶୀଘ୍ର ଆସନ୍ତୁ' ଡାକରେ ଏଇ କୋଠୀବି କମ୍ପି ଯାଉଥାଏ । ବଡ଼ କଷ୍ଟରେ ମୁଖ୍ୟ ଚିକିତ୍ସକ ଆସିଲେ । କିନ୍ତୁ ଚିକିତ୍ସା କରିବାକୁ ନାରାଜ । ସେ କହିଲେ- ଯିଏ ହୋମିଓପାଥି ଚିକିତ୍ସା କରୁଛନ୍ତି, ସେ ଲେଖି ନଦେଲେ ମୁଁ ଚିକିତ୍ସା ଭାର ନେବିନି । ସେତେବେଳକୁ ରୋଗୀ ପ୍ରାୟ ଜୀବନ ମରଣର ସନ୍ଧି ସ୍ଥଳରେ ! ପୁଣି ଲୋକ ଦୌଡ଼ିଲେ । ସେଇ ହୋମିଓପାଥି ଦଉଥିବା ଓକିଲଙ୍କ ଘରକୁ ! ସେ କିନ୍ତୁ ଘରେ ନାହାନ୍ତି କହି ଆଉ ଜମା ଆସିଲେନି । ମୁଁ ସେତେବେଳକୁ କେବଳ ବାଧ୍ୟ କରୁଥାଏ ବାନ୍ଧବୀଙ୍କୁ, ତୁମେ ଲେଖିଦିଅ ତୁମ ଅନୁମତିରେ

ଡାକ୍ତର ଚିକିତ୍ସା ଭାର ଗ୍ରହଣ କରନ୍ତୁ । ତଥାପି ସେତେବେଳେ ବି ବାନ୍ଧବୀ ଦ୍ୱନ୍ଦ୍ୱରେ ଥାଆନ୍ତି, କାଳେ ଡାକ୍ତରୀ ଚିକିତ୍ସା କରିଦେଲେ ହୋମିଓପାଥିର ଗୁଣ ନଷ୍ଟ ହୋଇଯିବ ବୋଲି । ମୁଁ ଜାଣିଲି ବାନ୍ଧବୀ ସେତେବେଳର ଅବସ୍ଥା ଜମା ଉପଲବ୍ଧି କରି ପାରୁନଥିଲେ । ଯାହା ହେଉ ବାଧ୍ୟ ବାଧ୍ୟତାରେ ମୁଖ୍ୟ ଚିକିତ୍ସକଙ୍କୁ ଚିକିତ୍ସାର ଭାର ଦିଆଗଲା । ମୁଖ୍ୟ ଚିକିତ୍ସକ ଦୋକାନରୁ ଔଷଧ ଆଉ ଡାକ୍ତରଖାନାରୁ ଜଣେ ଡାକ୍ତରଙ୍କୁ ଆଣି, ଆଶୁ-ଚିକିତ୍ସା କରିବାକୁ ଲେଖି ଦେଇ ବିଦାୟ ନେଲେ ।

ସେତେବେଳକୁ ବନ୍ଧୁଙ୍କର ଆର୍ତ୍ତ ଚିତ୍କାର ବେଳକୁ ବେଳ ଅଧିକରୁ ଅଧିକ ହେଉଥାଏ । ଯାହା ଉପରେ ଆଖି ପଡ଼ିଯାଉଥାଏ, ତାକୁ ବିକଳ ହୋଇ ଟିକିଏ ନିଃଶ୍ୱାସ ନେବାପାଇଁ ସାହାଯ୍ୟ ମାଗୁଥାନ୍ତି । ଘଣ୍ଟାକ ଭିତରେ ଗାଡ଼ି ଯାଇ ଔଷଧ, ଡାକ୍ତର, ବେହେରା ସମସ୍ତଙ୍କୁ ଧରି ଆସି ପହଞ୍ଚିଲା । ଡାକ୍ତର ଇଞ୍ଜେକ୍‌ସନ ଦେବା ପାଇଁ, ଦେହରୁ ଚାଦର ଉଠାଇବାକୁ କହିଲେ । ଚାଦରଟି ପୂରା ଦେହରେ ଜଡ଼ି ଯାଇଥାଏ । ବାନ୍ଧବୀ ଯେଉଁଠାରୁ ଚାଦର ଛଡ଼ାଉଥାନ୍ତି ସେଇଠୁ ରକ୍ତ ଝରୁଥାଏ । ମୁଁ ପୂରା ଦେହ ଦେଖିଲି । ସେ ଦୃଶ୍ୟ ଯେ ଦେଖିଥିବ, ଆଉ ବନ୍ଧୁଙ୍କୁ ଯିଏ ଜାଣିଥିବ, ସେ ନିଶ୍ଚୟ ଭଗବାନଙ୍କୁ ଅଭିଶାପ ଦେବ । ପ୍ରଭୁ ହେ ! (ଜୀବକୁ ଚାହିଁ ସିନା ନାରାଚ ପେଶନ୍ତି) ଇଏ କ'ଣ ? କାହାକୁ କି ଦଣ୍ଡ ଦେଉଛ ? ଯାହା ହେଉ, କଷ୍ଟେ ମଷ୍ଟେ ଗୋଟିଏ ଇଞ୍ଜେକ୍‌ସନ ଦେଲାପରେ, ସବୁ ଯନ୍ତ୍ରଣା ମୁହୂର୍ତ୍ତକେ କମିଗଲା । ବନ୍ଧୁ ନୀରବରେ ଶୋଇ ପଡ଼ିଲେ । କିଛି ସମୟ ପରେ ଯିଏ ଯୁଆଡ଼େ ଘରକୁ ଆସିଲୁ, ରାତି ବେଶୀ ହୋଇଯାଇଥିବାରୁ ଆଉ ଖାଇବାର ଆଗ୍ରହ ନଥିଲା । ଯାହା ଦିଟା' ଦିଟା' ଖାଇ ସେଇ ବିଷୟ ଆଲୋଚନା କରୁ କରୁ କେତେବେଳେ ନିଦ ଲାଗିଗଲା । ସେଇ ପାହାନ୍ତିଆରେ ଖୁବ୍ ଜୋର୍‌ରେ ଦାଣ୍ଡଦୁଆରର ଡାକ ଘଣ୍ଟି ବାଜି ଉଠିଲା । ଜଜ୍ ସାହେବଙ୍କ ପିଅନ, ବାବୁଙ୍କୁ କହିଦେବ ଶୀଘ୍ର ଆସନ୍ତୁ ସବୁ ଶେଷ ହୋଇଗଲାଣି, କହି ପକେଇଲା । ଯଥା ଶୀଘ୍ର ଆମେ ଦୁହେଁ ଯାଇ ପହଞ୍ଚିଲୁ ।

ବନ୍ଧୁଙ୍କର ଧଳା ଚାଦର ଆବୃତ ଦେହରୁ ମୁହଁଟି ପୂରା ମୁକ୍ତଅଛି । ଆଖି ଯୋଡ଼ିକ ସବୁଦିନ ପାଇଁ ବନ୍ଦ ହୋଇଯାଇଛି । ଡାହାଣ ହାତଟି ଖଟରୁ ଗୋଟିଏ ପାଖକୁ ଝୁଲି ପଡ଼ିଛି । ସେଇ ହାତଟିକୁ ନିଜର ବାଆଁ ହାତରେ ମୁଠେଇ ଧରିଛନ୍ତି ବାନ୍ଧବୀ । ହିନ୍ଦୀ ଗୀତା ଖଣ୍ଡି ପିଢ଼ା ଉପରେ ଖୋଲା ହୋଇ ଥୁଆହୋଇଛି । ବନ୍ଧବୀ ସାକ୍ଷାତ ଗୋଟିଏ ପଥର ମୂର୍ତ୍ତି ପାଲଟି ଯାଇଛନ୍ତି । ଆଖିରେ ବିନ୍ଦୁଏ ବି ଲୁହ ନାହିଁ । ଧୀରେ ଧୀରେ ଗୀତାର ଶ୍ଳୋକ (ଜାତସ୍ୟ ହି ଧ୍ରୁବ ମୃତ୍ୟୁ) ପଦଟି ଆବୃତି କରୁଛନ୍ତି । ଝିଅ ଗୋଟିଏ ଝରକାର ତଳ କାଛିରେ ବସିଛି । ଦୁଇ ଆଖିରୁ ଧାରା ଶ୍ରାବଣ ଝରୁଛି । ନାତି ଯୋଡ଼ିକ ନୀରବ ବିସ୍ମୟରେ ସବୁରି ମୁହଁକୁ ନିରୀକ୍ଷଣ କରୁଛନ୍ତି । ପୁଅ ପାଖୁ ଆଗରୁ ଟେଲିଗ୍ରାମ ଯାଇଛି । ସାନ ଝିଅ ବି ଖବର ପାଇଛି । ମୋତେ ଯେମିତି ବାନ୍ଧବୀ ଦେଖିଦେଇଛନ୍ତି, ସାଙ୍ଗେ

ସାଙ୍ଗେ ତାଙ୍କର ଦୁଇ ଆଖି ଲୁହରେ ଭର୍ତ୍ତି ହୋଇଗଲା । ଆଉ ଅକ୍ଷର ବୋଧେ ଦେଖା ଗଲାନି, ମୋତେ ବସିବାକୁ ସଙ୍କେତ ଦେଇ ଗୀତା ପଢ଼ିବାକୁ ନିର୍ଦ୍ଦେଶ ଦେଲେ । ମୁଁ ବସି ଚେଷ୍ଟା କଲି କିନ୍ତୁ ମୋ ଆଖିର ଲୁହ ସେତେବେଳକୁ ବନ୍ଧ ଭାଙ୍ଗି ସାରିଥିଲା । ବାନ୍ଧବୀ ସେମିତି ଦୃଢ଼ ଭାବରେ ବନ୍ଧୁଙ୍କ ହାତଟିକୁ ମୁଠେଇ ଧରିଥାନ୍ତି । ଦୁଇଟି ଯାକ ଆଖି ପରିପୂର୍ଣ୍ଣ ଲୋତକରେ ଟଳମଳ ହେଉଥାଏ । କିନ୍ତୁ ଗୋଟିଏ ଟୋପା ଲୁହବି ତଳେ ପଡୁ ନଥାଏ । ସେତେବେଳେ ଓଡ଼ିଶାର ରାଜ୍ୟପାଳ ପୁରୀରେ ଥାଆନ୍ତି । ତାଙ୍କ ତରଫରୁ ଗୋଟିଏ ବଡ଼ ତାରବନ୍ଧା ଫୁଲମାଳ ଆଣି ଜଣେ ପାଦ ଉପରେ ଥୋଇ ସମ୍ମାନ୍ ସୂଚକ ସଲାମଟିଏ ଦେଇଗଲା । ନାତି ଯୋଡ଼ିକଙ୍କ ମୁହଁ ଫୁଲତୋଡ଼ାକୁ ଚାହିଁ, ଆନନ୍ଦରେ ଭରି ଉଠିଲା । ଆମ ଅଜାଙ୍କୁ ଏଡ଼େ ସୁନ୍ଦର ଫୁଲମାଳ କିଏ ଦେଲା ? ପୁଣି ଏମିତି ଢ଼ଙ୍ଗରେ ଦୁଇ ଗୋଡ଼ ବାଡ଼େଇ ନମସ୍କାର ଜଣାଇଲା । ଇଏସବୁ କ'ଣ ହେଉଛି ? ପିଲାଯୋଡ଼ିକ ଯେମିତି ଦୁଃଖ ଆଉ ଆନନ୍ଦର ସୀମା ମଝିରେ ହଜିଯାଉଥାନ୍ତି । ବାହାରେ ସଂକୀର୍ତ୍ତନ ଦଳ ଆସିଗଲେ ମହାଯାତ୍ରାର ଆୟୋଜନ ଚାଲିଲା । ପଥଶ୍ରାଦ୍ଧର ପାଥେୟ ଠାରୁ ଯାତ୍ରାର ଦାନ ଦକ୍ଷିଣା ପର୍ଯ୍ୟନ୍ତ ସବୁ ଯୋଗାଡ଼ ହୋଇଗଲା । କେହି ଜଣେ ଆସି, ମୋ କାନ ପାଖେ ଧୀରେ କହିଲା, ଆପଣ ଟିକିଏ ଦୁହିଁଙ୍କ ହାତକୁ ଅଲଗା କରି ଦିଅନ୍ତୁ । ଆମେ ଶବ ବାହାରକୁ ନେଇଯିବୁ । ବେଳ ଢ଼େରି ହେଇଯାଉଛି । ଖରା ମାଡ଼ି ଆସିବ ।

ଶବ ଶବ୍ଦରେ ମୋର ଅନ୍ତରାତ୍ମା ଥରିଗଲା ପୁଣି ଇଏ କ'ଣ ମୁଁ ଶୁଣୁଛି ? ଦିନେ କିଏ କେଉଁ ମହାମନ୍ତ୍ରରେ କେଉଁ ଶୁଭ ଲଗ୍ନରେ, ଏଇ ହାତ ଯୋଡ଼ିକ ଏକାଠି କରିଦେଇଥିଲା ଆଉ ଆଜି ? ତାକୁ ବିଚ୍ଛେଦ କରିବାର ଭାର ମୋ ଉପରେ । ମୁଁ ତାଙ୍କୁ ହାତଯୋଡ଼ି କହିଲି, ମୁଁ କଣ ? କୌଣସି ସ୍ତ୍ରୀ ଲୋକ ପକ୍ଷେ ଏହା ସମ୍ଭବ ନୁହେଁ । ଆପଣ କେଉଁ ପୁରୁଷ ଲୋକଙ୍କୁ ଏ ଭାର ଦିଅନ୍ତୁ । ସେଇଆ ହେଲା । ମୁଁ ତେଣିକି ଚାହିଁ ପାରିଲିନି । ସେହାତ ଛଡ଼େଇବା ବି ଗୋଟିଏ ପୁରୁଷ ପାଖରେ ସହଜସାଧ ନଥିଲା । ତାକୁ ବିଚ୍ଛିନ୍ନ କରିବାକୁ ଦୁଇଜଣ ପୁରୁଷ ଲୋକଙ୍କୁ କିଛି ପରିଶ୍ରମ କରିବାକୁ ପଡ଼ିଥିଲା । ତାପରେ ବାନ୍ଧବୀ ସେଇଠି ମୁହଁମାଡ଼ି ପଡ଼ି ଯାଇଥିଲେ । ଖୁବ୍ ବଡ଼ ପାଟିରେ ଜଗନ୍ନାଥ ଜଣାଣ ଗାଇ ଗାଇ ମୂର୍ଚ୍ଛା ହୋଇଗଲେ, ଜଣେ ଡାକ୍ତର ଆସି ନିଶା ଇଞ୍ଜେକ୍ସନ ଦେଇ ଶୁଆଇ ଦେଇଥିଲେ । ମାହାଯାତ୍ରାର ଯାତ୍ରା (ମହା ସମାରୋହରେ) ସ୍ୱର୍ଗଦ୍ୱାର ଚାଲିଯିବା ପରେ ଆଗରୁ ଖବର ପାଇଥିବା ଯେତେଲୋକ ଟ୍ରେନ୍ ବସ୍‌ରେ ଆସିଲେ । ସେମାନେ ରିକ୍ସାରେ ବସି ଘର ଠିକଣା କହୁଥିଲା ବେଳେ ରିକ୍ସାବାଲାମାନେ ବାଷ୍ପ ଗଦ ଗଦ ସ୍ୱରରେ ସେମାନଙ୍କୁ ସ୍ୱର୍ଗଦ୍ୱାର ନେଇ ଯିବାର ଅନୁରୋଧ କରି, ଜୋରରେ ଧାଉଁଥିଲେ । ଏପରି ଘଟଣା ସାଧାରଣରେ ବିରଳ । ମୁଁ ପ୍ରାୟ ଚାରିଦିନ ପର୍ଯ୍ୟନ୍ତ ବନ୍ଧବୀଙ୍କୁ ଦେଖିବାକୁ ଯାଇନଥିଲି । ମୋର କାହିଁକି ତାଙ୍କ ସାମ୍ନାକୁ ଯିବାକୁ ସାହାସ ହେଉନଥିଲା । ସବୁଦିନର ଭଲମନ୍ଦ, ତାଙ୍କ ପୁଅ ଝିଅ ବନ୍ଧୁ ବାନ୍ଧବ ଆସିବା କଥା ବୁଝୁଥିଲି ସିନା କିନ୍ତୁ ତାଙ୍କ ମୁହାଁ ମୁହିଁ ହେବାକୁ ଆଦୌ ଛାତି ପତାଉ ନଥାଏ ।

ତଥାପି ସାହାସ ସଞ୍ଚୟ କରି ଯେଉଁଦିନ ଯାଇ ଦେଖିଲି ମୋର ଛାତି ଫାଟି ଗଲାପରି ଲାଗିଲା । ଗୋଟିଏ ବଖରାର କୋଣରେ ଗୋଟିଏ ଦ୍ୱିପ ଜାଳି ପୂରା ଶ୍ୱେତ ଆବରଣ ଭିତରେ ନିରାଭରଣା ଶରୀରକୁ ଘୋଡ଼େଇ ସେମିତି କାଠପିତୁଳା ପରି ବସିଛନ୍ତି ବାନ୍ଧବୀ । ତାଙ୍କ ପାଖରେ ତାଙ୍କର ପାଳିତ ମାତା (ପିଇସୀ) ବସି କ'ଣ କହୁଛନ୍ତି । ମତେ ଦେଖି ପିଇସୀ ଉଠିଗଲେ । ମୋତେ କହିଲେ, ଗଲାବେଳକୁ ମୋ ସାଙ୍ଗରେ ଟିକିଏ କଥା ହୋଇ ଯିବେ । ମୁଁ ଆଜ୍ଞା କହି ଆଉ ଟିକିଏ ପାଖକୁ ଯାଇଛି, ବାନ୍ଧବୀ ସେଇ ଲୁଚେଇଥିବା ହାତଟି ବାହାର କରି ମୋ ହାତକୁ ଧରି କହିଲେ । ମୁଁ ତୁମକୁଇ ଖୋଜୁଥିଲି । ଜାଣୁଥିଲି ତୁମେ ମୋ ପାଖୁ ଆସିବାକୁ କଷ୍ଟ ପାଉଛ । କିନ୍ତୁ ଡେରୀରେ ଆସିବ । ମୁଁ କଣ ଭାବିଛି ଜାଣିଛ । ମୋର ଏଠି ଜଗନ୍ନାଥ ଅଛନ୍ତି । ଆଉ କେହି ନାହାନ୍ତି ବୋଲି ମୁଁ ଭାବି ନେଇଛି । ଜଗନ୍ନାଥ ତ ନିଜେ କିଛି କରନ୍ତିନି । ତୁମେ ଟିକିଏ ତାଙ୍କର ମାଧ୍ୟମ ହେବ । ମୋର ଆଉ ତୁମ ବନ୍ଧୁଙ୍କର ସ୍ଥିର କରିଥିଲୁ ଏ ଶେଷ ଜୀବନ ଏ ପୁରୀରେ କଟାଇଦେବୁ । ସେ ତାଙ୍କ ବାସନା ପୂରଣ କରିଦେଲେ । ବାକି ମୁଁ । ମୋତେ ଏଇଲେ ପ୍ରସ୍ତାବ ଦେବେ ପୁଅ, ଝିଅ ଗାଁ କି କଟକ ଏମିତି କେଉଁଠି ବା କାହାପାଖେ ରହିବାକୁ । କିନ୍ତୁ ତୁମେ ମୋତେ କଥା ଦିଅ, ତୁମରି ଭରସା ପାଇଲେ ମୋ ଶେଷ ଜୀବନ ଏଇ ଜଗନ୍ନାଥଙ୍କ ପାଦତଳେ କଟାଇଦେବି ।

ମୁଁ କିନ୍ତୁ ସେତେବେଳେ ନିର୍ବିକାର ଭାବରେ ଗୋଟିଏ ଜୀବନର ତିନୋଟି ଅଧ୍ୟାୟ ଅଧ୍ୟୟନ କରି ଯାଉଥିଲି । ରାଜଦୁଲଣୀ ଅଫିସର ଘରଣୀର ତୃତୀୟ ଅଧ୍ୟାୟଟି ଜଗନ୍ନାଥଙ୍କ ପାଦତଳେ ପାଗଳିନୀ ସେବାଦାସୀ ହୋଇ କଟାଇଦେବା ପାଇଁ ବ୍ୟାକୁଳ ନିବେଦନ । ମୁଁ ଆଉ କିଛି ନ ଭାବି ସେଇ ମୁଠା ହାତଟିକି ନିର୍ଭର ପ୍ରତିଶ୍ରୁତି ଦେଇ କହିଲି, ଜଗନ୍ନାଥ ବଡ଼ଲୋକ ତାଙ୍କର ଇଚ୍ଛା ନିଶ୍ଚୟ ପୂରଣ ହେବ ।

ତାଙ୍କ ପାଳିତ ମା' ମୁଁ ଫେରିଆସିଲା ବେଳକୁ ଆତା (ପିଇସୀ) ମୋ ହାତ ଧରି ଗୋଟିଏ ଖଟ ଉପରେ ମୋତେ ବସାଇଲେ । ମୁଁ ଆଗରୁ ଜାଣିଥିଲି ଯେ ତାଙ୍କର ସ୍ୱାମୀ, ପୁଅତ ଯାଇଥିଲେ ପୁଣି ଅଳ୍ପ ଦିନି ଭିତରେ ଝିଅ ଜୋଇଁ ଚାଲିଗଲା ପରେ ଏଇଠି ପୁରୀରେ ଗୋଟିଏ ମଠରେ ଗେରୁଆ ବସ୍ତ୍ର ପିନ୍ଧି କିଛି ଠାକୁର ଆଉ ଗୋଟିଏ ଚାକରକୁ ଧରି ଶେଷ ସନ୍ୟାସ ଜୀବନ କଟାଉଛନ୍ତି । ମୋତେ କହିଲେ, ମୋ କଥା ତ ଜାଣିଛନ୍ତି ଇଏ ମୋ ଜୀବନର ଶେଷ ନା ଆଉ କିଛି ଅଛି ଜଗନ୍ନାଥ ଜାଣନ୍ତି । ଜେମା ମୋର ପାଳିତା ହେଲେ ବି, ଜନ୍ମ କଲାରୁ ବେଶୀ । ତାର ଚରିତ୍ରବତା ମୁଁ ଆଉ କାହାରି ଦେଖିନି । ଆଉ ଏ ଜୋଇଁ ଥିଲେ ମୋର ସବୁଠାରୁ ଆଦରର ଓ ଆପଣାର । ତାଙ୍କରି ଭରସାରେ ମୁଁ ଏଇଠି ରହିଥିଲି । ବର୍ତ୍ତମାନ ସେ ଚାଲିଗଲେ । ମୋ କଥା ଛାଡ଼ନ୍ତୁ ଜେମାଙ୍କ କଥା ଭାବି ମୋତେ ଅତି ବେତିବ୍ୟସ୍ତ ଲାଗିଲା ବେଳକୁ ସତେ ଯେମିତି ଜଗନ୍ନାଥ ଚେତାଇ ଦେଲେ ଆପଣ ସ୍ୱାମୀ ଓ ସ୍ତ୍ରୀ ଦୁହେଁ ତାଙ୍କର ଏକମାତ୍ର ଭରସା ହେବେ । ଆଉ ଜେମା ପୁରୀରେ

ଜଗନ୍ନାଥଙ୍କ ଆଶ୍ରାରେ ରହିବେ । ସତକୁ ସତ ସେ କ୍ୱାର୍ଟର ଖାଲି କଲାବେଳକୁ ସାରଦା ଦେବୀ ରୋଡ଼ରେ ଜଗନ୍ନାଥ ଧାମ ନାମରେ ପୁରୁଣା କୋଠାଟିଏ ମିଳି ଯାଇଥିଲା ।

ଚୀର କୁମାରୀ ମଦାଳସା ଶେଷ ଇଚ୍ଛାଟିକ ଜଗନ୍ନାଥ ଧାମରେ ସ୍ୱର୍ଗଦ୍ୱାରରେ ବାବୁଙ୍କ ହାତରେ ଟିକିଏ ନିଆଁ ପାଇବାର ଆଶାଟି ନିରାଶାରେ ପରିଣତ ହୋଇଗଲା । ତା ଶରୀର ବେଳକୁ ବେଳ ରୁଗ୍ଣ ଆଉ ଦୁର୍ବଳ ହେବାକୁ ଲାଗିଲା । ତାର ସମସ୍ତ ଦାୟିତ୍ୱ ବାନ୍ଧବୀଙ୍କୁ ତୁଲାଇବାକୁ ବଳେଇ ପଡ଼ିଲା । ସେଇଠି ଜଣେ ସମାଜସେବୀଙ୍କ ପରାମର୍ଶ କ୍ରମେ ତାକୁ କଟକ ଦୟାମାତା ଆଶ୍ରମକୁ ସ୍ଥାନାନ୍ତରିତ କରାଗଲା । ସେ ଲାଳନ ପାଳନ କରିଥିବା ବାନ୍ଧବୀଙ୍କ ପୁଅ ତାର ଆଶ୍ରମର ଭାର ବହନ କଲା । ଶେଷରେ ଚୀରକୁମାରୀର ଆକାଙ୍କ୍ଷାକୁ ଧୂଳିସାତ୍ କରି ତା'ର ଶେଷ ଆଶ୍ରୟକୁ କଟକର ସତୀ ଚଉରା ଗ୍ରହଣ କଲା । ବାବୁଙ୍କ ହାତରୁ ନିଆଁ ଟିକିଏ ତ ପାଇଲାନି, ସ୍ୱର୍ଗଦ୍ୱାର ବି ବାସନ୍ଦ ହୋଇଗଲା ଚୀର ହାହାକାର ସେଇନାରୀ ଦେହଟି ପାଇଁ ।

ସ୍ୱାମୀ ଯିବା ଦିନଠାରୁ ବାନ୍ଧବୀ ଭାତ ଖାଇବା ଆଉ ଖଟ ଶେଯରେ ଶୋଇବା ତ୍ୟାଗ କରିଥିଲେ । ପ୍ରାୟ ସମୟ ଜଗନ୍ନାଥଙ୍କ ପାଖରେ ଓ ଆତାଙ୍କ ସେବାରେ କଟାଇ ଦେଇ ସତେ ଯେମିତି ଅତୀତକୁ ପୂରା ପାଶୋରୀ ଯାଇଥିଲେ । କିଛି ଦିନ ପରେ ବଡ଼ ଝିଅ ଖଣ୍ଡିଏ ଜାଗା କିଣି ସେଥିରୁ ଅଧେ ମା'ଙ୍କ ନାଁରେ କରି ସେଥିରେ ଖଣ୍ଡିଏ ଘର ତିଆରି କରି ସାମ୍ନା କାନ୍ଥରେ ଗୋଟିଏ ବଡ଼ ଜଗନ୍ନାଥ ମୂର୍ତ୍ତି କରାଯାଇଥିଲା । ସେହି ଘରର ନାମ ଜଗନ୍ନାଥ ଧାମ, ଗଳିଟି ମାମା'ଙ୍କ ଗଳି ନାମରେ ସାଧାରଣରେ ନାମିତ ହୋଇଥିଲା । ଅନ୍ୟାନ୍ୟ ଚିଠି ପତ୍ର ଟଙ୍କା ପଇସା ସରକାରୀ ଡାକ ପ୍ରଭୃତି ଆମ ଘର ଠିକଣାରେ ଆସୁଥିଲା । ମୋ ସ୍ୱାମୀ ଅନ୍ୟାନ୍ୟ ଯାବତୀୟ କାର୍ଯ୍ୟରେ ତାଙ୍କୁ ପୁରାପୁରି ସାହାଯ୍ୟ କରୁଥିଲେ । ବାନ୍ଧବୀ ରୁଗ୍ଣା ଆତାଙ୍କ ସେବାରେ ନିୟୋଜିତ ଥିଲାବେଳେ ଆତାଙ୍କର ପୁଅ ମରିଯିବା ପରେ, ନାତି, ସମ୍ପତ୍ତିବାଡ଼ି, ଦିଅଁ-ଦେଉଳ, ଦାସ-ଦାସୀ ଚଳାଉଥିଲେ । ସେ ଦିନେ ହଠାତ୍ ହୃଦ୍‌ରୋଗରେ ଚାଲିଗଲେ । ଆତା ନିଜ ଉଆସକୁ ଯାଇ ପାରିଲେନି ସିନା, ପୁରୀରୁ କିଛି ମହାପ୍ରସାଦ ନାତିର ଶୁଦ୍ଧଘର ପାଇଁ ଲୋକ ହାତରେ ପଠାଇଦେଲେ । ପୁଣି କିଛି ଦିନ ପରେ ଜଣାପଡ଼ିଲା । ସେଇ ନାତିର ସ୍ତ୍ରୀ (ନାତୁଣୀ-ବୋହୂ) କର୍କଟ ରୋଗରେ ଆକ୍ରାନ୍ତ । ସେ ବି ଗଲେ ତାପରେ ଏଇ ପୁରୀରେ ଖଣ୍ଡିଏ ଛୋଟିଆ ଘର କିଣି ଆତାଙ୍କ ବିଧବା ବୋହୂ ଆଉ ସାନ ନାତି ନାତୁଣୀ-ବୋହୂ, ତା'ର ପିଲାମାନେ ଏଇଠି ଆସି ରହିଲେ । ତଥାପି ବିଧାତାର ଅବୁଝା ମନ ବୁଝିଲାନି । ବୋହୂ ଟଙ୍କା ଆଉ ଚାଉଳ ଘରିକା ଆଣିବାକୁ ଘରକୁ ଯାଇଥିଲେ । ସେଇଠି ତାଙ୍କର ହୃଦ୍ ଯନ୍ତ୍ରଣା ହୋଇ କାଳ ହୋଇଯିବାର ଖବର ଆସିଲା ।

ଏଇ ସପନ ପୁରୀର, ଗୋଟିଏ ନିଶାଣପରି ଏବେ ବି ବାନ୍ଧବୀ ଅଛନ୍ତି । ଜଗନ୍ନାଥଙ୍କ ଉପରେ ନିଜର ସମସ୍ତ ସତ୍ତାକୁ ଯେପରି ଅଜାଡ଼ି ଦେଇଛନ୍ତି । ତଥାପି ଜଗନ୍ନାଥ ସାନ-

ବଡ଼ ପରୀକ୍ଷାରେ ତାଙ୍କୁ ପରୀକ୍ଷା ନ କରି ଛାଡ଼ୁ ନାହାନ୍ତି । ଥରେ ଦୁଇଥର ଜଗନ୍ନାଥଙ୍କ ସହିତ ସାକ୍ଷାତ ହେଲାଣି ବୋଲି ଭାବି ନିଜକୁ ଚାମର ସେବା ଫୁଲଗୁଛା ତୁଳସୀ ପତ୍ରରେ ଗୀତ-ଗୋବିନ୍ଦ ଲେଖା ପରି କାର୍ଯ୍ୟ ମାନଙ୍କରେ ହଜେଇ ଦେଇଛନ୍ତି । ସତେ ଯେମିତି ତାଙ୍କ ହାତ ଗୁନ୍ଥା ଫୁଲ ପିନ୍ଧିବା ପାଇଁ ଜଗନ୍ନାଥ ତାଙ୍କ ପଛରେ ବହୁଦୂର ଧାଇଁ ଯାଇଛନ୍ତି ।

ଦିନକର ଘଟଣା ତାଙ୍କ ପୁଅ ନୂଆ ବୋହୂଙ୍କୁ ଧରି କଟକରେ ଥାଆନ୍ତି । ବାନ୍ଧବୀତ ଜଗନ୍ନାଥଙ୍କୁ ଛାଡ଼ି କୁଆଡ଼େ ଯିବାକୁ ରାଜି ହୁଅନ୍ତିନି । କେବଳ ପୁଅଙ୍କ ବାଧ୍ୟରେ ବୋହୂଙ୍କୁ ଘର ମଡ଼େଇବାକୁ ଯାଇ କଟକରେ ଚାରିଦିନ ଅଟକି ଯାଇଥିଲେ । ସେଇଠି ଅଗଣାରେ ବହୁତ ଗୁଡ଼ିଏ କୁନ୍ଦ ଫୁଲ ଫୁଟିଥିଲା । ସବୁଦିନର ଫୁଲକୁ ସାଇତି, ସାଇତି ପୁରୀ ଆସିବା ଦିନ ଜଗନ୍ନାଥଙ୍କ ପାଇଁ ସୁନ୍ଦର ହାରଟିଏ ଗୁନ୍ଥି ସାରିଲା ପରେ ଦଇବାତ୍ ସେଦିନ ପୁଅର ବିଶେଷ କାମ ପଡ଼ିବାରୁ ପୁରୀ ଆସିବା ବନ୍ଦ ହେଲା । କିନ୍ତୁ ହାରତ ଗୁନ୍ଥା ସରିଛି ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ । ତାକୁ କ'ଣ କରିବେ ପାଖରେ ଥିବା ଗଣେଶ ମନ୍ଦିରକୁ ପଠାଇଦେବା ପାଇଁ କିଛି ଦକ୍ଷିଣା ସହିତ ପୁଅକୁ କହିଲେ ନେ ବାପା ଏଇଟିକୁ ପାଖରେ ଥିବା ଗଣେଶଙ୍କ ମନ୍ଦିରରେ ସେବକଙ୍କୁ ଦେଇଦେବୁ । ଠିକ୍ ଏତିକିବେଳେ ଦାଣ୍ଡ ଦୁଆରେ ଗାଡ଼ି ଶବ୍ଦ ଶୁଣି ପୁଅ ଯାଇ ଦୁଆର ଖୋଲିଦେଲା ବେଳକୁ ନିଜେ ଗଜପତି ମହାରାଜ (ଦିବ୍ୟସିଂହ ଦେବ) ଦୁଆରେ ଠିଆ ହୋଇଛନ୍ତି । ଅତି ସାମାନ୍ୟ ପଦେ କଥା ହୋଇ ବାହାରି ଯିବାକୁ ତରବର । ବାନ୍ଧବୀ ସାଙ୍ଗେ ସାଙ୍ଗେ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଗୁନ୍ଥିଥିବା ହାର କଥାଟି କହି ସେଇଟିକି ଜଗନ୍ନାଥଙ୍କ ପାଇଁ ନେଇ ଯିବାକୁ ତାଙ୍କୁ ଅନୁରୋଧ କରନ୍ତେ, ମହାରାଜା ଅତି ଆନନ୍ଦରେ କହିଲେ ଟିକିଏ ଗଙ୍ଗାଜଳ ଦିଅନ୍ତୁ ମୁଁ ହାତଧୋଇ ନେଇଯିବି । କେଉଁ ପଣ୍ଡାଙ୍କୁ ଦେବି କୁହନ୍ତୁ । ବାନ୍ଧବୀ କହିଲେ, ମୁଁ ସେକଥା ଜାଣିନି । ମୋ ହାର ମୋ ମନ ବୁଝି ଚଳନ୍ତି ଜଗନ୍ନାଥ ନିଜେ ଆସି ମୋଠାରୁ ନେଇ ଯାଉଛନ୍ତି । ଏଇ ମୋର ତପସ୍ୟାର ଫଳ । ଏଣିକି ତାଙ୍କର ଯାହାକୁ ଇଚ୍ଛା ହେବ ଦେବା ହେବେ ।

ଆଉ ଦିନକର ଘଟଣା । ଦିନେ ବାନ୍ଧବୀ ଗଣ୍ଡିଏ ଚିନି ଖଇ ଧରି ଧଇଁସଇଁ ହୋଇ ଆସି ଆମଘରେ ପହଞ୍ଚିଲେ । ମତେ ପୁଞ୍ଜିଏ ଖଇ ଦେଇ କହିଲେ ତୁମେ ଟିକିଏ ସେବାକର । ବନ୍ଧୁ କଚେରୀରୁ ଆସିଲେ ତାଙ୍କୁ ବି ଟିକିଏ ଦେବ । ଆଜି ଯାକୁ ମୋତେ ନିଜେ ଜଗନ୍ନାଥ ଦେଇଛନ୍ତି । ମୁଁ କହିଲି ହଉ ତେବେ, ଦାସିଆ ବାଉରୀ ଟିକିଏ ବସିପଡ଼ । ବାନ୍ଧବୀ କହିଲେ, ପ୍ରସାଦ ସବୁରିକି ଟିକିଏ ଟିକିଏ ଦେବି ନା ।

ଶୁଣ ଆଜି କାହିଁକି ଦେଉଳ ଭିତରେ ମୋତେ ଭାରି ଭୋକ କଲା । କଅଣ ଖାଇବି ଭାବି ଭୋଗ ଖୋଜିଲା ବେଳକୁ ଗରୁଡ଼ ଖମ୍ଭ ପାଖରେ ଜଣେ ପତରରେ ଗୁଡ଼ ଖଇ ଭାଗ ଭାଗ କରି ଧରିଥିଲା । ମୋତେ ଗୁଡ଼ଖଇ ଜମା ଭଲ ଲାଗେନି । ଏଣେ ଭୋକ ତ ବେଶୀ, ଜଗନ୍ନାଥଙ୍କ ଉପରେ ଟିକିଏ ଅଭିମାନ କରି କହିଲି ହଉ ଯାହା ଦଉଚ ଦିଅ । ସେଥିରୁ

ଗୋଟିଏ ଭାଗ ପାଟିରେ ପକାଇ ଅବକାଶ ଜଳରୁ ଓଳିଏ ପିଇଦେଇ, ବସି ଧ୍ୟାନ କରୁଛି । ଜଣେ ବ୍ରାହ୍ମଣ ପଇତା ପଡ଼ିଛି, ଏଡ଼େ ବଡ଼ ଚନ୍ଦନ ଟୋପା, ପେଟ ତଳକୁ ଓହଳି ପଡ଼ିଛି । କାନ୍ଧରେ ଚାଦର ମୋତେ ଡାକି କହିଲେ । ଆଜ୍ଞା ନିଅନ୍ତୁ ମୁଁ ହଠାତ୍ ଆଖି ଖୋଲି ତାଙ୍କ ଚିନି ଖଇ ଭୋଗେଇକି ତାହିଁ କିଛି ବୁଝି ପାରିଲିନି । ଦଉଛନ୍ତି ତ ହାତ ବଢ଼ାଇ ଧରି ପକାଇଲି । କେତେ ପଇସା କହି ମୁହଁ ପୋତି ମୋ ଝୁଲାମୁଣୀରୁ ପଇସା ଥଳୀ କାଢ଼ିଲାବେଳକୁ ମୁହୂର୍ତ୍ତକରେ ସେ କୁଆଡ଼େ ଅର୍ନ୍ତଧ୍ୟାନ ହୋଇଗଲେ ।

ମୁଁ ଦଉଡ଼ିଲାପରି ଦୁଆର ମୁହଁକୁ ଆସି ଯେତେ ଖୋଜିଲି, ଯେତେ ଯାହାକୁ ପଚାରିଲି କେହି ସେପରି ଲୋକ ଦେଖିନାହାନ୍ତି କହି ଓଲଟି ଖଇ ମାଗି ଖାଇଲେ । ମୁଁ ଗଣ୍ଡେ ସେଦ୍ୱା କଲି ବାସ୍ନାରେ ପାଟି ମହକିଗଲା । ସବୁରୀକି ଗଣ୍ଡେ ଗଣ୍ଡେ ଦେଇ ତମ ପାଖୁ ଧାଇଁଛି । ମୁଁ ଭାବିଲି ଧନ୍ୟ ଜଗନ୍ନାଥ ଧନ୍ୟ ତୁମର ଦବା-ନବା ନୀତି ।

ତା'ର କିଛି ଦିନ ପରେ ବାନ୍ଧବୀଙ୍କର ଶ୍ରେଷ୍ଠ ସାହାଯ୍ୟକାରୀ ବନ୍ଧୁ ମୋ' ସ୍ୱାମୀ ହଠାତ୍ ହୃଦ୍‌ରୋଗରେ ଚାଲିଗଲେ । ସେଦିନ ବାନ୍ଧବୀ ପୁରୀରେ ନଥିଲେ । ଦି' ଚାରିଦିନ ପରେ ଆସିଲେ । ମୁଁ ମୁହଁମାଡ଼ି ପଡ଼ିଥାଏ, ମୋ ପାଖେ ବସି ମୋ ପିଠି ଆଉଁସିଲେ । ମୋତେ ସାନ୍ତ୍ୱନା ଦେବା ଭିତରେ କହିଲେ, ଜଗନ୍ନାଥଙ୍କର ମୋତେ ପରୀକ୍ଷା କରିବାର ଶେଷ ନାହିଁ । କାହିଁକି ମୋତେ ଏମିତି କରୁଛନ୍ତି ଜାଣିଛ ? ଯେଉଁଦିନ ବୁଢ଼ି (ବଡ଼ଝିଅ) ର ବଡ଼ ପୁଅ ଚାଲିଗଲା, ମୁଁ ସେଦିନ ମନ୍ଦିରରୁ ଫେରି ଦୁଆର ଖୋଲି ଦେଖିଲା ବେଳକୁ ପୋଷ୍ଟକାର୍ଡ଼ ଖଣ୍ଡିଏ ପଡ଼ିଛି । ମୁଁ ସବୁଦିନ ଆଗ ଲୁଗା ପାଲଟି ଗଣ୍ଡିଏ ଖାଇସାରିଲେ, ଯାହା ଚିଠି ପତ୍ର ଆସିଥାଏ ପଢ଼େ । ସେଦିନ କ'ଣ ହେଲା କାହିଁକି ହଠାତ୍ ଚିଠିଟା ଧରି ପଢ଼ିଦେଲି । ବିଟୁ (ନାତି) ପୋଖରୀରେ ବୁଡା ପହଁରା ଦେଇ ଉଠିଲା ବେଳକୁ ଖଣ୍ଡେ ବଡ଼ ବିଲାତୀ ଦଳ ତଳେ ରହିଗଲା । ଥରକୁ ଥର ଯେତେ ଉପରକୁ ଉଠିବାକୁ ଚେଷ୍ଟା କଲା, ଯେତେ ହାତଟେକି ଡାକିଲା, କେହି ଜାଣି ପାରିଲେନି । ଲୋକମାନେ ଜାଣି ପାଣିରେ ପଶିଲାବେଳକୁ ତଳେ ପଡ଼ିଗଲାଣି ଇତ୍ୟାଦି । ସେ ଚିଠି ଖଣ୍ଡି ପଢ଼ିଦେଇ ସେଇଠି କଚାଡ଼ି ହୋଇ ବସି ପଡ଼ିଲି । କିଛି ସମୟ କିଛି ଜାଣିପାରିଲିନି । ଆଖିରୁ ଲୁହବି ବୋହିଲାନି । ଯେତେ ଉଠିବି ବୋଲି ଭାବିଲି ଉଠି ପାରିଲିନି । ସେତିକି ବେଳେ ମନେ ପକେଇଲି ଜଗନ୍ନାଥଙ୍କୁ । ଅଭିମାନ କରି କହିଲି କେବେ କିଛି ମାଗେନି, ସେଥିପାଇଁ ଏପରି ବେଳାରେ ଟିକିଏ ସାନ୍ତ୍ୱନା ଦେବାକୁ ବି କାହାକୁ ମୋ ପାଖେ ଦେଇନ । ଏଇଲେ ଟିକିଏ ହାତ ଧରି ଠିଆ କରାଇଦେବାକୁ ବି କେହି ନାହିଁ । କ'ଣ କରିବି ବୋଲି ପଚାରିବି କାହାକୁ ।

ମୁଁ ଜାଣି ପାରିନି । ବାନ୍ଧବୀ କିଏ ମୋ ହାତ ଧରି ଉଠାଇ ଠିଆ କରାଇ ଦେଲା । ମୁଁ ସେଇଠୁ ପୁଣି ଦୁଆରେ ଚାବି ଦେଇ ଗଲି କୁନ୍ତଳା (ସତ୍‌ସଙ୍ଗର ସାଙ୍ଗ) ଘରକୁ । ତାକୁ

କହିଲି ଓପରଓଳି ଯାଇ ମନ୍ଦିରରେ ଫୁଲ ଗୁଛିଦେବ କହି, ଚାଲିଲି ପୁଣି ସେହି ଅବାରିତ ସିଂହଦ୍ୱାରକୁ । ଅରୁଣ ଖମ୍ବ ପାଖେ, ଦେଖିଲି ଠିଆ ହୋଇଛନ୍ତି ଗୁରୁଦେବ ରଥଶର୍ମା । ସତ୍‌ସଙ୍ଗର ଯୋଡ଼ିଏ ପିଲାଙ୍କୁ ମୋ ସାଙ୍ଗରେ ଝିଅ ଘରକୁ ଯିବାକୁ ଠିକ୍ କରିସାରି ଥିଲେ । ମୋତେ ଦେଖୁ ଦେଖୁ ରିକ୍ସା ଡ଼ାକି ବସାଇଦେଲେ । ପିଲାମାନଙ୍କ ହାତରେ ପ୍ରସାଦ ବି ବାନ୍ଧି ଦେଇଥିଲେ । ମୁଁ ଭାବିଲି 'କରି କରାଉଥାଏ ମୁହିଁ, ମୋ ବିନୁ ଅନ୍ୟଗତି ନାହିଁ' ପୁଣି ଆଜି ମୋତେ ପରୀକ୍ଷା କରୁଛନ୍ତି । ତୁମ କଷ୍ଟ ଦେଖି ସହିବାକୁ ଶକ୍ତି ବି ଦେଇଛନ୍ତି । ଗୋଟିଏ ଅତି କଷ୍ଟସାଧ କଥା କହି ବି ପାରିବ ? ବନ୍ଧୁଙ୍କୁ ଭୁଲିଯାଇ ପାରିବ ?

ମୁଁ ତାଙ୍କ ମୁହଁକୁ ମୁଣ୍ଡଟେକି ଚାହିଁଲି । ସେ ମୁହଁରେ ଥିଲା ଜ୍ୱଳନ୍ତ ଅଗ୍ନି ମିଶା ଅଭିମାନ । କହିଲେ ତୁମେ ବୋଧେ ଜାଣିନ ? ମୁଁ ଘରେ ମୋ ସ୍ୱାମୀଙ୍କର ଏତେ ଟିକିଏ ସଙ୍କେତ ରଖିନି । ଆଖିରେ ପଡ଼ିଯିବାକୁ । ସବୁ ଫଟୋଟକ ମୁହଁ ମଡ଼ାଇ ଗୋଟିଏ ବାକ୍ସରେ ରଖି, ଚାବି ପକାଇ ଫିଙ୍ଗି ଦେଇଛି । ମୁଁ ଜଗନ୍ନାଥଙ୍କୁ କୁଣ୍ଢେଇ ଧରି, ଅତୀତକୁ ପିଠି କରିଦେଇଛି । କେବେ ଭୁଲରେ ସୁଦ୍ଧା, ଅତୀତକୁ ମନେପକେଇବାକୁ ସମୟ ଦେଇନି । କହି ମୋତେ ଖଣ୍ଡିଏ ଏକସରସାଇଜ୍ ଖାତା ଦେଇଥିଲେ ସହସ୍ର ରାମନାମ ଲେଖିବାକୁ ଅନୁରୋଧ କରିଥିଲେ । ମୁଁ ତାଙ୍କୁ କହିଥିଲି ।

ହତଭାଗ୍ୟ ସ୍ତ୍ରୀର ଏ ଶ୍ରେଷ୍ଠ ଦୁଃଖ, ଆକାଶରୁ ବଜ୍ର ପଡ଼ିଲେ ତାକୁ ନିଶ୍ଚୟ ସହିବାକୁ ହେବ । କିନ୍ତୁ ଭୁଲିବାକୁ ଜମା ମୁଁ ଦେଇ ପାରିବିନି । ତୁମ ଜଗନ୍ନାଥଙ୍କର ତୁମ ପ୍ରତି ଅପାର କରୁଣା । ଶେଷକୁ ସାମାନ୍ୟ ସାହାଯ୍ୟକାରୀଙ୍କୁ ତୁମ ପାଖରୁ ଛଡ଼ାଇନେଲେ । ସେ ପରୀକ୍ଷାର ଅନ୍ତଃ କେଉଁଠି ? ମୁଁ ଭୟରେ ପିଠି ବୁଲାଇ ଦେବି । ମୁଣ୍ଡ ପୋତିଦେବି, ଆଖି ବନ୍ଦ କରିଦେବି । କିନ୍ତୁ ଜଗନ୍ନାଥଙ୍କର ତୁମ ପ୍ରତି ନିଷ୍ଠୁରତା ଛଡ଼ା, ତୁମ ପ୍ରତି କରୁଣା ବୋଲି କହିପାରିବିନି । ଧନ୍ୟ ତୁମ ପ୍ରଭୁଙ୍କର ବିଚାର । ତୁମ ବନ୍ଧୁ ତ ଥିଲେ ପରପ୍ରାଣାଗତ । ମୁଁ ସାମାନ୍ୟ ମାଧ୍ୟମ ମାତ୍ର । ସେକଥା ଭାବିଲେ ମୋତେ ଅଧିକ କଷ୍ଟ ଦେଉଛି । ମୋ ଭରସା ସାଙ୍ଗରେ କେତେ ଯେ କାହାର ଭରସା ବୁଡ଼ାଇ ଦେଲେ । ଧନ୍ୟ ତୁମ ଜଗନ୍ନାଥେ । ମୋର ତ ଯେମିତି ଅତୀତ ଛଡ଼ା ଆଉ ଭାବିବାର କିଛି ନାହିଁ । ମୁଁ କାଠର ଜଗନ୍ନାଥଙ୍କ ଆଡ଼କୁ ପିଠି କରିଦେବି । ମୋର ସ୍ୱାମୀଙ୍କର ପ୍ରତିକୃତି ଆଡ଼କୁ ଚାହିଁ ପୂଜା କରିବି । ସେଇ ମୋର ଜଗନ୍ନାଥ । ସେ ଯାହା ନିର୍ଦ୍ଦେଶ ଦେବେ ମୁଁ ସେଇଆ କରିବି । ମୁଁ ତାଙ୍କ ଛଡ଼ା ଆଉ କେଉଁ ଦେବତାଙ୍କୁ ଚିହ୍ନିନି କହି ବାନ୍ଧବୀଙ୍କ ପବିତ୍ର କୋଳରେ ଆଉଜି ଯାଇଥିଲି । କହିଲି ତୁମ ଜଗନ୍ନାଥଙ୍କୁ କହିବ ମୋତେ କ୍ଷମା କରିଦେବେ । ଏବେ ବି ସେଇ ତାଙ୍କ ମୋ ବନ୍ଧୁତ୍ୱ ଗାଢ଼ରୁ ଗାଢ଼ତର ହୋଇଛି ।

ଆନନ୍ଦଦାୟକ ସୁଦୂର ଅତୀତ ସାଙ୍ଗରେ ନିକଟର କେତେ ରକ୍ତଝରା ଅତୀତ ମିଶି ଯାଉଛି । ବାନ୍ଧବୀ ଜୀବନର ଅଧିକାଂଶ ବା ପ୍ରାୟ ସବୁ ସମୟ ଜଗନ୍ନାଥ ମନ୍ଦିରରେ,

ଜଗନ୍ନାଥଙ୍କ ସେବାରେ, ଜଗନ୍ନାଥଙ୍କ ନିକଟରୁ ନିକଟତର ହୋଇ ଯାଇଛନ୍ତି । ଯେଉଁଥିପାଇଁ ଜଗନ୍ନାଥଙ୍କର ପରୀକ୍ଷା ନେବାକୁ ଆହୁରି ସୁବିଧା ହୋଇ ଯାଇଛି । ବାନ୍ଧବୀଙ୍କର ସର୍ବାଙ୍ଗ ବରଡ଼ାପତ୍ର ପରି ଥରୁଛି । ଯେଉଁ ଗୋଡ଼ ଯୋଡ଼ିକ ଦିନକୁ ଚାରିଥର ଦେଉଳକୁ ଦଉଡୁଥିଲା । ସେଇ ଗୋଡ଼ ଥରି ଥରି, ବାଟରେ କାହା ପିଣ୍ଡାରେ ବସି ବସି ଦେଉଳରେ ପହଞ୍ଚୁଛି । କେଉଁଦିନ ବା ରିକ୍ସାଟିରେ ଫେରୁଛି । ଯେଉଁ ହାତ ଅବିଶ୍ରାନ୍ତ ଫୁଲଗୁନ୍ଥି, ତୁଳସୀ ପତ୍ରରେ ରକ୍ତ ଚନ୍ଦନରେ ଗୀତଗୋବିନ୍ଦ ଘଣ୍ଟା ଘଣ୍ଟା ଲେଖି ପାରୁଥିଲା, ଅବିଶ୍ରାନ୍ତ ଚାମର ସେବା କରିପାରୁଥିଲା; ସେହି ହାତ ଉପରକୁ ଉଠିଲେ ଅସ୍ଥିର ହୋଇ ତଳକୁ ଲଇଁ ପଡୁଛି । କାନକୁ ହରିନାମ ସଂକୀର୍ତ୍ତନ ପରିସ୍କାର ଶୁଭୁଛି କି ନାହିଁ ସନ୍ଦେହ । କିନ୍ତୁ ମନ ଭିତରେ ଆଙ୍କି ହୋଇ ରହିଥିବା ବଡ଼ ବଡ଼ ଚକା ଆଖି ଯୋଡ଼ିକ ଠିକ୍ ଠଉରେଇ ହେଉଛି । ଦୁଃଖରେ ଦିନେ କହି ପକେଇଲେ- ମୁଁ ଏବେ ଜଗନ୍ନାଥଙ୍କୁ ଠକୁଛି ବାନ୍ଧବୀ । ଜମା ହାତ ଟେକି ଚାମରସେବା କରି ପାରୁନି । ହାତ ତଳକୁ ଲମ୍ୱାଇ, ଚାମରକୁ ଓହଳାଇ ଧୀରେ ଧୀରେ ଖାଲି ଟିକେ ହଲଉଛି । ପୁଣି ତ ଭବିଷ୍ୟତ ଆସୁଛି ।

ମୁଁ କହିଲି, ବାନ୍ଧବୀ ଜଗନ୍ନାଥ ତୁମକୁ ବହୁତ ଠକିଲେଣି । ଆଉ ଏଣିକି ନ ଠକନ୍ତୁ । ବାନ୍ଧବୀଙ୍କର ସେହି ଜଗନ୍ନାଥଙ୍କ ଉପରେ ସେମିତି ଅଟଳ ବିଶ୍ୱାସ ରହିଛି । ଯେତେ କଷ୍ଟ ହେଲେ ବି, ଜଗନ୍ନାଥ ତାଙ୍କ ଭକ୍ତିରେ ନିଶ୍ଚୟ ବାନ୍ଧିହୋଇ ଯିବେ । (ବିଶ୍ୱାସେ ମିଳଇ ହରି, ତର୍କେ ବହୁଦୂର) ସେ କେବେ ବିଶ୍ୱାସଘାତକତା କରିବେନି । ଦୟାଳୁ ଜଗନ୍ନାଥ ମହାରାଜାଙ୍କୁ ପଠାଇ ଫୁଲ ଆଣିଛନ୍ତି । ବ୍ରାହ୍ମଣ ହାତେ ଖଇ ଖୁଆଉଛନ୍ତି । ଦାରୁଣ ଦୁଃଖ ବେଳେ ହାତ ଧରି ଠିଆ କରାଇ ଦେଇଛନ୍ତି । ସେହି ଜଗନ୍ନାଥଙ୍କ ପାଖରେ ମୋର ବିନୀତ ପ୍ରାର୍ଥନା ,ସ୍ୱର୍ଗଦ୍ୱାରେ ଦେବାଗ୍ନି ପାଇବା ପର୍ଯ୍ୟନ୍ତ ବାନ୍ଧବୀଙ୍କର ଚଳନ୍ତି ଶକ୍ତିଟିକୁ କାଢ଼ି ନ ନିଅନ୍ତୁ ; (ଜଗନ୍ନାଥେ ଭଲ କରନ୍ତୁ ) ।।



# ଗଙ୍ଗାପାଣି

ବିଷ୍ଣୁଙ୍କୁ ଭଗୀରଥ ଘୋର ତପସ୍ୟା କରି ଗଙ୍ଗାଙ୍କୁ ଆଣିଥିଲେ ମର୍ତ୍ତ୍ୟକୁ । ଗଙ୍ଗା ତ ଥିଲେ ବ୍ରହ୍ମାଙ୍କ କମଣ୍ଡଳୁରେ । ଭଗୀରଥର ତପସ୍ୟାରେ ବିଷ୍ଣୁ ସନ୍ତୁଷ୍ଟ ହୋଇ, ଗଙ୍ଗାଙ୍କୁ ବ୍ରହ୍ମାଙ୍କ କମଣ୍ଡଳୁରୁ ଆଣିବା ପାଇଁ ମନେ ମନେ ଉପାୟ ପାଞ୍ଚିଲେ । ଦିନେ ହଠାତ୍ ଯାଇ ବିଷ୍ଣୁ ପହଞ୍ଚିଗଲେ ବ୍ରହ୍ମାଙ୍କ ପାଖରେ । ବ୍ରହ୍ମା ସାଙ୍ଗେ ସାଙ୍ଗେ କ'ଣ କରିବେ ବୁଝି ନପାରି ନିଜ କମଣ୍ଡଳୁ ପାଣିରେ ପାଦ ପଖାଳି ଦେଲେ ବିଷ୍ଣୁଙ୍କର । ସେହି ଦିନଠୁ ଗଙ୍ଗା ରହିଗଲେ ବିଷ୍ଣୁଙ୍କ ନଖ କୋଣରେ । ବିଷ୍ଣୁ ଗୋଲକ ଧାମକୁ ଫେରିଆସିଲେ ସିନା ଗଙ୍ଗାଙ୍କ କଥା ଏକବାରେ ଭୁଲିଗଲେ । ପୁଣି ଭଗୀରଥ ଲାଗିଗଲେ ତପସ୍ୟାରେ । ବିଷ୍ଣୁଙ୍କ ମନେ ପଡିଗଲା ଗଙ୍ଗାଙ୍କ କଥା । ନିଜ ନଖ କୋଣରୁ ମୁକୁଳାଇ ଗଙ୍ଗାଙ୍କୁ ମୁକ୍ତ କରିଦେଲେ । ଗଙ୍ଗା ଆସି ପଡିଲେ ହିମାଳୟଙ୍କ ଉପରେ । ହିମାଳୟ ତା'ର ଗିରି ଗହ୍ୱର ଭିତରେ ବାନ୍ଧି ପକାଇଲା ଗଙ୍ଗାଙ୍କୁ । ପୁଣି ଭଗୀରଥ ତପସ୍ୟା କଲେ । ହିମାଳୟ କହିଲା ଯେ 'ଐରାବତ ହାତୀର ଦାନ୍ତରେ ମୋ ଦେହକୁ ଚିରି, ତୁମେ ଗଙ୍ଗାଙ୍କୁ ବୁହାଇବ' । ପୁଣି ଭଗୀରଥର ଚାଲିଲା ଐରାବତକୁ ତପସ୍ୟା । ଐରାବତ ତା ଦୁଷ୍ଟ ବୁଦ୍ଧିରେ କହିଲା 'ମୁଁ ଗଙ୍ଗାଙ୍କୁ ମୋର ସଙ୍ଗିନୀ କରିବାକୁ ଚାହେଁ । ସେ ଯଦି ସେଥିରେ ରାଜି ମୁଁ ତାହାଲେ ହିମାଳୟକୁ ଦାନ୍ତରେ ଚିରିବି' । ଗଙ୍ଗା ଦେବୀ ଏ କଥା ଶୁଣି ଗୋଟିଏ ସର୍ତ୍ତ ରଖି କହିଲେ-ମୋ ଠାରୁ ବଳବାନ ନହେଲେ ମୁଁ କେମିତି ତାର ସଙ୍ଗିନୀ ହେବି । ସେ ଯଦି ମୋର ତିନୋଟି ଲହଡି ସହିଯିବ ତାହେଲେ ମୋର କିଛି ଆପତ୍ତି ନାହିଁ । ଐରାବତ ତ ଇନ୍ଦ୍ରଙ୍କ ବାହାନ, ଶୁଣୁ ଶୁଣୁ ମହା ଗର୍ବରେ ବାହାରି ଆସିଲା । ଭାବିଲା ମାଇପିଟେ ପୁଣି ମୋ ଠାରୁ ବଳବାନ୍ ହେବ । ନାରୀର ଯେ କେତେ ଶକ୍ତି ତାକୁ ସେଇଟା ଜଣା ନଥିଲା । ଯେମିତି ଦାନ୍ତରେ ଗୋଟିଏ ଠା ଚିରି ଦେଇଛି, ପାଣି ଏତେ ଯୋରରେ ଉଛୁଳି ଉଠିଲା ଯେ ଐରାବତ ଗଡି ଗଡି କାହିଁ କେତେ ଦୂରରେ ପଡିଲା । ଗଙ୍ଗାର ଏ ପ୍ରଳୟ କାଣ୍ଡ ଦେଖି ମାତା ପୃଥିବୀ ଡ଼ରିଗଲା । ଭାବିଲା ଏ ଯଦି ହିମାଳୟ ଉପରୁ ମୋ ଉପରେ ପଡ଼େ, ମୁଁ ତାହାଲେ ଯାକୁ ସମ୍ଭାଳିବି କେମିତି ? ଭଗୀରଥ ଆଉ ପୃଥିବୀ ମାତା ଦୁହେଁ ମିଶି ତପସ୍ୟା କଲେ ମହାଦେବଙ୍କୁ । ଶିବ ତ ଭୋଳାନାଥ ଗଞ୍ଜେଇ ଭୋଳରେ ଏ ମାନଙ୍କ ତପସ୍ୟାରେ ରାଜି ହୋଇଗଲେ । ବ୍ୟୋମକେଶ ତାଙ୍କ ଜଟାତକ ମେଲାଇ ଠିଆ ହୋଇଗଲେ ହିମାଳୟର ପାଦଦେଶ ଓ ହରଦ୍ୱାରରେ । ଗଙ୍ଗା ଯେତେ ଜୋରରେ ଉପରୁ ଖସିଲେ ବି ଜଟା ଭିତରେ ରହିଯାଇ, ଶିବଙ୍କୁ ଶୀତଳ କରିବାରେ ଲାଗିଲେ । ବିଚରା ଭଗୀରଥ ତାଙ୍କ ବଂଶ ଉଦ୍ଧାର କରିବାର ଏକନିଷ୍ଠ ହୋଇ ପୁଣି

ବସିଗଲେ ଧ୍ୟାନରେ । ଶିବ ବା ସମ୍ଭାଳନ୍ତେ କେତକେ । ନିଜ ଜଟାରୁ ଗୋଟିଏ ଧାରକୁ ବୁହାଇଦେଲେ । ଭଗୀରଥ ଆଗେ ଆଗେ ଶଙ୍ଖ ବଜାଇ ବଜାଇ ଚାଲିଲେ । ସେହି ଶଙ୍ଖ ଧ୍ୱନିକୁ ଅନୁସରଣ କରି କଳ କଳ ନାଦରେ ମକର ବାହିନୀ ଗଙ୍ଗା ତାଙ୍କ ପଛେ ପଛେ ଚାଲିଲେ । ଦୈବାତ୍ ବାଟରେ ଜାହ୍ନୁ ମୁନିଙ୍କ ଆଶ୍ରମ ଖଣ୍ଡି ଗଙ୍ଗାଙ୍କ ଆଗମନରେ ଭାସିଗଲା । ମହାକ୍ରୋଧୀ ମୁନୀ ଗୋଟିଏ ଗଣ୍ଡୁଷରେ , ସମସ୍ତ ଗଙ୍ଗାଜଳକୁ ପାନ କରିଦେଲେ । ପୁଣି ଚାଲିଲା ଭଗୀରଥଙ୍କ ତପସ୍ୟା । ମହାପ୍ରତାପୀ ଋଷି ତପସ୍ୟାରେ ସନ୍ତୁଷ୍ଟ ହେଲେ ସିନା କିନ୍ତୁ ଗଙ୍ଗାଙ୍କୁ ବାହାର କରିବେ କିପରି ? ପାଟିବାଟେ ବାହାର କଲେ ଗଙ୍ଗା ଉଚ୍ଛିଷ୍ଟ ହୋଇଯିବେ । ଏଣୁ ବହୁତ ଭାବି ବିଚାରି ନିଜ ଜାନୁକୁ ଫଟାଇ ଜାହ୍ନବୀ ନାମରେ ନାମକରଣ କରି ଗଙ୍ଗାଙ୍କୁ ବୁହାଇ ଦେଲେ । ସେହି ଗଙ୍ଗା ଶଗର ବଂଶକୁ ଉଦ୍ଧାର କରି ସେହିପରି ଆଗକୁ ଆଗକୁ ଚାଲିଲେ ଯେ ଆଉ କେବେ ଉଜାଣି ବହି ନାହାନ୍ତି । କିନ୍ତୁ ସେହି ପବିତ୍ର ଜଳରୁ ଟିକିଏ ଗୋଟିଏ ଛୋଟିଆ ପଥୁରି ଗିନାରେ କେତେ ଯେ ମୋ ଜୀବନ ଜାହ୍ନବୀକି ଉଜାଣି ବୁହାଇଛି ତାର କଳନା ନାହିଁ । ବାର୍ଦ୍ଧକ୍ୟରୁ ଯଉବନ, ଯଉବନରୁ କୈଶୋର ଟିକିଏ ନିରୋଳା ପାଇଲେ ସେହି ଟିକି ପଥୁରି ଗିନା ସହିତ ସେହି ଟିକି ଗଙ୍ଗା ପାଣିଙ୍କ ମୁହଁଟା କୈଶୋରର ଲହରି ଭିତରେ ମୋତେ ସତେ ଯେମିତି ଆଣ୍ଡା ମାଣ୍ଡା କରିପକାଏ । ଆହା ! କି ଅମୃତମୟ ସେ ସମୟ ? ସେଇ ଦିନରୁ ଏ ଜୀବନଟା ଯେତେ ପାହାଚ ପାହାଚ ଉଠିଲେବି, ସେମିତି ଶୀତଳ ଆଉ କେଉଁଠି ପାଇନି ।

ସେଇଥି ପାଇଁକି କ'ଣ ମୋର ଏ ମନଟା ସାମାନ୍ୟ ଏକାନ୍ତ ପାଇଲେ ମୋ ସାଙ୍ଗ ଗୁଡ଼ାକୁ ଖାଲି ସାଉଁଟି ପକାଏ । ସହଜେ ତ ଏଇଲେ ପର୍ଯ୍ୟାପ୍ତ ଏକାନ୍ତ । ତାରି ଭିତରୁ ଆଗ ଭାସି ଉଠିଲା ସେଇ ଗଙ୍ଗାପାଣିଙ୍କ ମୁହଁଟି । ଜଳ ଜଳ ହୋଇ ଦିଶିଗଲା ତାଙ୍କର ପରିପାଟିକରା ସଜଡ଼ା ରୂପ । ନାଁଟି ତାର ନିଶା । ସେ ମୁହଁଟି ମୋ ମନେ ପଡ଼ିଗଲେ ସତେ ଯେମିତି ମୋତେ ନିଶା ଧରି ପକାଏ । ସେ ଅପର୍ତ୍ତିଆଣୀ ବୋଲି ତା ବୋଉ ତାକୁ ଡ଼ାକେ କୋତରୀ । ତା ରଙ୍ଗଟିକେ କୋତରା ହେଲେ କ'ଣ ହେଲା ? କହନ୍ତି ପରା ସ୍ନେହ ସୁନ୍ଦର ଆଉ ଭୋକ ସୁଆଦ) ମୋ ଆଖିକି ତା'ର ସଜଡ଼ା ରପଟି ସବୁବେଳେ ଭାରି ସୁନ୍ଦର ଦିଶେ । ତା' ବୋଉ ତାକୁ ସବୁବେଳେ ଗୋଟିଏ ଝୁଲଣ ସଖି କୁଣ୍ଢେଇ ପରି ସଜାଡ଼ି ରଖିଥାଏ ।

ଦିନେ ତା' ନନା ମହନି ମିଶ୍ରେ ଆସି ମତେ ତାଙ୍କ ଘରକୁ ଯିବାକୁ ଡ଼ାକିଲେ । ଆମ ନନା ତ ଅଧିକାଂଶ ସମୟ ବାହାରେ ରହନ୍ତି । ମହନି ମିଶ୍ରେ ଆମ ଘରର ମାଲି ମକଦ୍ଦମା ଭଲ ମନ୍ଦ ବୁଝା ବୁଝି କରିବା ପାଇଁ ନନା ତାଙ୍କୁ ଦାୟୀତ୍ୱ ଦେଇଥାନ୍ତି । ମୋ ବୋଉର ବି ତାଙ୍କୁ ଭାରି ଖାତିର ଥାଏ । ମୁଁ ତାଙ୍କ ଘରକୁ ଯିବାରେ ବୋଉର କିଛି ଆପତ୍ତି ନଥିଲା । ମୁଁ ତାଙ୍କ ସାଙ୍ଗରେ ତାଙ୍କ ଘରକୁ ଗଲି । ଯାଇ ଦେଖିଲା ବେଳକୁ ନିଶା ସକାଳୁ ମୁଣ୍ଡ କୁଣ୍ଢେଇ ମୁଣ୍ଡରେ ବେଣୀ, ବେଣୀରେ ଅଁଳା ଫୁଲ, କାନରେ ମାଙ୍କେଡ଼ି, ନାକରେ ନୋଲୋକ,

ରୂପାକାଚ ବେକରେ ଦି ସରିଆ ସୁନା ସୁତା, ହାତରେ ହଳଦି ଲଗେଇ ଗାଧୋଇ , କଜ୍ଜ୍ୱଳ ସିନ୍ଦୂର ଅଳତା ଲଗାଇ ବେଶହୋଇ ବସିଛି । ସେତେବେଳକୁ ମୁଁ ଗାଧୋଇଥାଏ କି ନାହିଁ ମୋର ମନେ ନାହିଁ । ଆମର ତ କଂଗ୍ରେସିଆ ଘର , ଆମ ଘରେ ଛୁଆଁ ଛୁଡି କି ଅଳଙ୍କାର ପିନ୍ଧା ନଥାଏ । ମୁଁ ଖଣ୍ଡେ ଛୋଟ ଶାଢ଼ୀ କି ଖଣ୍ଡେ ଖଦଡ ପ୍ୟାଣ୍ଟ୍ ପିନ୍ଧିଥିବି । ନିଶାର ବେଶ ଦେଖି ତା ଆଗେ ମତେ ଭାରି ନ୍ୟୁନ ଲାଗୁଥାଏ । ନିଶା ବୋଉ ମାଉସୀ ସାଙ୍ଗେ ସାଙ୍ଗ ତେଲ ଲଗାଇ ମୋ ମୁଣ୍ଡ କୁଣ୍ଡେଇ ଦେଲା । ଖଣ୍ଡେ ତେଲିଆ ଓଦା ଗାମୁଛାରେ ମୋ ମୁହଁ,ବେକ ,ହାତ ଗୋଡ ଭଲକରି ପୋଛି ଦେଲା । ଆଖିରେ କଜ୍ଜ୍ୱଳ, ମୁଣ୍ଡରେ ଟିକିଲି ଟି ମାରି ଗୋଡରେ ଅଳତା ଲଗାଇଦେଲା । ଦିହିଁକି ପିଣ୍ଡାରେ ବସେଇ ଗୋଟିଏ ପଥୁରି ଗିନାରେ ଟିକିଏ ପାଣିଆଣି କହିଲା-କୋତରୀ ଲୋ ! ଏ ଗିନାଧରି ଉମାକୁ ଟିକିଏ ପାଣି ପିଆଇଦେ । ମୁଁ ନିଶା ହାତରୁ ଟିକିଏ ନାକୁ ପାଣି ପିଇଦେଲି । ସେଇ ଗିନାଟାକୁ ଆଣି ମୋ ହାତରେ ଦେଇ କହିଲା-ନେ କୋତରୀକି ପିଆଇଦେ ! କୋତରୀ ସବୁତକ ପାଣି ଢୁକ୍ କରି ପିଇଦେଲା । ଦୁହିଁଙ୍କର ହାତ ଦୁହିଁଙ୍କ କାନ୍ଧରେ ପକାଇଦେଇ ନିଶାବୋଉ ମାଉସୀ କହିଲା-ଆଜିଠୁ ଦୁହେଁ ଦୁହିଁଙ୍କର ପ୍ରାଣର ସାଙ୍ଗ ହେଲ । ସୂର୍ଯ୍ୟ ଆଡକୁ ଚାହିଁ ନମସ୍କାର କର । କେହି କାହାକୁ ନାଁ ଧରି ଡ଼ାକିବନି । ଆଜିଠୁ ଗଙ୍ଗାପାଣି ବୋଲି ଡ଼କାଡ଼କି ହେବ । ଏ ସୂର୍ଯ୍ୟ ବନ୍ଧୁ ନିଜ ଜନ୍ମ କଲାରୁ ଅଧିକ । ଗଙ୍ଗାପାଣିଙ୍କ ନନାକୁ ଡ଼ାକି କହିଲା ଜାଣିଲ ? (ଘୋଡ଼ାକୁ ଛ, ପୁଣି ଘଣ୍ଟିକୁ ଛ) ଦିହେଁ ସମାନ । ଉମା କୋତରୀ ମୋଟେ ଚାରି ଦିନି ସାନବଡ ମାଁ । ଏତିକି କହି ସରୁ ଚକୁଳି , ପୋଟଳ ଚକୁଳି, ଅଟକାଳୀ, ମାଛ ବେସର,ଦେଶୀଆଳୁ ଭଜା,ଏମିତି କେତେ କ'ଣ ଥାଳିରେ ଆଣି ଆମ ଦୁହିଁକୁ ଖୁଆଇଦେଲା । ଖାଇ ସାରି ଗଙ୍ଗାପାଣି ଓ ମୁଁ ଦିହେଁ ଆମ ଘରକୁ ଆସିଲୁ । ସେତେବେଳକୁ ଗଙ୍ଗାପାଣିକି କ'ଣ ଲାଗୁଥିବ କେଜାଣି ? ମୋ ମନଟା ଖାଲି ଆନନ୍ଦରେ କୁରୁଳୁଥାଏ ।

ମୁଁ ବୋଉକୁ ପଛଆଡୁ କୁଣ୍ଢେଇ ପକେଇ କହିଲି- ବୋଉଲୋ, ଆମେ ଦିହେଁ 'ଗଙ୍ଗାପାଣି' ବସିଲୁ । ମୁଁ ତାଙ୍କ ଘରେ ପିଠା ଖାଇ ଆସିଛି, କିଛି ଖାଇବିନି । ମୋ ମନଟା ଏଡ଼େ ଆନନ୍ଦ ହେଲାବେଳେ, ବୋଉ କିନ୍ତୁ ଖୁସିହେବାର ମୁଁ ଦେଖି ପାରିଲିନି । ତାଙ୍କ ବୋଉର ଆନନ୍ଦ ପରେ ମୋ ବୋଉକୁ ଦେଖି ମୋ ମନଟା ଫିକା ପଡିଗଲା । ଗଙ୍ଗାପାଣି ଯିବାପରେ ବୋଉ ବିଗିଡିଲା ସ୍ୱରରେ କହିଲା- ତାଙ୍କ ବୋଉ ମାନଙ୍କର ଆଉ କିଛି କାମ ନାଇଁଯେ, ସଙ୍ଗାତ ମଇତ୍ର ବସେଇ ସୁଆଙ୍ଗ କରୁଛନ୍ତି । ମୋର ତ ( କୁକୁରକୁ ତର ନାହିଁ,ଧାଉଁ ଧାଉଁ ଅବସର ନାହିଁ) । ମୁଁ କେତେବେଳେ ଏତେ କଥା କରିବି ? ସାଙ୍ଗ ତ ସାଙ୍ଗ । ପୁଣି ଏମିତି ବସାବସି ଦିଆ ନିଆ, ମୁଁ ଏମିତି ଜମା କରିପାରିବିନି । ଏଗୁଡାକ କରିବାକୁ ମୋତେ ବେଳ କାହିଁ ? ମୋତେ କେବେ କହିବୁନି । ତା ବୋଉ ଏମିତି କଲା ତୁ ସେମିତି କର । ସତକୁ ସତ ମୋର ବହୁତ ଏମିତି ମିତ ବସିବା ସାଙ୍ଗ ଯେ, ସବୁ ଏକ ତରଫା । ସେଇ ମାନଙ୍କ ପଟରୁ ସବୁ । ମୋ ଆଡୁ ଖାଲି ଖାଲିକା । ଆମ ଘରେ ବହୁତ

ମାଛ,ଆମ୍ବ, ପଣସ, ପିଠା ପଣା ବି ବହୁତ ହୁଏ । ମୋ ବୋଉଟା ବଢ଼ିଆ ରାନ୍ଧେ । ପିଠା ପଣା ବି ତହୁଁ ବଳି । ସେତିକି ବେଳେ ସାଙ୍ଗ ମାନଙ୍କୁ ଖୋଇବାର ମଉକା ମୁଁ ପାଏ । ବେଳେବେଳେ ପଇସେ ଅଧଲେ ଚାନ୍ଦା କରି, ଆମ ଘରେ ମଉଜ ହୁଏ । ସେ ଖେଚେଡି ହଉ ବା ଚୁଡାଘଷା ହେଉ, କି ଚୁଡା ପଣଷ ବା ମୁଢ଼ି ନଡିଆ ହେଉ ପଛେ; ଯାହା ଅଣ୍ଟ ନିଅଣ୍ଟ ହୁଏ ବୋଉ ଭାରି ଆଗ୍ରହରେ ଆମମାନଙ୍କୁ ଦେଇଦିଏ । କିନ୍ତୁ ବୋଉ ଆଡୁ ଖାଲିରେ ରନ୍ଧା-ବଢ଼ା କରି ସାଙ୍ଗମାନଙ୍କୁ ନିମନ୍ତ୍ରଣ କରିବା ମୋ ଆଡୁ ବଡ କମ । ସତରେ ବି ବୋଉଟା ଆମର ସାରା ଦିନ ଯାକ ଢ଼ିଙ୍କିଶାଳରୁ ଢ଼େଙ୍କାନାଳ ଯାଏଁ ଦଉଡୁଥିବ ।

ଦିନେ ଗଙ୍ଗାପାଣିଙ୍କି ମୁଁ ଖେଳିବାକୁ ଡ଼ାକିବାକୁ ଯାଇଥିଲି । ଗଙ୍ଗାପାଣି ଭାରି କାର୍ଯ୍ୟବ୍ୟସ୍ତ ଥିଲା ପରି ମୋତେ ଲାଗିଲା । ସେ ଆସିବାକୁ ମନାକରି, ମତେ ତାଙ୍କ ଘରକୁ ଡାକିଲେ । କହିଲେ ଆସ ଦେଖିବ ମୋର ଗୋଟେ କୁନି ଭାଇ ହେଇଛି । ମୁଁ ଭାରି ଆନନ୍ଦରେ ତାଙ୍କ ଘରକୁ ଗଲି । ସେ ମୋତେ ତାଙ୍କ ସାଙ୍ଗରେ ନେଇ ତାଙ୍କ ଘରଠୁ ଦିଘର ଛାଡି ତାଙ୍କ ହରି ଦଦେଇଙ୍କ ଘରକୁ ନେ ଇଗଲେ । ହରିଦଦେଇଙ୍କ ତଳ ସାହାଲାରେ ଗୋଟିଏ ଅନ୍ଧାରିଆ ମାଟିଘରେ, ତଳେ ଛିଣ୍ଡା କତରା ମଶିଣା ଉପରେ, କେତେ ଖଣ୍ଡ ଛିଣ୍ଡା କୋତରିଆ କନା ପଡିଛି । ତା'ରି ଉପରେ ମୁଣ୍ଡରେ ମୁଚୁଳା ଦେଇ, ଟିକି ନାଲି ଆସିଆ ପୁଅଟିଏ ଶୋଇଛି । ଘରର ଗୋଟେ କୁଣରେ ଖଣ୍ଡେ କାଠ ମୁଣ୍ଡା କୁହୁଳି ଘରଟିକୁ ଧୁଆଁ ପୂର୍ଣ୍ଣ କରିଥାଏ । ମାଟିର ପୋଲାଙ୍ଗ ତେଲ ଦୀପଟିଏ ଜଳି ଘର ଧୂଆଁର ଅନ୍ଧାରକୁ ଭେଦି ତେଲ ଜର ଜର ଟିକି ପିଲାଟିକୁ ଦେଖାଇଦେଉଥାଏ । ମା' ଖାଇବା ପାଇଁ କାନ୍ଥ ପାଖକୁ ଗୋଟିଏ ମାଟି ସରା ମୁହଁ ମଡାହୋଇ ଥୁଆହୋଇଥାଏ ଘର ଈରୁଣ୍ଡି ବନ୍ଧ ପାଖେ ଖଣ୍ଡିଏ ଛାଞ୍ଚୁଣି, ଖଣ୍ଡିଏ ଲୁହା, ଆଉ ପୁଳେ କଞ୍ଚା ଗୋବର ଥାଏ । ଖଣ୍ଡିଆ ଛାଞ୍ଚୁଣି ଖଣ୍ଡିଆ ଲୁହାତ ପିଲାକୁ ଡାହାଣି କବଳରୁ ରକ୍ଷା କରିବ । ମା' ଘରୁ ବାହାରିଲେ, ଆଗ ସେ ଗୋବରକୁ ମାଡି ବାହାରକୁ ଯିବ, ନହେଲେ ତା' ଚାଲିବା ବାଟ ଛୁଆଁ ହେଇଯିବ । ମା' ବି ଖଣ୍ଡେ କୋତରିଆ ଛିଣ୍ଡା ଲୁଗା ପିନ୍ଧିଥାଏ । ମୁଁ ସେତେବେଳେକୁ ଏମିତି କେତେ ପୋଖତିଘର ଦେଖିଛି । ମୋ ଦେଖିବାରେ ସେଇଟା କିଛି ନୂଆ କଥା ନୁହଁ । କିନ୍ତୁ ସେଦିନ ମୋତେ କାହିଁକି ଭାରି ଆଶ୍ଚର୍ଯ୍ୟ ଲାଗିଥିଲା । କୁଆ ବସାରେ କୋଇଲି ଡିମ୍ବ ଥୋଇଲା ପରି, ଏମିତି ଦୃଶ୍ୟ ମୁଁ କେବେ ଦେଖିନଥିଲି । ମୁଁ ଗଙ୍ଗାପାଣିଙ୍କି ପଚାରିଲି, ତମ ଘରେ ପୋଖତୀ ଘର ନହୋଇ ୟାଙ୍କ ଘରେ କାହିଁକି ଭାଇ ଜନ୍ମ ହେଲା ? ସେଦିନ ଗଙ୍ଗାପାଣି ତାଙ୍କ ଘରକୁ ମୋତେ ଡାକିଆଣି ଉପର ଘର ଖଟ ଉପରେ ବସାଇ ଏପରି ତଥ୍ୟମାନ କହିଲେ ଯେ, କେତେକାଳ ଯାଏଁ ତାଙ୍କ ବାଡି ସାହାଲା କୁଣ ଘରକୁ ଚାହିଁଲେ ମୋତେ ଡର ମାଡ଼େ । ସେଦିନ ଗଙ୍ଗାପାଣି ମୋତେ କହିଥିଲେ - ଆମର ସେ କୁଣ ଘରଟି ନୁହେଁ ଆମର ପୋଖତୀ ଘର । ସେଇ ଘରେ ମୋର ସବୁ ଭାଇ ଭଉଣୀ ଜନ୍ମ ହୋଇଛନ୍ତି । ବଡ ଭାଇ ଜନ୍ମ ହୋଇ ଆଗ ସେଇ ଘରେ ମଲା । ମୁଁ ସିନା ବୋଉ ପୋଖତଘରକୁ ଯାଉ

ଯାଉ ମଝି ଘର ପିଣ୍ଡାରେ ଜନ୍ମ ହୋଇ ପଡିଲି ବୋଲି ଜାଣ ବଞ୍ଚିଗଲି । ଆଉ ଚାରୋଟି ଜନ୍ମ ହୋଇ ମଲେଣି । ସେଇ ଘର ଭାଡିରେ କିଏ ଗୋଟେ ଅପୂଜା ରହିଛି । ପିଲା ଜନ୍ମ ହୋଇ ଉଠିଆରୀ ନ ଗାଧୋଉଣୁ ସେ ଭାଡିରୁ ଓହ୍ଲାଇ ତା ତୋଟି ଚିପି ଦଉଚି । ପିଲାକୁ ମୋଡି ପଛ ଆଡକୁ ଭାଙ୍ଗି ତା ରକ୍ତ ଶୋଷି ନେଲି ପକେଇ ଦେଇ, ଏକାଥରକେ ଶେଷ କରିଦେବ । ଯେତେ ଲୁହା, ଯେତେ ଛାଞ୍ଚୁଣୀ, କେତେ ମନ୍ତୁରା ଶୋରିଷ ଯେତେ ଥୋଇଲେ କିଛି ମାନିବନି । ଏଇଥର ପାଗା ବୋଉ ଦେଠେଇ କହିଲେ ଯେ, ଘର ବଦଳେଇ ଦବା । ଆମ ଘରକୁ ଆସଭାରି । ଆଉ କ'ଣ ତିନି ଚାଳ ଡେଇଁ କରି ସେ ଯିବ ? ରାତିରେ ବି' ଦେଠେଇ ବୋଉକୁ ଜଗି ସେଇ ଘରେ ଶୋଉଛନ୍ତି । ମୁଁ ଆଶ୍ଚର୍ଯ୍ୟ ହୋଇ ଗଙ୍ଗାପାଣିଙ୍କି ପଚାରିଲି ସେ ଅପୂଜା ଦେଖିବାକୁ କେମିତି ? ସେ ବଡ ମଣିଷ ପରି, ମୁଁହ ଗମ୍ଭୀର କରି ମତେ ଟିକିଏ ଠେଲି ଦେଇ କହିଲେ, ଯାଉନ, ଭୂତ ଚିରିଗୁଣୀ ଡ଼ାହାଣୀ ଅପୂଜା ଏମାନେ ପବନରେ ଯିବା ଆସିବା କରନ୍ତି ନା ବେଳେ ବେଳେ ଛାଇ ଦିଶେ ।

ସତକୁ ସତ ସେ ପୁଅଟି ଅପୂଜା ହାବୁଡରୁ ବଞ୍ଚିଗଲା । କେତେ ଦେବା ଦେବୀ ମନାସୀ କରି ସେ ପୁଅ ନାଁ ଦିଆଗଲା କାଳୀପ୍ରସାଦ । କିନ୍ତୁ ଅପର୍ଛିଆଣୀ ତ , ତାକୁ ବୁଢ଼ା ବୁଢ଼ା ବୋଲି ସମସ୍ତେ ଡାକିଲେ । ମୁଁ ବଡ ହେଲା ପରେ ଜାଣିଲି, ବୁଢ଼ାଟି ଅପୂଜା ହାବୁଡରୁ ନୁହେଁ ଧନୁଷ୍ଟଙ୍କାର ଜୀବାଣୁ ହାବୁଡରୁ ବଞ୍ଚି ଯାଇଥିଲା । ସେଇ ପୁଅଟି ହେବାପରେ, ଗଙ୍ଗାପାଣି ଆଉ ବେଶୀ ଖେଳିବାକୁ ଆସନ୍ତିନି । ତାଙ୍କ ବୋଉଙ୍କର ଗର୍ଭ ସୂତିକା ଝାଡା ପୁଅଟି ଜନ୍ମ ପରେ ରହିଯାଇଥିଲା । ସେ ପ୍ରାୟ ଅସୁସ୍ଥ ରହୁଥିଲେ । ଗଙ୍ଗାପାଣି ପାରୁପର୍ଯ୍ୟନ୍ତ ବୋଉ ଭାଇଙ୍କ ସେବାରେ ସମୟ କଟାଇ ଦେଉଥିଲେ ।

ଦିନେ ରାତି ଘଡିଏ ହେବ ମୋ ବୋଉ ତାଙ୍କ ଘରକୁ ଯିବାକୁ ବାହାରିଲା । ମୁଁ ତା ସାଙ୍ଗରେ ବାହାରିଲି । ତାଙ୍କ ଦାଣ୍ଡ ପିଣ୍ଡା ଓ ଦାଣ୍ଡ ଘର ଭାରି ଗହଳ ହୋଇଥିଲା । ଡ଼ାକ୍ତର ତାଙ୍କ ଶୋଇବା ଘର ଖଟରେ ବସି ତାଙ୍କ ବୋଉଙ୍କ ନାଡ଼ି ଦେଖୁଥାନ୍ତି । ଗଙ୍ଗାପାଣି ପାଖରେ ନଥିଲେ । ଡ଼ାକ୍ତର ଦେଖି ଠିକ୍ ଉଠି ପଡିଲା ବେଳକୁ, ଗଙ୍ଗାପାଣି ଗୋଟିଏ ପଥୁରୀ ବେଲାରେ ଦେଠେଇ ଘରୁ ଅଧବେଲେ ଅଉଡା ତୋଡାଣି ଆଣି ଲୁଣ ଲଙ୍କା ପକାଇ ବୋଉକୁ ପିଇବାକୁ ଦେବାକୁ ନେଉଛନ୍ତି । ଡ଼ାକ୍ତର ଠିଆ ହୋଇ ଜୋରରେ କହିଲେ-ଇଏ କ'ଣ ? ଗଙ୍ଗାପାଣି କାନ୍ଥକୁ ଆଉଜି ଯାଇ କାନ୍ଦ କାନ୍ଦ ସ୍ୱରରେ କହିଲେ- ବୋଉ କେତେବେଳଉଁ ମାଗୁଚି । କହୁଚି ମୋତେ ଭାରି ଶୋଷ । ଯା ଦେଠେଇ ଘରୁ ଲୁଣ ଲଙ୍କା ଭାଙ୍ଗି ମୋ ପାଇଁ ଅଉଡା ତୋଡାଣି ଆଣେ । ମୋ ତୋଟି ଖାଲି ଶୁଖି ଯାଉଛି । ଡ଼ାକ୍ତର ବିରକ୍ତ ହୋଇ ତାଙ୍କ ନନାଙ୍କୁ ଡାକି କହିଲେ- ଝିଅକୁ ଜଗ । ରୋଗୀକୁ ଯାହା ତାହା ଦେଇ ମାରିଦେବ ନା କ'ଣ ?

ଗଙ୍ଗାପାଣି ସେ ପଥୁରିଟା ତଳେ ଥୋଇ ଦେଇ, କାନ୍ଥରେ ମୁହଁମାଡି କଇଁ କଇଁ ହୋଇ କାନ୍ଦି ଉଠିଲେ । ମୁଁ ବି ତାଙ୍କ କାନ୍ଦ ଦେଖି ସମ୍ଭାଳି ପାରିଲିନି । ତାଙ୍କ ବୋଉ ନିର୍ବାକ୍ ଭାବରେ ଝିଅକୁ ଚାହିଁଥାନ୍ତି । ମୋ ବୋଉ ମୋତେ ତୁନି ହୁଅ ରୋଗୀ ପାଖରେ କାନ୍ଦନ୍ତିନି କହି- ଗଙ୍ଗାପାଣିଙ୍କୁ କୋଳକୁ ଟାକି ପିଣ୍ଡାକୁ ଘେନି ଆସିଲା । ତାଙ୍କୁ ବହୁତ ବୁଝାଇଲା । ଜର ହେଇଛି ପରା, ବାସି ତୋରାଣି ଦେଲେ ଦିହ ବେଶୀ ଖରାପ ହୋଇଯିବ । ତୁ ତ ଏଡିକି ଟିକିଏ ଝିଅ ! ବୋଉର ସବୁ କରୁଛୁ, ବୋଉ ଦେହ ଭଲ ହେଇ ଯାଉକି; ତାକୁ ତୁ ଯେତେ ଇଚ୍ଛା ତୋରାଣି ପିଆଇବୁ କହି କୋଡକୁ ଟାକି ପିଠି ଆଉଁଷି ଆଉଁଷି  କେତେ ବେଳ ପରେ କାନ୍ଦ ବନ୍ଦ ହେଲା । ତାଙ୍କ ନନା ମୋ ବୋଉକୁ କହିଲେ- ଆପଣ ତାକୁ ଆଜି ଆପଣଙ୍କ ଘରକୁ ନେଇ ଯାଆନ୍ତୁ । ବୋଉ କ'ଣ ଜାଣି ପାରିଲା କେଜାଣି କହିଲା ନାଇଁ ତା ବୋଉ ଖୋଜିବ । ଆଜି ରାତିକ ତା ବୋଉ ପାଖରେ ରହୁ । ଆମେ ଘରକୁ ଆସିଲା ବେଳେ ବୋଉ  ବାଟରେ କହୁଥାଏ- ସନ୍ନିପାତ ଧରଲାଣି , ରାତିକ ଆଗ ପାଉ !

ସେହି ରାତିର ଶେଷ୍ ପ୍ରହରରେ ଗଙ୍ଗାପାଣି କିଶୋରୀ ଅବସ୍ଥାର ସ୍ନେହ ଆନନ୍ଦ ହସ ଖୁସି ବିଶେଷ କରି ଗେଲବସର ପଣିଆର, ମୃତ୍ୟୁ  ହୋଇଗଲା । ତାଙ୍କ ବୋଉ ସାଥୀରେ । ଦଶ ଏଗାର ବର୍ଷର ଝିଅ, ପୁରା ପୁରି ଗୃହିଣୀଟିଏ ହୋଇଯିବାକୁ , ବିଧାତା ବାଧ୍ୟ କଲା । ଧୂଳିଖେଳ ଘରକୁ ଭାଙ୍ଗିଦେଇ ନନା ଓ କୁନି ଭାଇଥିବା ଘରଟିକୁ ସଜାଡୁ ସଜାଡୁ ଆଉ ବାହାରକୁ ବାହାରିବାକୁ ସମୟ ବଳିଲାନି ।

ଗଙ୍ଗାପାଣିଙ୍କୁ ଭାଇ ସହିତ  ନନାଙ୍କର ସବୁ କାମରେ ସାହାଯ୍ୟ କରିବାକୁ ପଡିଲା । ନନା ବାହାରକୁ ଗଲେ, ଭାଇର ସବୁ କାମ ସାରି ନନାଙ୍କ ପାଇଁ ରୋଷେଇ କରି ଭଲ ମନ୍ଦ ତୁଲାଇବାକୁ ପୁରା ସକ୍ଷମ ହୋଇଗଲେ । ଗଙ୍ଗାପାଣିଙ୍କ ସଙ୍ଗେ କେବେ ଦେଖାହେଲେ, ଆଗର ଗଙ୍ଗାପାଣି ପୁରା ହଜିଯାଇ ଅସଚ୍ଛତା ବିଷର୍ଣ୍ଣ ବାଦଲ ଢ଼଼ଙ୍କା ମୁହଁଟିରୁ କେବେ ଦୁଇଧାର  ତ କେବେ ଅଜସ୍ର ଅଶ୍ରୁର ପ୍ରବାହ ଛୁଟୁଥିଲା । କଥାରେ କହନ୍ତି-ଅରକ୍ଷିତକୁ ଦଇବ ସାହା, ଗଙ୍ଗାପାଣିଙ୍କ ଭାଗ୍ୟକୁ କାହୁଁ ଆସି ଜଣେ ବୟସ ଥିବା ସ୍ତ୍ରୀ ଲୋକ ଜୁଟିଗଲା । ଅଳପ ଦିନରେ ଶିରୀନାନୀ, ଶିରୀ ତୁଟିଯାଇଥିବା ଘରର ଶିରୀ ବଢ଼ାଇ ସବୁରି ଭାରି ଆପଣାର ହୋଇଗଲା । ଭାଇ ଖନେଇ ଖନେଇ ବୋଉ ବୋଉ ବୋଲି ଡାକିଲା । ନନାତ ବାତ ଜରୁଆ ଲୋକ  । ସେବାଶୁଶ୍ରୁଷାର କିଛି ଅଭାବ ରହିଲାନି । ନନା ପ୍ରାୟ ଅନେକ ଜଞ୍ଜାଳରୁ ମୁକ୍ତ ପାଇଗଲେ ।

କିନ୍ତୁ ଗଙ୍ଗାପାଣି ମୋର ହୋଇଗଲେ ଶ୍ରୀହୀନ,ଅରକ୍ଷିତା । ତାଙ୍କ ଗମ୍ଭୀର ମୁହଁ ଗମ୍ଭୀରରୁ ଗମ୍ଭୀରତର ହୋଇଗଲା । କାମ କମିଗଲା ସିନା, ଗାଧାନ୍ତିନି, ଖାଆନ୍ତିନି, ମୁଣ୍ଡ  ବି କୁଣ୍ଡାନ୍ତିନି । ଶିରୀନାନୀ ସାଙ୍ଗେ ବେଳେ ବେଳେ କଥା କଟା କଟି ହୋଇ ଦୁହେଁ ଦୁହିଁଙ୍କୁ କଟୁ ଭାଷା ପ୍ରୟୋଗ କରନ୍ତି । ଶିରୀନାନୀ ସାଙ୍ଗେ ଅଧିକାଂଶ ସମୟରେ କଥା

ବାର୍ତ୍ତା ବନ୍ଦ କରିଦିଅନ୍ତି । ନନାଙ୍କ ଉପରେ ପୁରା ଅଭିମାନ ଭରି ରହେ । ଶିରୀନାନୀ ତା'ର ପର୍ଯ୍ୟାପ୍ତ ସୁଯୋଗ ନିଅନ୍ତି । ଅଧିକ ମାମଲତକାର ହେବା ସଙ୍ଗେ ସଙ୍ଗେ ଗଙ୍ଗାପାଣିଙ୍କ ଦୁର୍ଗୁଣ ନନାଙ୍କ କାନରେ ଚୁପ୍ ଚୁପ୍ ବିସ୍ତାରିତ ଭାବରେ କହି, କାନ୍ଧ କଟା କରନ୍ତି । କଥାରେ ଅଛି-କାନରେ କହିବା ଲୋକର କଥାର ପ୍ରଭାବ ବେଶୀ । କାନରେ କହିବା କଥା କେବେ ଅନ୍ୟଥା ହୁଏନି । ନନା ବି ଶିରୀନାନୀଙ୍କ କଥାରେ ଅଧିକରୁ ଅଧିକ ପ୍ରଭାବିତ ହେଲେ । ଶିରୀନାନୀ ଗଙ୍ଗାପାଣିଙ୍କ, ଗଙ୍ଗାପାଣି ଶିରୀନାନୀଙ୍କ, କେହି କାହା ଶିରୀ ସହିପାରିଲେନି । ଗଙ୍ଗାପାଣିଙ୍କ ନନା ଦିନକୁ ଦିନ ଅତିଷ୍ଠ ହୋଇପଡିଲେ । ଶିରୀନାନୀଙ୍କ ବିନା ତ ଘର ଅଚଳ । ଏଣେ ଝିଅକୁ ବି କିଛି କହି ହେଉନି । ନନାଙ୍କର ଭିତରେ ଭିତରେ କୁହୁଳିବା ବିରକ୍ତିଟା କେବଳ ଝିଅ ଉପରେଇ ବଢ଼ିବାକୁ ଲାଗିଲା । ଭାଇଟିକୁ ଶିରୀନାନୀ ଏତେ ଆପଣେଇ ନେଇଥିଲେ ଯେ ସେଇ ବୋଉ କାଙ୍ଗାଳିଆ ପୁଅଟା ଆଉ କାହାକୁ ଆପଣେଇଲାନି । ସେ କଥାଟି ତା ନାନୀଙ୍କି ଯେତିକି ଅସହ୍ୟ ହେଲା, ନନାଙ୍କୁ ସେତିକି ଆଶ୍ୱସ୍ତ କଲା ।

ଥରେ ଆମ ନନା ଘରେ ଥାନ୍ତି । ତାଙ୍କର ମୋହନ ମିଶ୍ରଙ୍କ ପାଖେ କ'ଣ ଜରୁରୀ ଦ଼ରକାର ପଡିଲା । ମତେ ବୋଉ କହିଲା- ଯା ମାଆ ଟିକିଏ ମୋହନ ମଉସାଙ୍କୁ ଡାକି ଦେଇ ଆସିବୁ । ତାଙ୍କୁ କହିବୁ ନନା କାଇଁ ଖୋଜୁଛନ୍ତି । ମୁଁ ତାଙ୍କ ଘରକୁ ଗଲି, କିନ୍ତୁ କେଜାଣି କାହିଁକି, ମୋ ଗଙ୍ଗାପାଣି ଲାଗି କି କଅଣ ସେ ଶିରୀନାନୀଟା ମୋତେ ଜମା ସୁଖ ଲାଗେନି । ମହନ ମଉସାଙ୍କ ଦେହ ଭଲ ନଥିଲା । ସେ ମଝିଘର ଖଟରେ ଶୋଇଥିଲେ । ଶିରୀନାନୀ ବସି ତାଙ୍କ ଗୋଡ ଘସି ଦେଉଥିଲେ । ମୁଁ ଆଗ ପଚାରିଦେଲି, ଗଙ୍ଗାପାଣି କୁଆଡେ ଗଲେ କି ? ଶିରୀନାନୀ କହିଲେ- ଦେଖିଲୁ ପରା ମା' ନନା ଦେହ ସୁଖ ନାହିଁ, ଝିଅ ଆମର ହଳି ଦୋହଳି ଏତେ ବେଳକୁ ବଡ ପୋଖରୀକୁ ମାଜଣା ହେବାକୁ ଯାଇଛନ୍ତି । ତୁ ଟିକିଏ ବସୁନୁ । ମୁଁ ନାହିଁ କହି କହିଲି- ମଉସାଙ୍କୁ ନନା ଡାକିଛନ୍ତି ଯେ ମୁଁ ତାଙ୍କୁ ଯିବାପାଇଁ କହିବାକୁ ଆସିଥିଲି । କହି ସାଙ୍ଗେ ସାଙ୍ଗେ ଚାଲି ଆସିଲି । ମୁଁ ମଉସାଙ୍କୁ କହିଦେଇ ଆସିଛି ବୋଲି ନନାଙ୍କୁ ଖବର ଦେଲାବେଳେ, ନନା ପଚାରିଲେ- ମିଶ୍ରେ କଅଣ କରୁଥିଲେ କି ? ମୁଁ ଠିକ୍ କଅଣ କହିବି ବୁଝିପାରିଲିନି । ଟିକିଏ ରହି କହିଲି- ତାଙ୍କ ଦେହ ଭଲ ନାହିଁ, ଖଟରେ ଶୋଇଥିଲେ, ତାଙ୍କ ପୁଅର ବୋଉ ତାଙ୍କ ଗୋଡ ମୋଡି ଦଉଥିଲା । ମୁଁ ତାଙ୍କୁ କହି ଦେଇ ଆସିଲି । ନନା ମୋ ଉପରୁ ଆଖି ବୁଲାଇ ନେଇ ମୋ ବୋଉ ମୁହଁକୁ ଚାହିଁଲେ । ମୁଁ ପାହାଚରେ ଓହ୍ଲାଉଥିବାବେଳେ ବୋଉ ଧୀରେ ଧୀରେ ଗଙ୍ଗାପାଣିଙ୍କ ଦୁର୍ଦ୍ଦଶା ସହ ଶିରୀନାନୀ କଥା ନନାଙ୍କୁ କହୁଥିଲା ।

ଯାହାହେଉ ମୋହନ ମିଶ୍ରେ ଟାଉଟରିଆ ହେଲେ ବି ଭାରି ବୁଦ୍ଧିବାନ୍ ଲୋକ । ସେ ଗୋଟିଏ ବାଟ ବାଛିନେଲେ । ''ମୁକ୍ତୁ ମାଇଲେ ଯିବ ସରି, ଦେବଙ୍କ ସାଙ୍ଗେ କିମ୍ପା କଳି''

'ସାପ ମରିବନି କି ବାଡ଼ି ଭାଙ୍ଗିବନି' ନୀତିରେ ଝିଅଟି ଚଉଦ ବର୍ଷରେ ଗୋଡ ଦଉ ଦଉ ତା ପାଇଁ ଗୋଟିଏ ବରଘର ଠିକ୍ କରିଦେଲେ ! ଝିଅ ବି ସେହି ବୟସରେ ପ୍ରଭୁଙ୍କ ନିକଟରେ ସେହି ପ୍ରାର୍ଥନା କରୁଥିଲା କି କ'ଣ । (ଯେମିତି ପଶୁଟିଏ ଜନ୍ମ ହଉ ହଉ ନିଜେ ମା କ୍ଷୀରର ସନ୍ଧାନ କରେ, ସେମିତି ମା ନଥିବା ଝିଅ ଗୁଡାକ ବଡ ଚଞ୍ଚଳ ପାକଳ ହୋଇଯାନ୍ତି ।) ତାଙ୍କ ପାଇଁ ନନା ପୁରୀର ହରଚଣ୍ଡି ସାହିରେ ବିଭାଘର ସ୍ଥିର କରିଦେଲେ । ତାଙ୍କ ଶାଶୁ ଘରର କଟକଣା ଭିତରେ ଧୀରେ ଧୀରେ ଗଙ୍ଗାପାଣି ହଜି ଯିବାକୁ ଲାଗିଲେ । ତାଙ୍କ ଘରେ ମାଇନ ର ଏତେ କଟକଣା ଥିଲା ଯେ ବୋହୂ ଦିନରେ ଉପର ସାହାଲାକୁ ଯିବାର ବିଧାନ ନଥିଲା । ତେଣୁ ଝିଅଟି ଶାଶୁଘରୁ ବାପ ଘରକୁ ଆସିବାର ବେଶୀ ସୁଯୋଗ ନଥିଲା ! କି ଝିଅଟିର ସ୍ୱାମୀ ଝିଅଟିକୁ ଆଉ ବାପଘରକୁ ଛାଡିବାକୁ ଇଛା କରୁନଥିଲେ । ତାପରେ ଥରେ ଅଧେ ଗଙ୍ଗାପାଣିକି ଦେଖିଥିଲି କି ନାହିଁ, ସେହି ପ୍ରାଣର ସାଙ୍ଗ ସବୁଦିନ ପାଇଁ ମୋ ଠାରୁ ହଜି ନଯାଇ ଆଉ ଥରେ ବାର୍ଦ୍ଧକ୍ୟରେ ଦେଖାଦେଇ ହଜିଯାଇଥିଲା ।

ଦିନେ ଦୁହିଁଙ୍କ ବାର୍ଦ୍ଧକ୍ୟ ଭେଟାଭେଟି ହୋଇ ନହେଲା ପରି ହଜିଗଲେ । ସେହି କଥା ଭାବୁ ଭାବୁ ସେହି ଗଙ୍ଗାପାଣିର କିଶୋରୀଟି ଭିତରୁ ବାର୍ଦ୍ଧକ୍ୟର ଗୋଟିଏ ବିଗ୍ରହ ଧୀରେ ଆସି ମୋ ଆଗରେ ଠିଆ ହୋଇଗଲା । ମୋ ଠାରୁ ଅଳ୍ପ ଦୂରରେ ,ପୁରୀ ବଡ ଦେଉଳର ନାଗାର୍ଜୁନ ବେଶ ଗହଳି ରାତିରେ । ହଠାତ୍ ସେ ମୁହଁରେ ମୋ ଆଖି ପଡିଗଲା । ମୋତେ ଲାଗିଲା ଦୀର୍ଘ ଦିନର ହଜିଯାଇଥିବା କଳଙ୍କି ଲଗା ମୋର ଅତି ଆପଣାର ଜିନିଷଟିଏ । ମୁଁ କଳଙ୍କିକୁ ଘଷି ଘଷି ଛଡାଇ ତା'ର ଅସଲ ରୂପକୁ ଦେଖିବି ବୋଲି ବିଚାରୁଥିଲି । ଇଏ କିଏ ଠିକ୍ ସିଏ ଟି ? ଦେହର ରଙ୍ଗ ତ ଆଉ ଶ୍ରାବଣ ଆକାଶ ପରି ଢ଼ଳ ଢ଼ଳିଆ ସାବନା ନୁହଁ । ପୂରା ବର୍ଷଣ ମୁଖର ଘନ କଳା କଳାହାଣ୍ଡିଆ ମେଘପରି ଗମ୍ଭୀରରୁ ଗମ୍ଭୀରତର ନିର୍ବେଦ ପଥୁରିଆ ରଙ୍ଗ । ମୁହଁର ହନୁହାଡ ଦୁଇଟା ଇଞ୍ଚେ ଲେଖେଁ ବାହାରକୁ ବାହାରି ପଡି ଆଖି ଦି'ଟାକୁ କେଉଁ ଭିତରକୁ ଠେଲି ଦେଇଛି । ମୁହଁ ଆଗର ଛାମୁ ଦାନ୍ତ ଗୁଡାକ କେତେଗୁଡିଏ ବିଦାୟ ନେଲାବେଳେ ଗାଲଟିକୁ ଭିତରକୁ ଭିଡି ନେଇଛନ୍ତି । ସବୁଠାରୁ ଦୁଃଖ ଦେଲା ଏକବାରେ ଚକ୍ ଚକ୍ ଧଳା ବାଳ ତଳକୁ ସିନ୍ଦୂର ବିହୀନ ସାଧା କପାଳ । ଧଡି ନଥିବା ଆଡ କୋତରିଆ ଧଳା ଲୁଗା ଭିତରୁ ଲଙ୍ଗଳା ବାଲୁ ବାଲୁ ହାତ ଦୁଇଟି ବାହାରି ଜଗନ୍ନାଥଙ୍କୁ ଭକ୍ତିପୂର୍ଣ୍ଣ ପ୍ରଣାମଟିଏ କରି ମୁହଁଟିକୁ ଟେକି ଦେଲେ । ଆମ ଚାରିଚକ୍ଷୁ ଏକାଠି ହୋଇ ସେହି ଚାହାଣିରେ ମୋତେ ପୂରା ଧରିପାରିଥିଲେ ସୁଦ୍ଧା ନିଜେ ଆଉ ଧରା ଦେବାକୁ ଇଚ୍ଛା ନକରି, ପ୍ରବଳ ଲୋକ ଗହଳରେ ନିଜକୁ ଜାଣି ଜାଣି ହଜାଇ ଦେଇଥିଲେ । ମୁଁ ଦୀର୍ଘ ନିଃଶ୍ୱାସଟିଏ ପକାଇ ଘରକୁ ଫେରିଲି । ଆଉ କେବେ ଦେଖିନି । ଅନୁଭବ କରୁଛି ଗଙ୍ଗାପାଣିର ସେଇ ସୁନ୍ଦର ଦେହଟି ଦିନକୁ ଦିନ ମୋଠାରୁ ହଜି ଯାଉଛି ସେଇ କଠୋର କାଠୁଆ ବିଗ୍ରହ ଭିତରେ ।।



# ସଙ୍ଗାତ

କହିଛି ତ ପର୍ଯ୍ୟାପ୍ତ ଏକାନ୍ତ । ମୋ'ର ନିଦ ନଥିବା ମୁଦା ଆଖିତଳେ ସୁନ୍ଦର ମୁହଁଟିଏ ଖାଲି ନୁହଁ, ଏକାଳର ବିଶ୍ୱସୁନ୍ଦରୀ ପରି ପ୍ରାୟ ପାଞ୍ଚଫୁଟ ଛ' କି ସାତ ଇଞ୍ଚର ଗୋରା ତକ ତକ ଲହକା ନିଟୋଳ ଚିକ୍କଣ ଦେହଟିରେ ଖଣ୍ଡାଧାର ପରି ସୁନା ମାଛି ପିନ୍ଧା ନାକ, ପ୍ରଶସ୍ତ କପାଳ, ଯୋଡେ ପଦ୍ମ ପାଖୁଡା ପରି ଢ଼ଳ ଢ଼ଳିଆ ଆଖି, ଲମ୍ବ ଭ୍ରୁ, ଗୋଲାପି ସରୁ ଓଠ ଦିଟା, ସବୁବେଳେ ଦର ଦର ହସ, ସତେ ଯେମିତି ମଲ୍ଲି କଢ଼ିଆ ଦାନ୍ତ ଗୁଡାକ ତା' ଭିତରୁ ବାହାରକୁ ଉଙ୍କି ମାରୁଥାନ୍ତି । କୁଞ୍ଚୁ କୁଞ୍ଚିଆ ବାଳଗୁଡାକ ଅସଜଡା, ଯେତେ କୁଣ୍ଡେଇଲେ ବି କଥା ମାନେନି । ପଦ୍ମ ଫୁଲକୁ ଶିଆଳି ମାଡିଗଲା ପରି, ମୁହଁ ଉପରକୁ ମାଡି ଆସିଥାଏ । ପ୍ରାୟ ଦି' ତିନି ମିନିଟରେ କେତେବେଳେ ବାଁ ତ କେତେବେଳେ ଡାହାଣ ହାତଟା ତାକୁ ବାରମ୍ବାର ଉପରକୁ ଟେକି ଟେକି ଏପଟ ସେପଟ କରି ମୁଣ୍ଡ ଉପରେ ଉଡାଉଥାଏ । ଯେତେ ଯାହା ହେଲେ ବି ଲୋକେ ଡାକନ୍ତି- 'ଡେଙ୍ଗେଇ ମଣି' । ତାଙ୍କ ନନା ଖୋଜି ପକାନ୍ତି, ସେ ନଳିଚା କୁଆଡେ ଗଲା । ସେ ରୂପକୁ କିଏ ପସନ୍ଦ କରୁ ନକରୁ ମୋ ପାଇଁ କିନ୍ତୁ ଅପରିହାର୍ଯ୍ୟ । ସେ ଆଠ ଦିନ ମାମୁଁ ଘର ଗଲେ ମୋତେ ଦୁନିଆ ସୁଖ ଲାଗେନି । କିନ୍ତୁ ସେ ଥରେ ଗଲେ, ମାମୁଁ ଘରେ ମାସେ ମାସେ ରହିଯା'ନ୍ତି । କନିଆ ମାଇଁ କୁଆଡେ ତାକୁ ଭାରି ସୁଖ ପାଆନ୍ତି । ଆଉ ତାଙ୍କ ମାମୁଁ ଝିଅ ଭଉଣୀଟୀ ତା ମାଆ ମରିଗଲା ବେଳେ, ଯାଙ୍କ ବୋଉ ତା'ର ପିଇସି ନାନୀ , ଇଏ ମା' ଝିଆ ଭାଇଭଉଣୀ ଦି'ଟାଙ୍କୁ ବର୍ଷେ ରହି ପାଳି ଦେଇଥିଲେ । ଯାଙ୍କର ସାଙ୍ଗ ସରିସା ମାମୁଁ ଝିଅ ଭଉଣୀ ତାନ୍ଦଟା, ଯାଙ୍କର ଭାରି ପ୍ରିୟ । ସିଏ ବି ସଙ୍ଗାତ ସାଙ୍ଗେ ଆମ ଗାଁକୁ ଆସିଲେ ଏଇଠି ବହୁତ ଦିନି ଯାକେ ରହିଯାଏ । ସଙ୍ଗାତଙ୍କ ନନା ତ ଆମ ସାନ ଆପଣେ ।

ସାନ ଆପଣେ  ମାଷ୍ଟରିରେ ସାନ ନୁହଁନ୍ତି । ନାଁ ଟି ମଧୁସୂଦନ ହୋତା । ସେ ଦେଖିବାକୁ ଛୋଟିଆ ମଣିଷଟିଏ । ଏମିତିକି ସଙ୍ଗାତଙ୍କ ବୋଉ, ଆପଣଙ୍କଠାରୁ ଗୋଖଣ୍ଡେରୁ ଅଧିକା ଡେଙ୍ଗା ହେବେ । ଆଉ ସାନ ଆପଣେଙ୍କ ପଡିଶାଘର ଭାଇଙ୍କ ନାଁ ବି ମଧୁ ମିଶ୍ର । ସେଇଥି ପାଇଁ ତାଙ୍କ କାଣି ବୋଉ ଭାଇଙ୍କ ଆଉ ଦିଅରଙ୍କ ନାଁ ଧରନ୍ତି ନି । କାରଣ ବର, ଦେଢ଼ଶୁର, ଶ୍ୱଶୁର, ଶାଶୁ, ଖୁଡିଶାଶୁ, ସବୁ ଗୁରୁଜନ ମାନଙ୍କ ନାଁ ଧରିବା ତ ମହାପାପ୍ । ସେଇଥି ପାଇଁ କାଣୀ ବୋଉ, ସଙ୍ଗାତ ବୋଉଙ୍କୁ କହନ୍ତି- ଆଲୋ ମଣି ! ବୋଉ ଛୋଟିଆ ଘରେ ନାହାନ୍ତି କି ? ଆସିଲେ ଟିକିଏ କହିବୁ ମୁଁ ଖୋଜୁଥିଲି  ବୋଲି । ଛୋଟିଆଙ୍କୁ ଟିକିଏ କହିଲେ କାଣୀଟାକୁ ସାଙ୍ଗରେ ଇସ୍କୁଲକୁ ଟିକିଏ ନେଇଯିବେ । ସେ ଜମା ଯିବାକୁ ମଙ୍ଗୁନି ।

ସେ କାଶୀ ବୋଉ ଗୁରୁଜନ ମାନଙ୍କ ନାଁ ନ ଧରିବାରେ ଏତେ ବିଚକ୍ଷଣ ଯେ ଥରେ ଶଶି ବୋଲି ଗୋଟିଏ ଝିଅ ତାଙ୍କ ଘରକୁ ଆସିଥିଲା । ତା ଅଜାଙ୍କ ନାଁ ବନମାଳୀ । ବୋଉ ନାଁ ପଦ୍ମା । ଏଣେ କାଶୀ ବୋଉଙ୍କର ଶଶୁର ନାଁ ଶଶି, ସପନି, ଆଉ ପାନ । ସେ ତାଙ୍କ ଝିଅକୁ କହିଲେ- ଆଲୋ ତୁ କ'ଣ ଯାକୁ ଚିହ୍ନିନୁ କିଲୋ ! (ଇଏ ପରା ନନମାଳି ଦାସ ନାତୁଣୀ, ନଦୁଆଁ ଝିଅ ନସି) (ନଅପ ମଶିଣା ପକେଉ ଦେଇ ,ନାନ ଖିଲ ଖଣ୍ଡେ ଭାଙ୍ଗି ଦେ ବସି) ତା ମାନେ ସେ ବନମାଳୀ ପଦ୍ମା, ଶଶି, ସପନି, ପାନ କାହାରି ନାଁ ଧରି ନଥିଲେ । ସେଇଥି ପାଇଁ ସିଏ ଆମ ପିଲାମାନଙ୍କର ହସ ବୃଷ୍ଟିର କଥନୀ ହୋଇଥିଲା । ତାଙ୍କରି ଡାକିବା ଅନୁସାରେ, ଅନେକେ ବି ସାନ ଆପଣେଙ୍କୁ ଛୋଟିଆ ଡାକନ୍ତି । ସାନ ଆପଣଙ୍କର ଗୋଟିଏ ଅଭ୍ୟାସ, ସ୍କୁଲକୁ ଗଲାବେଳେ, ସବୁ ପିଲାଙ୍କୁ ଗୋଟେଇ ପୋଟେଇ ସାଙ୍ଗରେ ନିଅନ୍ତି । ଯେଉଁ ପିଲାଟା ଘରେ ଟିକିଏ ଗୋଳମାଳ କରେ, ତାକୁ ଧମକ ଦିଆହୁଏ ରହ ସାନ ଆପଣେଙ୍କୁ ଡାକୁଛି । ଆପଣେ ବି ଖବର ପାଉ ପାଉ ବେତ ଖଣ୍ଡେ ଧରି ଆସି ହାଜର । ପିଲାଟିକି ଟିକିଏ ଉତ୍ତମ ମଧ୍ୟମ ଦେଇ ଶାସନ କରି ଯାଆନ୍ତି । (ସାନ ସାପର ବିଷ ବେଶୀ) ଭଳିଆ ସବୁ ପିଲେ ସାନ ଆପଣେଙ୍କୁ ଭାରି ଡରନ୍ତି ।

କିନ୍ତୁ ସବୁଠାରୁ ଗୋଟିଏ ବ୍ୟତିକ୍ରମ ସାନ ଆପଣଙ୍କ ସାନ ପୁଅ କାହ୍ନା । (କୃଷ୍ଣ ତ ଦି' ପତ୍ରରୁ ବଳୀୟାର) ଏତେ ଦୁଷ୍ଟ ଯେ ତାକୁ ସାନ ଆପଣେ ବି ଡରନ୍ତି । ଏଇ ବା ଏଗାର ବର୍ଷର ପିଲାଟା ନଡିଆ ଗଛରେ ଚଢ଼ି ନଡିଆ ତୋଳି ଆଣିବ ତ, ପାଣି କୁଆ ସାଙ୍ଗେ ପାଣିରେ ବୁଡି, ପାଣି କୁଆଟାକୁ କାଖରେ ଜାକି ଉପରକୁ ଉଠି ଆସିବ । ଅଶିଣ ମାସରେ ତ ଠାକୁରାଣୀଙ୍କ ପାଇଁ ଫୁଲମାଳ ମାନ ଗୁନ୍ଥି ଚୁଆ,ସିନ୍ଦୂର,ରକ୍ତ ଚନ୍ଦନ, ଘିଅ ବଳିତା, ଫୁଲ ଦୁବ ଧରି, ମନ୍ଦିରକୁ ଝିଅ ମାନେ ସାଙ୍ଗ ହୋଇ ଯାଇ ଦିଅଁକୁ ମୁଣ୍ଡିଆ ମାରି ଆସିବା ତ ନିଶ୍ଚିତ । କୁଆଁରୀ ଝିଅମାନଙ୍କ ପାଇଁ ଅଶିଣ ମାସ ଷୋଳ ପୂଜାର ସନ୍ଧ୍ୟା ଗୋଟିଏ ବଡ ଆକର୍ଷଣ । ବାର ହାତି ମାଳ ଗୁନ୍ଥିବା ପାଇଁ ଆମ ଝିଅଦଳଙ୍କର କାହ୍ନାଟା ଯେମିତି ଅମୃତାଞ୍ଜନ । କେଉଁ ରାତିରୁ କାହା ବାଡିରୁ ଟଗର ତ କାହା ବାଡିରୁ ଯୁଇ, କେଉଁ ବଣରୁ ମାଳତୀ ତ କେଉଁ ପାଣିରୁ କଇଁ ଆଣି ଗଦେଇ ଦବ । ଆଉ ସୂର୍ଯ୍ୟ ଉଦୟ ହେଲାବେଳକୁ ଯାଇ ଗଙ୍ଗଶିଉଳି ଗଛକୁ କୁଣ୍ଢେଇ ତାରି ଉପରେ ଶୋଇଥିବ । ଆଉ କିଏ ଗଛ ମୂଳକୁ ଆସିଲେ, ଗଛ ଉପରୁ ତା ଉପରକୁ ଢେ଼ଲା ମାଡ କରିବ । ଟିକିଏ ଖରା ବାଜି ଯେମିତି ଗଙ୍ଗଶିଉଳି ଝଡିବ, ଗଛକୁ ଝାଙ୍କି ଝାଙ୍କି ଗାମୁଛାରେ ଗଣ୍ଠିଲିଏ ଫୁଲ ବାନ୍ଧି ଆସି ହାଜର । ଆମ ଦଳ ଝିଅଙ୍କୁ ସେ ଯେତେ ସାହାଯ୍ୟ କଲେ କ'ଣ ହେଲା, ସଙ୍ଗାତ କିନ୍ତୁ ଜମା ସେ ଟୋକାଟାକୁ ସହନ୍ତିନି । କହନ୍ତି ଇଏ ମାଷ୍ଟରଙ୍କ ପୁଅ ସିନା ଖାଲି ଜୀବନ ଯାକ ମାଙ୍କଡ ମାରିବ । ନନାଙ୍କ ନାଁ ପକାଇ ସାତ ପାଞ୍ଚିରୁ ଯିବ । ସିଏ ବି ସଙ୍ଗାତଙ୍କୁ ଜିଭ ଦେଖେଇ, ଖତେଇ ହେଇ କହିବ- (ଇଏ ଡେଙ୍ଗେଇ ଘୋଡା ନିର୍ଲଜ୍ଜି ଖଡାକୁ ବର ମିଳିବନି ) ଇଏ ନନାଙ୍କୁ ଅନେକ ଅବଜ୍ଞା କରିବ ।

ସତକୁ ସତ ମୋ ସଙ୍ଗାତ ମୋଠୁଁ ତ ବୟସରେ ବଡ । ତାଙ୍କ ଡେଙ୍ଗାପଣ ପାଇଁ, ନନା ତାଙ୍କର ବାର ବରଷରୁ ଜୋଇଁ ପାଇଁ ଆଖି ବୁଲାଉ ବୁଲାଉ ଗୁଡାଏ ଦିନ ବିତିଗଲା । କହନ୍ତି ତ - (ସୁନ୍ଦରୀକୁ ବର ନାହିଁ, କି ଘରଣୀକି ଘର ନାହିଁ ) ମୋର ଏତିକି ସୁନ୍ଦର ସଙ୍ଗାତର ସବୁ ସୌନ୍ଦର୍ଯ୍ୟ ଡେଙ୍ଗା ପଣରେ ଉଭେଇ ଯାଉଥାଏ । ତାଙ୍କ ନନା ବ୍ୟସ୍ତ ହୋଇ ବେଳେ ବେଳେ କହନ୍ତି- ଇଏ ନଳୀ ପାଇଁ ଆଉ କେତେ ବର ଖୋଜିବି । ୟା ପାଇଁ କେହି ଜନ୍ମ ହୋଇନାହାନ୍ତି ବୋଧେ । ଘଣ୍ଟା ସାଇକେଲ କିଣିବା ପାଇଁ ପେଟରୁ ପିଠିରୁ କାଟି କାଟି ଟଙ୍କା ଜମା କରି ରଖିଛି । ଯୋଗ ତ ପଡୁନି । ତା ବୋଉର ପୁଣି ଏକା ଜିଦ୍ ଝିଅଠଉଁ ଜୋଇଁ ସାନ ହେବନି । ସାନ ଆପଣେ ଚିଡିଯାଇ କହନ୍ତି- ଏଇଟା ଗୋଟେ ମାଇପି କଥା । ପୁଅ ପିଲାର ସୁନ୍ଦର ଅସୁନ୍ଦର ଡେଙ୍ଗା ଗେଡା କ'ଣ । ଆମେ ସବୁ କ'ଣ ଘର ସଂସାର କରୁନଥେଇଁ । ଇଏ ଝିଅ ପାଇଁ ଡେଙ୍ଗା ଜୋଇଁ ଜନ୍ମ ହୋଇଥିଲେ ତ ?

ଆମ ବୋଉ ବେଳେ ବେଳେ ଶୁଣିଲେ କହେ- ମାହାଳିଆ ବ୍ୟସ୍ତ ହେଉଛ ମଧୁ (ଯେତେ ଭାର ସେତେ ଘର, ଯେତେ ଝିଅ ସେତେ ବର) ଭଗବାନ ତା ପାଇଁ କେଉଁଠି ହେଲେ ଖଞ୍ଜିନଥିବେ ? ପୁଣି ତୁମ ପରି ଭଲ ଲୋକକୁ ଭଗବାନେ କେବେ ହଇରାଣ କରିବେନି । ଲୋକେ ସିନା ଗାଈ ଚରାନ୍ତି, ତୁମେ ପରା ମଣିଷ ଚରଉଛ । କେତେ କାହା ପିଲାଙ୍କୁ ମଣିଷ କରୁଛ । ଦେଖିବ କିଛି ଅସୁବିଧା ହବନି । ଆପଣେ ଟିକିଏ ଖୁସି ହୋଇ କହନ୍ତି- ଆପଣ ଆଶୀର୍ବାଦ କରନ୍ତୁ, ଆପଣଙ୍କ ତୁଣ୍ଡ ଶ୍ରୀତୁଣ୍ଡ ହେଉ । ସତକୁ ସତ ଦିନେ ଜଣେ ମଧସ୍ଥି ଆସି ମାଷ୍ଟରଙ୍କ ଦୁଆରେ ହାଜର । ମାଷ୍ଟ୍ରଙ୍କ ପିଣ୍ଡାରେ ବସି, ପାନ ଖାଇ ମାଷ୍ଟ୍ରଙ୍କ ସାଙ୍ଗେ କଥାବାର୍ତ୍ତା ହୋଇଗଲେ ।

ଆଠ ଦିନ ଛାଡି ଜଣେ ସଧବା ଜଣେ ବିଧବା ମାଇପି, ଝିଅ ଦେଖିବାକୁ ଆସିଲେ । ସେ ଖବରଟା ପ୍ରବଳ ବେଗରେ ଆମ ସାଙ୍ଗ ମହଲରେ ଖେଳି ଗଲା । ମୁଁ ଆଉ ସଙ୍ଗାତର ସେ ମାମୁଁ ଝିଅ ଭଉଣୀ ଦୁହେଁ ସଙ୍ଗାତ ପାଖେ ମଝିଘର ଖଟ ଉପରେ ବସିଥାଉ । ସଙ୍ଗାତ ଗୋଟିଏ ଭଲ ଲୁଗା ପିନ୍ଧି ଖଟ କୁଣରେ ଗୋଡ ଯୋଡାକ ଜାକି ବସିଥାନ୍ତି । ଭାରି ଚିନ୍ତିତ ଥିଲା ପରି ଲାଗୁଥାଏ । ପୁଣି ଅପସନ୍ଦର ଭୟ, ତାଙ୍କ ମନଟିକୁ ବ୍ୟତିବ୍ୟସ୍ତ କରି ତାଙ୍କୁ ବିଚଳିତ କରି ପକାଉଥାଏ । ବେଳେ ବେଳେ କହୁଥାନ୍ତି ସେମାନେ ଜଳଖିଆ ଖାଇଲେଣି କି ନାହିଁ । କେତେବେଳେକୁ ଯିବେ ? ମଣିଷ ଭାରି ଅଡୁଆରେ ପଡିଲା ।

ଚାନ୍ଦ ତାଙ୍କ ମୁହଁକୁ ଟିକିଏ ହଲେଇ ଦେଇ କହିଲା- ମା'ଲୋ ସିଏ ତ ରାଜି ହୋଇଗଲେ । ସବୁଦିନକୁ ଅଡୁଆରେ ପଡିଯିବୁଯେ, ଆମେ କିଏ, ତୁ କିଏ । ସଙ୍ଗାତ ତାକୁ ଠେଲି ଦେଇ କହିଲେ- ଯାଉନୁ ତୋର ସବୁବେଳେ ଥଟ୍ଟା । ଇଏ ଘଡିସନ୍ଧି ବେଳେ ତୋତେ କୌତୁକ ଲାଗୁଚି ନା ? ସେତିକିବେଳକୁ ତାଙ୍କ ବୋଉ ଆସି କହିଲେ- ତୁମେ ଦୁହେଁ ତାଙ୍କୁ ସାଙ୍ଗରେ ଧରି ଆସ । ସଙ୍ଗାତ ଠିଆ ହୋଇ ମୁଣ୍ଡରେ ଟିକିଏ ଅଧିକ କରି ଲୁଗା ଟାଣିଲେ,ବେକକୁ ଭାଙ୍ଗି ନିଜର ଉଚ୍ଚତା ଟିକିଏ କମେଇବାକୁ ଚେଷ୍ଟା କଲେ କି ,

ଲଜ୍ଜାରେ ସଙ୍କୁଚିତ ହୋଇ ଉଠିଲେ ମୁଁ ଜାଣି ପାରିଲିନି । ଆମେ ଦୁହେଁ ତାଙ୍କ ହାତ ଧରି ତଳ ଘରକୁ ନେଇଗଲୁ । ସେଇଠି ମଶିଣା ଉପରେ ସେ ଦି' ଜଣ ଯାକ ସ୍ତ୍ରୀ ଲୋକ ବସିଥାନ୍ତି । ଆଗ ଟିକିଏ ବେକ ଟେକି, ସଙ୍ଗାତଙ୍କ ମୁହଁକୁ ଚାହିଁଲେ । ମୁଁ ବି ସେତେବେଳେ ସେମାନଙ୍କ ମୁହଁକୁ ଚାହିଁ ତାଙ୍କ ଅନ୍ତରର ଭାଷା ବୁଝିବାକୁ ଚେଷ୍ଟା କରିଥାଏ । ମୋ ସଙ୍ଗାତର ମୁହଁ କ'ଣ କେବେ କାହାକୁ ଅପସନ୍ଦ ହେବ ? ମୁଁ ମୋଟେ ଭାବି ପାରୁନଥାଏ । ତଥାପି ସେମାନଙ୍କ ଚାହାଣି ତଳ ଉପର ହେଉଥିବାରୁ ମୁଁ ତାଙ୍କ ମନର ପ୍ରସନ୍ନତା ଦେଖି ପାରୁନଥାଏ । ଟିକିଏ ପରେ ସେ ସଙ୍ଗାତକୁ ବସିବାକୁ କହିଲେ । ଆମେ ତିନିଜଣ ଯାକ ବସିଲୁ । ସେମାନେ ବେଶୀ ମୋ ନାଁ ଗାଁ ପଚାରି ଲାଗିଥାନ୍ତି । ଆଉ ବେଳେବେଳେ ଚାନ୍ଦକୁ ବି, ଆଉ ତାରି ଭିତରେ ବାରମ୍ବାର ସଙ୍ଗାତର ସେଇ ସୁନ୍ଦର ମୁହଁଟାରେ ଆଖି ପକାଉଥାନ୍ତି ।

ଶେଷକୁ ତାକୁ ପଚାରିଲେ- ମା' ରନ୍ଧାବଢ଼ା ଜାଣୁ । ତାଙ୍କ ବୋଉ କହିଲେ ହଁ । ଏକୁଟିଆ ଘର ତ ମୋ ସାଙ୍ଗେ ସବୁବେଳେ ମିଶେ । ନହେଲେ ଚାକିରିଆ ଘର ମୁଁ ଏକାରେ କଣ ପାରନ୍ତି । ପୁଣି ତାଙ୍କ ପ୍ରଶ୍ନ-ଝୋଟି ମୁରୁଜ ଆସେ ? ପୁଣି ବୋଉ କହିଲେ, କଣ କହୁଛ ସାଙ୍ଗ ! ଶାସନ ଗାଁ ଝିଅ ପରା,ଝୋଟି ମୁରୁଜରେ କଣ ହାରିଯିବ ? ପୁଣି ପ୍ରଶ୍ନ- ଆଉ ପଢ଼ା ପଢ଼ି କଣ କରିଛି ? ପୁଣି ସେଇ ବୋଉଙ୍କ ଉତ୍ତର, ମାଷ୍ଟ୍ରଙ୍କ ଘର ଝିଅ ପରା, ଆଉ କଣ ମୂର୍ଖ ହବ । ସଧବା ସ୍ତ୍ରୀ ଲୋକ ଜଣକ ଟିକିଏ ବ୍ୟଗ୍ର ହୋଇ କହିଲେ- ହେଲାଯେ, ଝିଅ କଣ ଖନି କି ? ତାକୁ ଟିକିଏ କହିବାକୁ କହୁନ ? ମୁଁ ସାଙ୍ଗେ ସାଙ୍ଗେ କହିଲି, ତୁମେ ତାଙ୍କ ନାଁ ପ ଚାରୁନ, ସେ ନା ପଚାରିଲାରୁ ସଙ୍ଗାତ କନକ ବୋଲି ଏତେ ଧୀରେ କହିଲେ ଯେ, ତାଙ୍କ ଦିହକୁ ଲାଗି ବସି ବି ମୋ କାନକୁ ଶୁଭିଲାନି । ପୁଣି ସେ ଆଉ ଥରେ କ'ଣ ବୋଲି ପଚାରିଲାରୁ- ଆଉ ଟିକିଏ ଜୋରରେ କହିଲାବେଳକୁ ମୋତେ ଲାଗିଲା ସଙ୍ଗାତଙ୍କ ତୋଟି ଟାକୁ କିଏ ଚିପି ଧରିଛି । ମୁଁ ସଙ୍ଗାତକୁ ଝୁଙ୍କେଇ ଦେଇ କହିଲି- ଆଉ ଟିକିଏ ଜୋରରେ କହୁନ !

ସେତେବେଳେ ଅବିବାହିତ ଝିଅବି ଟିକିଏ ବଡ ହେଇଗଲେ, ମୁଣ୍ଡରେ ଲୁଗା ଦବାର ନିୟମ ଲାଗୁ ହେଉଥିଲା । ସେମାନେ ସଙ୍ଗାତକୁ କହିଲେ, ମୁଣ୍ଡରୁ ଲୁଗା କାଢ଼ିଲୁ, ମୁହଁ ପାଖ ବାଳ ତ ଏଡେ କୁଞ୍ଚୁ କୁଞ୍ଚିଆ ପଛ ପଟେ ଗଣ୍ଠି ପଡିଛିଟି ! ଚାନ୍ଦ ତାଙ୍କ ମୁଣ୍ଡରୁ ଓଢ଼ଣାଟି କାଢ଼ି ତାଙ୍କ ମୁହଁଟିକୁ ପଛକୁ ବୁଲାଇ ଦେଖାଇ ଦେଲା । ହଁ ଚଳିବ କହି, ଦିହେଁ ଉଠିଲେ । କିନ୍ତୁ ଗୋଟିଏ କଥା ସବୁରିକି ବିଚଳିତ କଲା । ସେ ଦିହେଁ ଗଲେ ଭାରି ସିନା ସଙ୍ଗାତଙ୍କ ହାତରେ ଯୋଡିଏ ଟଙ୍କା ତ ଦେଲେନି । ତେଣୁ ଝିଅ ପସନ୍ଦ ନ ହେବାର ବହୁତ ସମ୍ଭାବନା ରହିଗଲା ।

ମୋତେ କାହିଁକି ଭାରି ବାଧିଲା । ଆମ ଗୁହାଳରୁ ଦାମୁଡ଼ି କି ଛଡା କିଣି କରି ନେଲା ବେଳେ, ଯେମିତି ପରୀକ୍ଷା କରନ୍ତି । କେତେଟା ଦାନ୍ତେଇଛି, ଭଲ ଥୋମଣି ବୁଡେଇ ଖାଉଛି ତ,ଲାଙ୍ଗୁଡ ମୋଡିଲେ ଖର ଅଛି କି ନାହିଁ । ଆଉ ଏ ଛଡାଟି ସଂପୂର୍ଣ୍ଣ କଲା ।

ଲାଞ୍ଜର ବାଳ ତଳେ ଘୁଷୁରୁଛି । ଲକ୍ଷ୍ମୀଙ୍କର ପଡିବ । ଏମିତି ସବୁ ଲକ୍ଷଣ ଦେଖିସାରି ତା ବେକରେ ପଘା ଲଗାଇ ନେଲାବେଳେ, ସେ ଏମିତି ପଛକୁ ଟାଣିହେବ ଯେ ଜଣେ ଆଗରୁ ପଘା ଭିଡୁଥିଲେ, ଆଉ ଜଣେ ପଛରୁ ପେଲୁଥିବ । ଟିକିଏ ସୁବିଧା ପାଇଲେ, ରାସ୍ତାରେ ପଟା ପଟା ହେଇ ଗଡିବ । ଆଉ ଯେମିତି ପଘାରୁ ଖସିଗଲେ ଆସି, ମାଆ ଦେହକୁ ଚାଟି ଲାଙ୍ଗୁଡ ହଲେଇ , ମା କଡପଟେ ଲୁଚି ଯାଉଥିବ । ମା ବି ସେତିକି ଆନନ୍ଦରେ ପିଲାକୁ ଚାଟି ପକାଉଥିବ । କିନ୍ତୁ ସଙ୍ଗାତ ତ ମଣିଷ ପିଲା । ଅପସନ୍ଦର ଅସନ୍ତୋଷରେ ତାଙ୍କ ପିଞ୍ଜରା ଫଟାଇ ଦୀର୍ଘ ନିଃଶ୍ୱାସ ମାନ ବାହାରିଆସି, ତାଙ୍କ ବୋଉଙ୍କ ଦୀର୍ଘନିଃଶ୍ୱାସ ସାଥୀରେ ମିଶି ଯାଉଥାଏ । ସେଠି ଗୋରୁର ଆନନ୍ଦ ନଥାଏ, ମଣିଷ ର ଆଘାତ ।

ପୁଣି ସାନ ଆପଣଙ୍କର ଜୋଇଁ ଖୋଜା ଚାଲିଥାଏ । ପ୍ରାୟ ଛ'ମାସ ପରେ , ସେହି ଘଟକ ଆସି ପୁଣି ହାଜର । ମାଷ୍ଟ୍ରେ ଆଉ ବା କ'ଣ କହିବେ, କାଳେ ଆଉ କ'ଣ ପ୍ରସ୍ତାବ ଘରିକା ଥିବ ଭାବି ଯେମିତି ସାଧାରଣ ଭଦ୍ରାମି ଦେଖାଇବା କଥା ସେମିତି ପାନ, ଫାନ ଦେଇ ଚର୍ଚ୍ଚା କଲେ । ମଧ୍ୟସ୍ଥି ନିଜ ଆଡୁ ଆରମ୍ଭ କରି କହିଲା- ଆଜ୍ଞା ! ବିଭାଘରଟା କେବକୁ ତିଥି କଲେ ସୁବିଧା ହେବ ? ମାଷ୍ଟ୍ରେ ଟିକିଏ ବିବ୍ରତ ହୋଇ କହିଲେ - କାହାର ? କାଇଁ ଆପଣଙ୍କ ଝିଅର । ମାଷ୍ଟ୍ରେ କାବା ହୋଇ କହିଲେ-କେଉଁଠି ଜୋଇଁ, ଜୋଇଁ କାଇଁ । ମଧ୍ୟସ୍ଥି ହସି ହସି କହିଲା - ଆଜ୍ଞା ଭାଗ୍ୟରେ ଥିଲେ ଏମିତି ଜୋଇଁ ମିଳେ । ଜୋଇଁ ତ ମାଟ୍ରିକ୍ ପାଶ୍ କରି ମାଷ୍ଟ୍ର ଚାକିରୀଟିଏ କରିଛି । ପୁଣି ଗାନ୍ଧୀବାଦୀ ଯେ ଲାଜ ଭୟ କିଛି ନାହିଁ । ମା'କୁ ସଫା ସଫା କହିଦେଲା- ମୁଁ ତ ଗୋଟେ ଛ'ଫୁଟିଆ ମଣିଷ, ପୁଣି ଆଣ୍ଠୁ ଲୁଚା ଲୁଗା ପିନ୍ଧୁଛି । ଆଉ କ'ଣ ମୋରି ଆଣ୍ଠୁ ଢଚା ଝିଅଟେ ମୋ ପାଇଁ ବୋହୂ କରିବୁ ? ତାହାଲେ ଆଉ ଡେଙ୍ଗା ଝିଅ ଗୁଡାକ ଅଭିଆଡି ରହିଯିବେ । ସେଇଠୁ ମୋତେ ଆସି ନିଜେ କହିଲା- ବୋଉ ଛଡା ତ ମୋର ଆଉ ମୁରବୀ କେହି ନାହିଁ । ସିଏ ମାଇପି ଲୋକ, ଯାହା ଦେଖାଦେଖି କରିବାର ସରି ଯାଇଛି । ଆପଣ ଟିକେ ମାଷ୍ଟ୍ରଙ୍କୁ କହିବେ, ତାଙ୍କୁ ଯେଉଁ ଦିନ ବେଳ ହେବ, ଯଦି ସତ୍ୟବାଦୀ ମନ୍ଦିର ପାଖକୁ ଆସିବେ, ମୁଁ ଯାଇ ତାଙ୍କ ସଙ୍ଗେ କଥାବାର୍ତ୍ତା ହେବି । ଏଇ ରବିବାର ହେଲେ ଭଲ ହେବ । କେଜାଣି କାହିଁକି ସାନ ଆପଣେ ଏଇ ପଦକ କଥାରେ ଯାହା ପଡୁ ପଛେ ସେ ଜୋଇଁକି ମନେ ମନେ ବାଟ ବରୁଣ କରି ପକେଇଥିଲେ ।

ଜୋଇଁ କଥା ମୁତାବକ ମାଷ୍ଟ୍ରେ ଯାଇ ରବିବାର ଦିନ ଚ଼ାରିଟାବେଳକୁ ମନ୍ଦିର ପାଖେ ହାଜର । ସେତେବେଳକୁ ଶିବପ୍ରସାଦ ବାବୁ ଆଗରୁ ଆସି ସିଂହଦ୍ୱାରେ ହାଜିରା ପକେଇ ସାରିଲେଣି । ମଧ୍ୟସ୍ଥି ବି ସାଙ୍ଗରେ ଥାଆନ୍ତି । ଯେମିତି ମଧ୍ୟସ୍ଥି ଶ୍ୱଶୁରଙ୍କୁ ଚିହ୍ନେଇ ଦେଇଛି, ସାଙ୍ଗେ ସାଙ୍ଗେ ଆସି ଅଣ୍ଟାଯାଏଁ ଲଇଁ ସଂଭ୍ରମ ନମସ୍କାରଟିଏ ହୋଇ ମଧ୍ୟସ୍ଥିଙ୍କି କହିଲେ, ଆପଣ ଏଇଠି ବସନ୍ତୁ, ମୁଁ ଟିକେ ମହାଶୟଙ୍କ ସାଙ୍ଗେ କଥାବାର୍ତ୍ତା ହେଇ ଆସୁଛି କହି ଦୁହେଁ ଆସି ମନ୍ଦିର ପଛପଟେ ବଉଳ ବଣର ଗୋଟିଏ ସିମେଣ୍ଟ ପିଣ୍ଡିରେ ବସିଲେ ।

ଶ୍ୱଶୁର କହିଲେ-ଜାଣିଲ ଶିବ ପ୍ରସାଦ ମୁଁ ଏଇଠି ପାଶ୍ କରି ମାଇନର ପାଠପଢ଼ି ମାଷ୍ଟ୍ରଟିଏ ହୋଇଛି । ତୋଉଁ ବି କହିଲେ - ଆଜ୍ଞା ମୁଁ ଏଇଠି ପଢ଼ି ମାଟ୍ରିକ ପରୀକ୍ଷା ଦେଇ ଫାଷ୍ଟ ଡିଭିଜନରେ ପାଶ୍ କରିଥିଲି । ଇଏତ ପଞ୍ଚସଖାଙ୍କ ପବିତ୍ର ପୀଠ, ଏଇ ମାଟି ମାଡିଦେଲେ ମୂର୍ଖ ବି ପଣ୍ଡିତ ହେଇଯିବ ଯେ, କିନ୍ତୁ ଘରର ଆର୍ଥିକ ଅବସ୍ଥା ଲାଗି ମୋତେ ଚାକିରୀ କରିବାକୁ ପଡିଲା । କିଛି ସମୟ ସ୍କୁଲ କଥା ହେବାପରେ. ସାନ ଆପଣେ ଆରମ୍ଭ କଲେ- ମୁଁ ତ ଏମିତି ଗୋଟିଏ ଯୋଗ୍ୟ ପିଲା ଚାହୁଁଥିଲି । ମୋ କଥାତ ଜାଣିଥିବେ । ମାଷ୍ଟ୍ରିଆ ମୁଣ୍ଡ । କିଛି ସମୟ ଶିବବାବୁ ଗମ୍ଭୀର ରହିଗଲେ । ମାଷ୍ଟ୍ରଙ୍କ ମନଟା ସେତେବେଳକୁ କାହିଁରେ କ'ଣ ବିପଦ ମଣିଲାଣି । ତଥାପି ଯାହା ଯାହା କହିବେ ଦେବାପାଇଁ ମନେ ମନେ ଆଣ୍ଠ ବାନ୍ଧୁଥାନ୍ତି । ଶିବ ବାବୁ ଅତି ନମ୍ର ଭାବରେ କହିଲେ- ଜାଣନ୍ତି ତ ମୁଁ ଗରୀବ ପିଲା । ଦିନେ ଦିନେ ରେଳଭଡା ପାଖରେ ନଥିଲେ ମୁଁ ବଳଭଦ୍ର ପୁରରୁ ସତ୍ୟବାଦୀ ସ୍କୁଲକୁ ଚାଲି ଚାଲି ଆସିଛି । ସମୟ ବି ସୂର୍ଯ୍ୟ ଗତିକି ଦେଖି ସ୍ଥିର କରିଛି । ମୋର ସାଇକେଲ ଘଣ୍ଟା ବିନା କିଛି ଅସୁବିଧା ହେଇନି । ଯଦି ନିଜ ବାହୁ ବଳରେ ପାରିବି ଖଣ୍ଡିଏ ସାଇକେଲ ଆଉ ଗୋଟିଏ ଘଣ୍ଟା କିଣିବି । ଯଦି ଏତିକି ମୁଁ ନିଜେ ନକରି ପାରିବି , ତାହେଲେ ଆପଣ କେଉଁ ଭରସାରେ ଆପଣଙ୍କ ଝିଅକୁ ମୋ ହାତରେ ଦେବେ । ମୁଁ ମୋ ଜୀବନରେ ଗଣ୍ଡେ ଖାଇବାକୁ ଦେଇ ପାରିବି ତ ? ଆଉ ସଂସାର ଚଳାଇବା ତ ଛାଡନ୍ତୁ ।

ମୋର ଗୋଟିଏ ସର୍ତ୍ତ ଆପଣଙ୍କୁ ମାନିବାକୁ ହେବ । ଯଦି ଝିଅ ଦିଅନ୍ତି, ତେବେ ବିନା ଯୌତୁକରେ । ଏପରିକି ଝିଅର ପିନ୍ଧା ଶାଢ଼ୀ ଛଡା ଆଉ କିଛି ଦେବେନି । ମୁଁ ଶଗଡ ଗାଡିରେ ଯାଇ ଗାଁ ମୁଣ୍ଡରୁ ବରଯାତ୍ରୀଙ୍କ ସାଙ୍ଗେ ଚାଲି ଚାଲି ଯିବି । ଝିଅ ଧଳା ଖଦଡ ଶାଢ଼ୀ ପିନ୍ଧି ବେଦୀରେ ବସିବ । ଫେରିଲାବେଳେ ଆମେ ଦୁହେଁ ମୋ ଶଗଡ ଥିବ ସେଉଥିରେ ଆସିବୁ । ଆଉ ମୋ ସଙ୍ଗେ ମୋର ଦଶ ଜଣ ବରଯାତ୍ରୀ ଯିବେ । ଆଉ ଶେଷ କଥା, ଭୋଜି ନିରାମିଷ ଆଉ ଖିରୀପିଠା ବିହୀନ ହେବ । ଆପଣଙ୍କୁ ମୁଁ ଏଥିରେ ରାଜି ହେବାକୁ ବାଧ କରିବି । କାରଣ ଆପଣଙ୍କ ଗାଁ ପଞ୍ଚସଖାଙ୍କ ଉତ୍ପତ୍ତି ସ୍ଥଳ । ଗାନ୍ଧୀବାଦର କର୍ମ ପୀଠ । ଆପଣ ଯଦି ଏ କୁସଂସ୍କାରକୁ ନଘୁଞ୍ଚାଇବେ, ଆଉ ତାହାଲେ ଅନ୍ୟ ମାନେ ଶିଖିବେ କ'ଣ । ଆପଣ ଥରେ ସାହାସ କରନ୍ତୁନା । ବହୁ ଲୋକଙ୍କର ଉପକାର ହେବ । ହଁ ଆଉ ଗୋଟିଏ କଥା । ଏ ପଞ୍ଚସଖାଙ୍କର ପବିତ୍ର ପୀଠ । ଏଇଠି ମୁଁ ଆପଣଙ୍କ ଆଗରେ ଶପଥ କରୁଛି । ଆପଣ କନ୍ୟାଦାନ କରିବେ, ମୁଁ ଗ୍ରହଣ କରିବି । ଆପଣଙ୍କ କନ୍ୟାର କେବେ ହତାଦାର କରିବି ନାହିଁ । ଯାକୁଇ ଆପଣ ନିର୍ବନ୍ଧ ବୋଲି ଜାଣିବେ । ଆଉ ନିର୍ବନ୍ଧର ଦରକାର ନାହିଁ । ଏଇ କଥାରେ କ'ଣ ହେଲା କେଜାଣି, ସାନ ଆପଣେ ଭାବ ବିହ୍ୱଳ ସ୍ୱରରେ ତୁମର କୋଟି ପରମାୟୁ ହେଉ ବାପା କହି ତାଙ୍କ ମୁଣ୍ଡକୁ ଦୁଇଥର ଆଉଁସି ଦେଲେ । ଦୁହେଁ ନମସ୍କାର ଓ ଆଶୀର୍ବାଦର ଆଦାନ ପ୍ରଦାନ ପରେ ଯିଏ ଯାହା ଗାଁକୁ ଗଲେ ।

ସେତେବେଳେ ମୋ ଭାବନାରେ, ସଙ୍ଗାତର ବରଟାକୁ ଏତେ ଉଚ୍ଚ ସ୍ଥାନରେ ବସାଇ ଦେଇଥିଲି ଯେ ଏତେବେଳାରେ ବି ଗୋଟିଏ ଗୋଟିଏ ଭାବନା ତାହା ସାଙ୍ଗେ ଫେଣ୍ଟା ଫେଣ୍ଟି ହୋଇଯାଏ । ମୋର ଗୋଟିଏ ଅତି ଆତ୍ମୀୟର ଝିଅ ଇଂଜିନିୟରିଂ ପରେ ଏମ୍.ବିଏ କରିଛି, ଅତି ଗୋରା ନୁହଁ , ଗହମ ରଙ୍ଗ । ଉଚ୍ଚ ବି ଟିକିଏ କମ୍ । କିନ୍ତୁ ବିଚକ୍ଷଣ ବୁଦ୍ଧିମତୀ । ତା ବିବାହ ପ୍ରସଙ୍ଗ ସ୍ଥିର ହେଲାବେଳେ ତା ନନା ବୋଉ ମୋ ପରାମର୍ଶ ଲୋଡିଥିଲେ । ମୁଁ ତାଙ୍କୁ କହିଲି- ତୁମ ଝିଅ ବଡ ହୋଇ ଯାଇଛି, ଏତେ ପଢ଼ି ଯୋଗ୍ୟା ହୋଇଛି, ଆଜିଯାଏଁ ଚପଳମତି ବାଳିକା ଭଳିଆ କାହାକୁ ପ୍ରେମ କରିନି । ତେଣୁ ସିଏ ଭାରି ବୁଦ୍ଧିମତୀ । ତାର ରୂପ ଅପେକ୍ଷା ଗୁଣ ଅଧିକ । ବୁଦ୍ଧି ବିଦ୍ୟା ବି ଅଧିକ । ମୁଁ ଭାବୁଛି ତା ପାଇଁ ବର ବାଛିବାକୁ ତାକୁହିଁ ଅନୁମତି ଦିଅ । ଯିଏ ତାର ଗୁଣ ଭଲ ଭାବରେ ଜାଣିଥିବ, ସେତେବେଳକୁ ତା ପାଇଁ ଗୋଟିଏ ଯୋଡିଏ ପ୍ରସ୍ତାବ ବି ପୁଅ ପଟରୁ ଆସିଥିଲା । ସେମାନଙ୍କ ପକ୍ଷରୁ ଝିଅ ଦେଖି ଆସିବାର ବି ସ୍ଥିର ହୋଇଥିଲା । ସେ ଝିଅକିନ୍ତୁ ସଫା ସଫା ମନା କରିଦେଲା ଯେ ମୋତେ ବୋହୂ ଦେଖି ପସନ୍ଦ ଅପସନ୍ଦ ପାଇଁ, ମୁଁ ଇଣ୍ଟରଭିୟୁ ଜମା ଦେବିନି । ସେଇଟା ମୋ ବ୍ୟକ୍ତିତ୍ୱକୁ ବାଧିବ । ତା ବୋଉ ତାକୁ କହିଥିଲା, ତୁ ତ ପୁଣି ତୋ ଚାକିରୀ ପାଇଁ ଇଣ୍ଟରଭ୍ୟୁ ଦେଉଛୁ ? ସେତେବେଳେ କ'ଣ ତୋ ବ୍ୟକ୍ତିତ୍ୱକୁ ଘରେ ଥୋଇ ଦେଇ ଯାଉଛୁ । ସେଥିରେ ଅପସନ୍ଦ ହେଲେ କ'ଣ କରୁଛୁ ? ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲା- ସେଥିରେ ନା ପସନ୍ଦ ହେଲେ, ମୁଁ ପ୍ରାଣ ପଣେ ଚେଷ୍ଟା କରି ଆରଥରକୁ ନିଶ୍ଚେ ଭଲ କରୁଛି । କିନ୍ତୁ ଏଠି ଅପସନ୍ଦ ହେଲେ କ'ଣ କରିବି ? ତୁ ଦେଇଥିବା ରୂପକୁ କମାର ଶାଳ ନେଇ ପିଟେଇ ଆଣିବି ନା ଧୋବା ଘରେ ପକେଇ ସଫା କରିବି । ତା ବୋଉ ତା କଥା ଶୁଣି ମୋତେ କହିଥିଲା ନାଇଁଲୋ ତୁ ଯାହା କହିଥିଲୁ ଠିକ୍ କଥା । ଝିଅ ଟିକିଏ ଗେଡା ବୋଲି ମୋତେ ଏମିତି ମାଡଟେ ଦେଲାଯେ ମୋ ମନ ମାନିଗଲା ।

ମୋ ମନେ ପଡିଗଲା, ସେତେବେଳ ଆଉ ଏତେବେଳ । ମୋ ସଙ୍ଗାତଟା ଟିକିଏ ଡେଙ୍ଗାବୋଲି କି ଅପମାନିତ ନ ହୋଇଛନ୍ତି । ତାଙ୍କ ନନା ବି କମ୍ କଲବଲ ହୋଇନାହାନ୍ତି । ତାଙ୍କର ସେ ଜ୍ୱାଇଁଟି ଏଡେ ଉଦାର ହୋଇନଥିଲେ,ସାନ ଆପଣଙ୍କ ଅବସ୍ଥା କହିଲେ ସରି ନଥାନ୍ତା । ସାନ ଆପଣେ ଗାଁକୁ ଆସିଲା ପରେ,ତାହା ଗୋଟିଏ ଚର୍ଚ୍ଚାର ବିଷୟ ହୋଇଗଲା । ଯାହାହେଉ କର୍ମକୁ ଜାଣି ଫଳ । ମୋ ସଙ୍ଗାତ ଖାଲି ସୁନ୍ଦରୀ ନୁହଁ । ଅତି ସୁନ୍ଦରୀ ସଙ୍ଗାତ ଭାଗ୍ୟକୁ ଅତି ଗୁଣବାନ ସୁପୁରୁଷ ଚେହେରାର ଗୋଟିଏ ଛ'ଫୁଟିଆ ବର ଜୁଟିଗଲା । ସେତ ଥିଲେ ଅତ୍ୟନ୍ତ ଆଦର୍ଶବାଦୀ । ସତକୁ ସତ ବର ଖଣ୍ଡିଏ ଖଦଡ ଧୋତି ପିନ୍ଧି,ଚାଦର ଖଣ୍ଡିଏ କାନ୍ଧରେପକାଇ ଚାଲି ଚାଲି ଆସି ବେଦୀରେ ବସିଲେ । ଆଉ ସଙ୍ଗାତ ବି ସେମିତି ଶାଗୁଆ ଚଉଡା ଧଡିର ଖଣ୍ଡିଏ ଧଳା ଖଦଡ ଶାଢ଼ୀ ପିନ୍ଧି ବେଦୀରେ ବସିଲେ । ଶ୍ୱଶୁର ଘରୁ କିଛି ନେଲେ ନାହିଁତ, ଭୋଜି ବି ତାଙ୍କ କଥା ଅନୁସାରେ ହୋଇଥିଲା । ବାହୁଡା ବରକନ୍ୟା ଫେରି ଯାଇଥିଲେ ସେହି ଶଗଡ ଗାଡିରେ । ସେ ଥିଲେ

ସଂପୂର୍ଣ୍ଣ ଗାନ୍ଧୀ ଆଦର୍ଶବାଦୀ । ଆଉ ସଙ୍ଗାତକୁ ଦେଇଥିଲେ ଅଖଣ୍ଡ ସ୍ୱାଧୀନତା । ତାଙ୍କର ଯେତେବେଳେ ଇଚ୍ଛା ହୁଏ, ସେ ବାପ ଘରକୁ ଆସନ୍ତି । ଯେଉଁ ଦିନ ଇଚ୍ଛାହୁଏ, ଶାଶୁ ଘରକୁ ଫେରି ଯାଆନ୍ତି । ସଙ୍ଗାତ ପ୍ରାୟ କିଛି ପରବ ପୂନିଅଁ ନଥିଲେ, ଆଉ ବେଶୀ ଆସନ୍ତିନି । ସାନ ଆପଣେ ବି ଗୋଟିଏ ନିଷ୍ଠାପର ନିମ୍ନ ପ୍ରାଥମିକ ଶିକ୍ଷକ । ତାଙ୍କ ମନ ଜାଣି ଫଳ । ପ୍ରଥମରୁ ଟିକିଏ ଅଡୁଆ ଅଡୁଆ ଲାଗୁଥିଲେ ବି ସାନ ଆପଣେ କହନ୍ତି, ଏମିତି ଦି ଅଣ୍ଡା ଝିଅ ବିଭା କଲେ ବି ବାପକୁ ବାଧିବନି । ସଙ୍ଗାତର ପ୍ରଥମେ ଝିଅ । ଶେଷରେ ଗୋଟିଏ ପୁଅ ହୋଇଥିଲା । ସଙ୍ଗାତ ଯେମିତି ବେଳକୁ ବେଳ, ସେଇ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇଥିଲେ । ପାଣି କାଚ ଖଦଡ ଶାଢ଼ୀ ଛଡା ଆଉ କୌଣସି ଭୋଗ ବିଳାସରେ ମନ ବଳେଇଲେନି । ଶାଶୁଙ୍କର ବୋହୂ ନହେଇ ଝିଅ ସ୍ୱାମୀଙ୍କର ଅର୍ଦ୍ଧାଙ୍ଗିନୀ ହୋଇ ତାଙ୍କ ଗୁଣର ଜ୍ୟୋତି ଦିନକୁ ଦିନ ଝଟକିଲା ।

ସବୁ ସାଙ୍ଗମାନଙ୍କ ଭିତରେ , ତାଙ୍କର ଥିଲା ଗୋଟିଏ ଆଦର୍ଶ ସଂସାର । ପ୍ରଥମେ ଚାରୋଟି ଝିଅ ହେଲାବେଳେ, କେତେବେଳେ ବି ସ୍ୱାମୀ ସ୍ତ୍ରୀଙ୍କ ମନରେ ପୁଅ ପାଇଁ ଅସନ୍ତୋଷ କି ଝିଅଙ୍କ ପାଇଁ ଗ୍ଲାନୀ ନଥିଲା । ଖଞ୍ଜି ଖଞ୍ଜି ବାପ ଝିଅ ମାନଙ୍କ ନାଁ ରଖିଥିଲେ- ପ୍ରଭାତ-ନଳିନୀ, ଦୁର୍ଗେଶ-ନନ୍ଦିନୀ, ରାଜ-ତରଙ୍ଗିଣୀ,କ୍ଷିରୋଦ-ବାସିନୀ । ସେ ବେଳେ ଏ ନାଁ ଗୁଡିକ ଗାଁ ଗହଳିରେ ଲୋକଙ୍କ ମନକୁ ଭାରି ଘେନୁଥିଲା । ଆଉ ଶେଷରେ ଏକମାତ୍ର ପୁଅ ହୋଇଥିଲା, ତା ନାଁ ରଖିଥିଲେ ଆଦିତ୍ୟଶଂକର । ଝିଅ ଗୁଡିକ ଭଲ ଭଲ ଯାଗାରେ ବିଭା ଦେଇଥିଲେ । ସ୍ୱାମୀ ଅବସରପ୍ରାପ୍ତ । ପୁଅଟି ଗୋଟିଏ ଭଲ ଚାକିରୀ କରିଥିଲା । ଦିନେ ତାଙ୍କ ଭାଇ କାହ୍ନୁ ସଙ୍ଗେ ମୋର ଦେଖାହେଲା । ସେ ମୋତେ କହିଲା, ନାନୀ ଜାଣିଛ ! ମଣି ନାନୀ ଚାଲିଗଲା । ମୁଁ ଚମକି ଉଠି ପଚାରିଲି- କିରେ କ'ଣ ହେଇଥିଲା ? ସେ କହିଲା ଖା'ପିଅ ସାରି, ଖରାବେଳେ ବସି ଟିଭି ଦେଖୁ ଦେଖୁ ସେଇଠି ଶୋଇପଡିଲା । ଭିଣେଇ ଆସି ଉଠେଇଲା ବେଳକୁ ଆଉ ଶୁଣୁନି । କିନ୍ତୁ ପ୍ରାଣ ଥିଲା ଟ୍ୟାକ୍‌ସି ଖଣ୍ଡେ ଡାକି ପୁ ରୀ ନବା ବାଟରେ ସେଇଠି ଚନ୍ଦନପୁର ଡାକ୍ତରଖାନାରେ ଦେଖାଇଲା ବେଳକୁ ଆଉ କିଛି ନାହିଁ । କିନ୍ତୁ ଆଗରୁ ଦିନେ ବି ତା ଦେହ କିଛି ଖରାପ ହେଇନଥିଲା । ସେ ଭିଣେଇ ବି ଆଉ ବେଶୀ ଦିନ ନୁହଁନ୍ତି । ମୋ' ଆଖିରୁ ଲୁହ ଗଡି ଆସିଲା । ତା ମୃତ୍ୟୁରେ ଆନନ୍ଦ ଅଛିରେ, ଯାହାର ସ୍ୱାମୀ ଝୁରେ ତା ମୃତ୍ୟୁରେ ଆନନ୍ଦ ଅଛିରେ । ଅହ୍ୟସୁଲକ୍ଷଣୀ ହୋଇ ଗାଁ ଦାଣ୍ଡରେ ଡ଼େଙ୍ଗୁରା ବଜେଇ ସ୍ୱାମୀ ହାତରୁ ଲିଆ କଉଡି ମୁଠିଏ ନେଇ ଚାରି ଜୋଇଁଙ୍କ କାନ୍ଧରେ ଚାଲିଗଲା, ପୁଣି ପୁଅ ମୁଖାଗ୍ନି ଦେଲା । ବୋହୂ ଛେରାପାଣି ଛିଞ୍ଚିଲା । ନାତି-ନାତୁଣୀଏ ଘିଅଦୀପ ଦେଖାଇଲେ । ଲିଆ କଉଡି ବୁଣି ବୁଣି ଆଖିର ଲୁହକୁ ଆଖିରେ ମାରି ଚାଲିଥିବେ ଆଗେ ଆଗେ ସ୍ୱାମୀ । ଏପରି ଭାଗ୍ୟ କାହାର ଥାଏ । ହଉ ଯାଆନ୍ତୁ ସବୁ ସାଙ୍ଗ ମାନଙ୍କ ଭିତରୁ ଅତି ଆଦରର ସଙ୍ଗାତ ମୋର ଆଉ ହଜିଲେନି ତ ମରିଗଲେ । ଶେଷରେ ଅଗ୍ନୀ ପାଉଁଶ କରି ଉଡାଇ ଦେଲା ସେହି ଅତି ସୁନ୍ଦରୀ ନାରୀ ଦେହଟିକୁ ।।



# ଅଭଡ଼ା

ସବୁଦିନ ପାଇଁ ହଜି ଯାଇଥିବା ସଙ୍ଗାତଟା ମନେ ପଡୁ ପଡୁ ତା ପାଖକୁ ଲାଗି ଠିଆ ହୋଇଯାଏ ତା ମାମୁଁ ଝିଅ ଭଉଣୀ ମୋ ଅଭଡ଼ା । ନାଁ ଟି ତାର ଚନ୍ଦ୍ରମା । ଡାକନ୍ତି ଚାନ୍ଦ ବୋଲି । ଦିନେ କାର୍ତ୍ତିକ ମାସର ଶିତୁଆ ଶିତୁଆ ଗୋଧୂଳି ବେଳ, ସଙ୍ଗାତ ଚାନ୍ଦକୁ ଧରି ଆମ ଘରକୁ ଆସିଲେ । ମତେ ତୁନି ତୁନି କହିଲେ- ଚାନ୍ଦ ତୁମ ସାଙ୍ଗେ କ'ଣ ବସିବ ବୋଲି ତାର ଭାରି ମନ । ସଙ୍ଗାତ ଲାଗି କି କ'ଣ ମୋତେ କାହିଁକି ଚାନ୍ଦଟା ଭାରି ସୁଖ ଲାଗେ । ମୁଁ ସାଙ୍ଗେ ସାଙ୍ଗେ ମାଉସୀ ହବିଷ ଘରକୁ ଦଉଡି ଯାଇ, କଣିକେ ଅଭଡ଼ା ମାହାର୍ଦ୍ଧ ଘିନି ଆସିଲି । ମୋର ବି ତା ସାଙ୍ଗରେ କ'ଣ ବସିବାର ପ୍ରବଳ ଇଛାଥିଲା । ସତେ ଯେମିତି (ଏ ମନ ପାଞ୍ଚୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା) । ବିହେଁ ଚିରାଚରିତ ଢ଼ଙ୍ଗରେ ଅଭଡ଼ା ନମସ୍କାର ହୋଇପଡିଲୁ । ସେହି ଅଭଡ଼ା ମନେ ପଡିବା ସାଙ୍ଗେ ସାଙ୍ଗେ ମନେ ପଡିଯାଏ ସଙ୍ଗାତଠାରୁ ଶୁଣିଥିବା, ତା ଅଭିଶପ୍ତ ଶୈଶବ । ତାକୁ ମାତ୍ର ଚାରିବର୍ଷ ବୟସ ବେଳେ, ତା ବୋଉ ମରିଗଲା । ସେତେବେଳେ ନାଁ ସବୁ ଜାଣିପାରୁଛି , କି ଅତି ଅବୋଧ କିଛି ଜାଣୁନି, ଦୁଇ ଅବସ୍ଥାର ସନ୍ଧିସ୍ଥଳ । ତା ବୋଉର ହଠାତ୍ ଗୋଟିଏ ଦିନ କଲେରାରେ ପ୍ରାଣ ଛାଡିଗଲା । ଘରେ ଜୋର କାନ୍ଦ ବୋବାଳି ପଡିଲା ବେଳେ, ତାକୁ ତା ଦଦେଇ ପୁଅ ଭାଇ କାଖେଇ ନେଇ ଯାଇଥିଲା ଗାଁ ମୁଣ୍ଡ ଠାକୁରାଣୀଙ୍କ ଦେଉଳ ପାଖକୁ । ତାକୁ ମଣ୍ଡପରେ ବସେଇ ଗୁଡିଏ ବଉଳ ଫୁଲ ଗୋଟେଇ ତା ହାତରେ ଦେଇ କହିଲା, ଯାକୁ କଣ କରିବୁ କହିଲୁ, ସେ ଖନେଇ ଖନେଇ କହିଥିଲା- ବଉଳ ଫୁଲ ବୋଉକୁ ଦେବି । ବୋଉ ମୁନ୍ଦଲେ ପିନିବ । ସେହି କଥାରେ ତା ଭାଇ କାନ୍ଦି କାନ୍ଦି ତାକୁ କାନ୍ଧରେ ପକାଇ ବୁଲେଇ ବୁଲେଇ ସମସ୍ତେ ଶ୍ମଶାନକୁ ମୁର୍ଦ୍ଧାର ନେଇ ଗଲାପରେ ଘରକୁ ଆଣିଥିଲା । ସେ ଘରେ ନନା ବୋଉ କାହାକୁ ନଦେଖି ବହୁତ କାନ୍ଦିଥିଲା । ତା ନାନା ବି ଶ୍ମଶାନରୁ ଫେରୁ ଫେରୁ ବହୁତ ଡ଼େରି ହୋଇଗଲା । କାରଣ ତା ବୋଉର ସେତେବେଳେ ନ' ମାସ ଗର୍ଭଥିଲା । ଏପରି ଅବସ୍ଥାରେ ମରିଗଲେ, ଯାହାତ ଅଳତା ସିନ୍ଦୁର ନୂଆ କାଚ, ନୂଆ ଲୁଗା ପିନ୍ଧିବ, ଦାଣ୍ଡରେ ଅହ୍ୟ ଢ଼େଙ୍ଗୁରା ବଜେଇ ବଜେଇ ଡ଼ମଟିଏ ଚାଲିଥିବ । ତା ପଛରେ ଲିଆ କଉଡି ଆଉ ରେଜା ପଇସା ବୁଣି ବୁଣି ସ୍ୱାମୀ ଯିବ । (ସେହି କଉଡ଼ି କି ପଇସାରୁ ଗୋଟିଏ ସଧବା ସ୍ତ୍ରୀ ଲୋକମାନେ ଗୋଟେଇ ଆଣି ନିଜ କଜଳ ସିନ୍ଦୁର ଫରୁଆରେ ସାଇତି ରଖନ୍ତି) । ଆଉ ସବୁରି ପଛେ ପଛେ ଗୋଟିଏ ଧୋବା, କାନ୍ଧରେ କୁରାଢ଼ୀ ଟିଏ ପକାଇ ଯାଉଥିବ । ତା ସାଙ୍ଗରେ ଖୁରଟିଏ ଚାଲିଥିବ ବାରିକଟିଏ । ଆଉ ପୁଅ ପୁତୁରା କି

ଦିଅର ମୁଖାଗ୍ନିର ନିଆଁ ହୁଳା ଧରି ଆଉ ବ୍ରାହ୍ମଣ ପଥ ଶ୍ରାଦ୍ଧ ଜିନିଷ ଧରି ଯାଇଥାନ୍ତି । କିନ୍ତୁ ଆଗ ମୁର୍ଦ୍ଦାରକୁ ଶୁଆଇ ଗାଧୁଆ ପାଧୁଆ କରି ସାରିଲେ, ବାରିକ ତା ସ୍ୱାମୀ ହାତରେ ଖୁର ଧରାଇ ପେଟ ଚିରିଦେବ । ତା ପରେ ଧୋବା କୁରାଢ଼ୀରେ ଚିରି ପିଲାଟିକୁ କାଢ଼ି ଅନ୍ୟ ଯାଗାରେ ପୋତିବା ପରେ ମା'କୁ ପୋଡିବେ । କାରଣ ସ୍ୱାମୀ ଯେଉଁ ଭାର ସ୍ତ୍ରୀ ଉପରେ ଦେଇଥିଲା, ତାକୁ ସେ ନିଜ ହାତରେ ମୁକ୍ତ କରି ଦେବାର ଥିଲା ସେତେବେଳର ବିଧାନ ।

ସେତକ କାମ ସାରି ନନା ଘରକୁ ଆସିଲା ବେଳକୁ ବହୁତ ଡ଼େରି ହୋଇଯାଇଥାଏ । ସାନ ଭାଇଟି ସିନା ଶୋଇ ପଡିଥାଏ,ଚାନ୍ଦ କିନ୍ତୁ ଆଖି ମିଟି ମିଟି କରି ନନା ବୋଉଙ୍କ ଆସିବା ବାଟକୁ ଚାହିଁବସିଥାଏ । କାରଣ ତାଙ୍କ ତିନି ପୁରୁଷରେ ଝିଅ ନଥିଲା ବୋଲି ନନା , ବୋଉ, ଦଦେଇ, ଦେଠେଇ ତାକୁ ବହୁତ ଆଦର କରୁଥିଲେ । ପୂର୍ଣ୍ଣମୀରେ ଜନ୍ମ ହୋଇଥିଲା ବୋଲି ନାଁ ଦେଇଥିଲେ ଚନ୍ଦ୍ରମା । ଯାହା କହନ୍ତି ରୂପା ଶାମୁକା ପାଟିରେ ଧରି ଝିଅ ଜନ୍ମ ହୋଇଥିଲା । ନନା ଶ୍ମଶାନରୁ ଫେରି ଗାଧୋଇ ପାଧୋଇ ଲୁଗା ପାଲଟି, ଝିଅଟିକୁ କୋଡରେ ଜାକି ଧରି ବହୁତ କାନ୍ଦିଲେ । ନନାଙ୍କ କାନ୍ଦ ଦେଖି ଝିଅ କାନ୍ଦି କାନ୍ଦି କହିଲା- ବୋଉ ପଲା ତୁମ ସାଙ୍ଗରେ ଯାଇଥିଲା, କୁଆଡେ ଗଲା । ନନା ସେମିତି କାନ୍ଦି କାନ୍ଦି କହିଲେ- ନାହିଁଲୋ ଧନ ତୋ ବୋଉକୁ ଏଇ ବଡ ପୋଖରୀ ହୁଡାରେ ଛାଡି ଦେଇ ଆସିଲି । ଆଉ ତା ସାଙ୍ଗରେ ତୋର ଗୋଟିଏ ଟିକି କୁନି ଭାଇଟିଏ ତୋ ବୋଉକୁ ଦେଇ ଆସିଲି । କହି ଭାରି ଜୋରରେ କାନ୍ଦି ଉଠିଲେ । ନନାଙ୍କ ବିକଳ କାନ୍ଦ ଦେଖି ଝିଅଟି ନୀରବରେ ନନାଙ୍କ କୋଳରୁ ଉଠିଯାଇ , ମୁହଁ ମାଡି ଗୋଟିଏ କୋଣରେ ଶୋଇ ପଡିଲା । ସେଇ ଦିନଠୁ ଝିଅଟା ଭାରି ମନମରା ହୋଇଗଲା । ନନା ବି ସବୁବେଳେ ଅନ୍ୟ ମନସ୍କ ରହିଲେ । ଦିନ ଯାକ ଏପଟ ସେପଟ ହୋଇ କେତେବେଳେ ଗଣ୍ଡେ ଖାଇ ଦେଇ ଯାଇ ରାତିକି ଯାହା ଶୋଇବାକୁ ଆସନ୍ତି । ଆଗରୁ ସଙ୍ଗାତଙ୍କ ଦି ମାମୁଁ ଭିନେ ହୋଇ ଯାଇଥିଲେ । କିନ୍ତୁ ଅଗଣାରେ ବାଡ ପଡିନଥିଲା । ଭଲ ଥିଲାବାଲା ଘର । ପୁଣି ଦି ଭାଇ ଏକାଠି ଚଳିଲେ । ବଡ ମାମୁଁଙ୍କର ଗୋଟିଏ ବୋଲି ପୁଅ । ଦେଠେଇ ଟିକିଏ ଦୁଷ୍ଟ ପ୍ରକୃତିର ହେଲେ ବି ଚାନ୍ଦଟି ଧୀରେ ଧୀରେ ଦେଠେଇ ଆଡକୁ ଆଉଜି ଗଲା । ଦିନେ ଉଦୁ ଦୁଆ ଖରା ବେଳେ ଚାନ୍ଦର କ'ଣ ମନ ହେଲା କେଜାଣି, ଗୋଟିଏ ଗୋଟିଏ ଏକୁଟିଆରେ ଯାଇ ପୋଖରୀ କୂଳ ପଥର ପାହାଞ୍ଚ ଉପରେ, ଗୋଡ ଲମ୍ବେଇ ବସି ବଡ ପାଟିରେ ବୋଉଲୋ, ବୋଉଲୋ, ବୋଲି ଡାକ ପକେଇଲା । କିଛି ସମୟ ଡାକିଲା ପରେ ପୋଖରୀ ହୁଡାରେ ଯାଇ ମଶାଣିର ଗୋଟିଏ ଜୁଇ ଗାତରୁ ପାଉଁଶ ଆଡେଇ ବୋଉ ବୋଉ ବୋଲି ଡାକ ପକାଇଥାଏ ।

ପୋଖରୀଟା ତ ଗାଁ ଶେଷ ମୁଣ୍ଡରେ , ପାଟି ଶୁଣି ଗାଁ ମୁଣ୍ଡ ଘର ରାଧି ମା ପୋଖରୀ କୂଳେ କିଏ ଘଡିଏ ହେଲା ବୋଉ ବୋଉ କଅଁଳିଆ ପାଟିରେ ବିକଳ ହୋଇ ଡାକୁଛି

ବୋଲି ପୋଖରୀ କୂଳକୁ ଯାଇ ମଶାଣି ଆଡୁ ପାଟି ବାରି ସେପଟକୁ ଯାଇ ଚାହିଁଲା ବେଳକୁ ମୁହଁରେ କଳା ପାଉଁଶ ବୋଳା ହୋଇ ଏ ଜୁଇ ଗାତରୁ ସେଇ ଜୁଇ ଗାତରୁ ପାଉଁଶ ଆଡେଇବାରେ ଲାଗିଛି ଛୋଟିଆ ପିଲାଟି । ରାଧି ମା' ଏମିତି ଦୃଶ୍ୟ ଦେଖି ଆବା କାବା ହୋଇଗଲେ ! ନିଜେ ଭେଁ ଭେଁ କାନ୍ଦି ଛାତିରେ ଜୋରରେ ହାତଟିକୁ ବାଡେଇଦେଇ ମୁଁ ମରି ଯାଏଁଲୋ ! ମୋ ଧନ ଚାନ୍ଦ କି ? କହି ସେଇଠୁ ଚାନ୍ଦକୁ କାଖେଇ ପକାଇ ଆସି ଚାନ୍ଦ ଘରେ ହାଜର । ସେତେବେଳ ଯାଏଁ ବି ଚାନ୍ଦର ଏକା ଜିଦ୍ ମୁଁ ବୋଉ ପାଖୁ ଯିବି । ନନା କହୁଥିଲେ ମୋ ବୋଉ କୁନି ଭାଇ ସେଇଠି ଅଛନ୍ତି ।

ଘରୁ ଚାନ୍ଦର ଦେଦେଇ ଆସି ଚାନ୍ଦକୁ କାଖେଇ ପକାଇ ନିଜ କାନିରେ ମୁହଁ ହାତ ଝାଡି ପକାଇଲେ । ରାଧି ମା ଚାନ୍ଦ ଦେଦେଇ ଉପରେ ବୁହେ ବିରକ୍ତ ହୋଇ କହିଲା- ମା ମରିବାର ବର୍ଷୁଟେ ହୋଇନି, ପିଲା ଉପରୁ ମା'ର ଲୋଭ ତୁଟି ନଥିବ, ତୁମେ ପିଲାକୁ ଟିକିଏ ନଜର ରଖୁନ ? ନାହିଁ ନାହିଁ ପୋଖରୀରେ ପଡିଯାଇଥାନ୍ତା ? କି ବିଲୁଆ ଗଧିଆଙ୍କ ହାବୁଡେ ପଡିଯାଇଥାନ୍ତା ? ସହଜେ ମା' ଚିରା ଡେରା ହୋଇ ଚିରିଗୁଣି ହୋଇଥିବ । ଉଦୁ ଉଦିଆ ଦିହି ପହରେ, ମଡା ମଶାଣୀରେ ବିକଳ ହୋଇ ଗଡୁଛି ! ତାର ଆଗ କଣ ହଉଛି ବୁଝ । ତା ଦଦେଇକି କହି, କୋଉଠୁ ଆଗ ଝଡା ଝଡି କରି ଆଣ, ଗୁଣିଆକୁ କହି ଗୋଟେ ଡେଉଁରିଆ କି ତାବିଜ କରି ପିନ୍ଧାଅ । ମା'ଟାକୁ ଏତେ ଝୁରୁଛି । କେତେବେଳେ କୋଉ କଥା ଥାଏ ।

ସେହି କାଳରୁ ଗୋଟେ କଳା ସୁତାରେ ଗୋଟେ ତମ୍ବା ଡେଉଁରିଆ ତା ବାଁ ହାତରେ ଥାଏ । ସେହି ଡେଉଁରିଆ ବୋଧେ ତାକୁ ମଣିଷରୁ ପଶୁ କରିଦେଇଥିଲା । ମଣିଷ ପିଲାଟା କେଡେ ନିରାଶ୍ରୟ ଜନ୍ମ ହେଉ ହଉ ରଡିକରି ମାଗେ ମା'ର ସାହାଯ୍ୟ । କିନ୍ତୁ ପଶୁ ଜନ୍ମରୁ ନିଜେ ନିଜେ ଠିଆ ହୋଇ ମା' ପହ୍ନାରେ ମୁହଁ ମାରି ତା'ର ଖାଦ୍ୟ ସେ ନିଜେ ସଂଗ୍ରହ କରିନିଏ । ସେହି ପରି ଆସ୍ତେ ଆସ୍ତେ ନିଜକୁ ନିଜେ ବଞ୍ଚାଇବାକୁ ଚାନ୍ଦ ବହୁ ଉପାୟ ପାଞ୍ଚି ନେଇଥିଲା । ନନା ଦଦେଇ, ଏକାଠି ହୋଇଗଲା ପରେ, ନନା ଯେତିକି କର ଛଡା ଦେଉଥିଲେ ଦଦେଇ ସେତିକି ଦକ୍ଷତାର ସହିତ କାମ ଚଳାଇ ନେଉଥିଲେ । ଚାନ୍ଦ ସେତିକି ବଡ ହୋଇ ଯାଉଥିଲା । ଦଦେଇ ପୁଅ ଭାଇତ ପାଠ ପଢ଼ିବାକୁ କଟକ ଗଲାଭାରି, ଚାନ୍ଦକୁ ଦଦେଇ ସେତିକି ଆପଣେଇ ନେଇ ନିଜର ଛୋଟ ଛୋଟ କାମରେ ଲଗାଇ ଦେଉଥିଲେ । ଖମାର ଘର କୋଠୀରୁ ଧାନ, କଢ଼ା ହେଇ ଲୋକମାନେ ମୂଲ ଦେବାକୁ ରଖାହେଲା ବେଳେ, ଚାନ୍ଦକୁ ଦଦେଇ ଜଗିବାକୁ ପଠେଇ ଦେଉଥିଲେ । ନଡିଆ ଶଗଡ ଆସି ଖମାର ଅଗଣାରେ କଢ଼ା ହୋଇ ଶଙ୍ଖା ମରାହେଲାବେଳେ, ଚାନ୍ଦ ଠିଆ ହୋଇ ଗଣି ଆସି ଦଦେଇଙ୍କି ଖବର ଦେଉଥିଲା । କିନ୍ତୁ ଚାନ୍ଦ ପାଖରେ କ'ଣ ଥିଲା କେଜାଣି, ଘରର ଲୋକ ବାକ ପ୍ରଜାମାନେ ଚାନ୍ଦକୁ ଭାରି କରୁଣା ଦୃଷ୍ଟିରେ ଦେଖୁଥିଲେ । ଯା' ଭିତରେ ଦଦେଇ ଲାଗିପଡି ଉଜୁଡା ଭାଇକି ସଜାଡିବା ପାଇଁ ଚାନ୍ଦଠାରୁ ତିନି ଚାରି ବର୍ଷ ବଡ

ଦେଖିବାକୁ ଡଉଲ ଡାଉଲ ବାର ବର୍ଷର ଅତି ଗରୀବ ଘରର ଝିଅଟିଏ ବିଭା କରାଇ ଦେଇଥିଲେ ।

ଚାନ୍ଦର ଦଦେଇ ଦେଠେଇଙ୍କର ସବୁବେଳେ ମନ ଅମେଳ । ଯାହା କହନ୍ତି, ୟାଙ୍କର ଚେଙ୍ଗ ରାଶିକି, ତାଙ୍କର ବେଙ୍ଗ ରାଶି । ଦଦେଇ ଦିନ କହିଲେ ଦେଠେଇ କହିବେ ରାତି । ଦଦେଇ ବେଶୀ ଭାଗ ବାହାରେ କାଟନ୍ତି । ଖମାର ଘରେ ତାଙ୍କ ବିଛଣା ପତ୍ର ଥାଏ । ଘରକୁ ଆସିଲେ, କେବଳ ଦାଣ୍ଡ ପିଣ୍ଡାରେ ବସି ମାମଲତିକାରି କରନ୍ତି । ଘର ଭିତରକୁ ଯାହା ଖାଇବାକୁ ଆସନ୍ତି । ଦେଠେଇ ଯେତେ ପରିପାଟୀ କରି ବାଢ଼ିଲେ ସୁଦ୍ଧା, ଭଲ ମନ୍ଦ କିଛି ନକହି, ମୁନ୍ଦେ ଘିଅ ଭାତରେ ଢ଼ାଳିଦେଇ, ଚାରି ଗୁଣ୍ଡାରେ ଖାଇଦେଇ ଚାଲିଯିବେ ସେଇ ପିଣ୍ଡାକୁ । ଦେଠେଇ ଖାଇବା ପାଖରେ ବସି ଯାତୁ ସାତୁ କଥା କହି, ମାଳେ ପାନ ଭାଙ୍ଗି ପାନ ନେଇଯାଅ କହିଲାବେଳକୁ, ଚାନ୍ଦ ହାତେ ପଠେଇ ଦେବ କହି ଦଦେଇ ସେଇ ପିଣ୍ଡାରେ । ଦଦେଇଙ୍କର ଚାନ୍ଦ ପ୍ରତି ଯେତିକି ଆଦର ବଢ଼ି ବଢ଼ି ଯାଉଥିଲା, ଦେଠେଇଙ୍କର ଚାନ୍ଦ ଉପରେ ସେତିକି ଆକ୍ରୋଶ ବଢ଼ୁଥିଲା । ପୁଣି ନନା ତ ଘର କି ପିଲା କାହାରି ଆଡ଼କୁ ଚାହୁଁ ନଥିଲେ । ଯେମିତି କନ୍ୟା ମାଇପିଟିଏ ଆସିଲା, ଦେଖିଲେ ଯେ ଭାଉଜ ତାକୁ ଭଲ ଦୃଷ୍ଟିରେ ଦେଖୁନି । ସହଜେ ତ ଦ୍ୱିତୀୟ ସ୍ତ୍ରୀ ପୁଣି ପିଲା ଲୋକ । ନନା ସବୁ କିଛି ଭୁଲି, ନୂଆ ବୋଉକୁ ଏକବାରେ ଚକ୍ର ଆଡୁଆଳ କରି ଠିଆହେଲେ । ସେହି ପିଲାଦିନୁ ତାକୁ ସାଙ୍ଗରେ ପୁରୀ ନେଇ ଚିକିତ୍ସା କରାଇବା, ଭଲ ଶାଢ଼ୀ ଗହଣା କିଣିଦେବା, ଭଲ ଜିନିଷ ଖୋଇବା, ଜାଣ ତାଙ୍କରି ସେବାରେ ଭଲ ମନ୍ଦର ସମୟ କଟାଇ ଦେଉଥିଲେ । କହନ୍ତି ତ - (ଅବଧାନେ, ଆଗ ମାଇପକୁ ଚଡ ଚାପଡ,ପଛ ମାଇପକୁ ସାବଧାନେ) ।

ଏଣେ ଦେଠେଇର ବର ଦେଖି ନପାରିଲାବେଳକୁ ଦିଅରର କନିଆ ମାଇପକୁ ଏତେ ଆଦର ଯତ୍ନ ଦେଖି ଦେଠେଇଁ ଖାଲି ଜଳିବାରେ ଲାଗିଥାଏ । ଶେଷକୁ ଚାନ୍ଦକୁ ହାତ ବାରିସୀ କରି ଯା ଦିଅରଙ୍କ ଉପରେ ଦାନ୍ତ ସାଧିବାରେ ଲାଗିଗଲା । ଚାନ୍ଦକୁ ମା'ଲୋ,ଧନଲୋ କରି , ଖାସେ କହିଲା, ଦେଖ୍ ତୋ ବୋଉ କୁଆଡେ ଗଲା, ଏଥିରୁ ଗୋଟେ ଛତର ଖାଇଆସି ସବୁ ଭୋଗ ଭାଗ୍ୟ କଲା । ତୋ ବୋଉର ସବୁ ଅଳଙ୍କାର ଭଙ୍ଗାହୋଇ ତା ପାଇଁ ନୂଆ ଅଳଙ୍କାର ଗଢ଼ା ହୋଇଛି । ତୋ ବୋଉ ଯେତେ ନୂଆ ଲୁଗା ସାଇତିଥିଲା ସବୁ ଇଏ ପିନ୍ଧୁଛି କହି ଟିକିଏ କିମ୍ଭୀର କାନ୍ଦଣା ଦେଖାଇ, ଆହା, ଅଭୋଗୀ ସବୁ ସାଇତିଦେଇ କୁଆଡେ ଗଲା । ତା ଝିଅ ସିନା ପିନ୍ଧିଥିଲେ ତା ଆତ୍ମା ଶାନ୍ତି ହୋଇଥାନ୍ତା । ଏଥିରୁ ଗୋଟେ ମାଗିଖାଇ ଆସି ସବୁ ଅଧିକାର କଲା । ଆହା ଲୋ, ତୋ ଭାଗ୍ୟ (ମଜା କସା ଦେଲା ପରକୁ, କୁଣ୍ଡା ପଥୁରୀ ଆଣିଲା ଘରକୁ) । ଦେଖୁଛୁ, ତୋ ନନା ତୋ ପାଇଁ କିଛି ଆଣୁନି । ଏହି ମେଞ୍ଚେଡି ଟୋକି ପାଇଁ ସବୁ ଆସୁଛି । ସେ ଯୋଉ କାନ ପେଣ୍ଡି ପିନ୍ଧିଛି, ସେ ତୋ ବୋଉର । ତୁ ତା କାନରୁ ଭିଡି କରି ଘିନି ଆସୁନୁ । ଦେଠେଇ ଧୀରେ ଧୀରେ ନିଜ ଭିତରର ବିଷତକ ଚାନ୍ଦ ଭିତରେ ଢ଼ାଳି ଢ଼ାଳି ତାକୁ ବିଷାକ୍ତ କରି ଦେବାରେ ଲାଗିଲା ।

ଚାନ୍ଦ ପ୍ରାୟ ଦେଠେଇ କଥା ଅନୁସାରେ, ବୋଉକୁ ସେମିତି ଦୁର୍ବ୍ୟବହାର କରିବାକୁ ଲାଗିଲା । ଚାନ୍ଦ ଯାଡେ ବୋଉକୁ ଯେତିକି କଳବଳ କଲା, ନନା ତେଣେ ଚାନ୍ଦ ଉପରେ ସେତିକି ବିରକ୍ତ ହେବାରେ ଲାଗିଲେ । ସହଜରେ ଦେଠେଇର ଗୋଟିଏ ଗୁଳିରେ ଦୁଇଟି ଶୀକାର ହୋଇଗଲା । ନନାଙ୍କ ଭିତରେ ଝିଅପାଇଁ ଯାହା ଟିକେ ସ୍ନେହ ଶ୍ରଦ୍ଧା ଥିଲା, ତା ବଦଳରେ ଆଉ ଜମା ମୁହଁକୁ ଚାହିଁଲେନି । ଦେଠେଇ ସିନା ଯା' ଦିଅରଙ୍କ ଉପରେ ଦାଉ ସାଧିବାକୁ ଚାନ୍ଦକୁ ମା ଧନ କରେ । ନହେଲେ ଚାନ୍ଦ ଆଉ ତା ଭାଇକୁ ଜମା ଦେଖି ସହି ପାରେନି । ଦଦେଇ ତ ମାମଲତକାର ଲୋକ । ସେ ବି ଘର ଭିତର କଥାରେ ଏତେ ନଜର ଦିଅନ୍ତିନି । କହିଛି ତ ଚାନ୍ଦ ଆପେ ଆପେ ବାଛୁରୀ ପରି ଠିଆ ହୋଇ ମା ଠାରୁ କ୍ଷୀର ଖିଆ ଶିଖିଗଲା । ଧାନ ନଡିଆ ଖମାର ଘରେ ରଖାରଖି ହେଲାବେଳେ, ସେହି ଲୋକମାନଙ୍କ ସାହାଯ୍ୟରେ ସାହି ପଡିଶା ଘରେ ଚାନ୍ଦ ପାଇଁ କିଛି ଧାନ ନଡିଆ ରଖାହୋଇ ଯାଇଥାଏ । ଗୁଡିଆ ଘରେ ଧାନ, ଦୋକାନରେ ନଡିଆ, ରଖାହୋଇଥାଏ । ସମସ୍ତେ ତାକୁ ଏଥିରେ ପୂର୍ଣ୍ଣ ମାତ୍ରାରେ ସାହାଯ୍ୟ କରନ୍ତି । ତାର ଯେତେବେଳେ ଜଳଖିଆ ଦରକାର କେଉଟ ଘରୁ ଚୁଡା , ଚୁଡାଭଜା; ଗୁଡିଆ ଘରୁ ମୁଢ଼ି, ଉଖୁଡା ଅଣ୍ଟିରେ ଧରି ସ୍କୁଲକୁ ଯାଏ । ଯାହା ଖଡି , କଲମ, କାଳି କି ଚିନି , ଗୁଡ଼ ଯେତେବେଳେ ଯାହା କିଛି ଦରକାର ହୁଏ, ଦୋକାନରୁ ନେଇଯାଏ । ଯଦି ଶୁଖୁଆ ନିକା ଆସିଲା, କି ମେଳଣ ହେରିକା ହେଲା,ତେବେ ସାହି ପଡିଶା ଭଲ ଦି ପଇସା ଯୋଗାଇ ଦିଅନ୍ତି । ଚାନ୍ଦ ଭାରି ଶୁଖୁଆ ପ୍ରିୟ । କେଉଟୁଣି ବି ଜାଣିଥାଏ । ବଡ ଶୁଖୁଆଟେ ଘରେ ପକେଇଦେଇ କହିବ, ଭଲ ପାଚିଲା ଇଲିଶି ଶୁଖୁଆ ଆଣିଛି । ଝୁଅ ସାଆନ୍ତାଣି ଖାଇବେ । ମୁଁ ପଛରେ ବଡ ସାଆନ୍ତଙ୍କ ପାଖରୁ ପଇସା ନେଇଯିବି । ସେଥିରେ ବୋଉ ଦେଠେଇ ବି ଆନନ୍ଦ । ଦଦେଇ ଯାର ବିନ୍ଦୁ ବିସର୍ଗ ଜାଣନ୍ତିନି । କିନ୍ତୁ ଅସଲରେ ଏ ସବୁ ଚାନ୍ଦର ନିର୍ଦ୍ଦେଶରେ ହୁଏ । ଚାନ୍ଦ କେଉଟୁଣିକୁ ଯାହା ଘରୁ କହିବ ସେ ତାଙ୍କରି ଘରୁ ଧାନ ନେଇଯାଏ ।

ଚାନ୍ଦ ବି ନିଜ ସାଙ୍ଗେ ଭାଇଟିକି ଭିଡି ଭିଡି ମଣିଷ କରିବା ଚେଷ୍ଟା ଚଳାଇଥାଏ । ନିଜ ସାଙ୍ଗରେ ଭିଡି ଭିଡି ସ୍କୁଲକୁ ନିଏ । ନିଜେ ରାତିରେ ଭାଇକି କୋଡରେ ଜାକି ଶୁଏ । ବେଳେବେଳେ ଚାନ୍ଦକୁ ଦିଶେ, ବୋଉ ଜଳାବାଟେ ଭାଇକି ଚାହିଁ ଆଖି ମାରୁଛି । ସେ କଳ ବଲ କରି ଭାଇଟିକୁ କୋଡକୁ ଆଉଟିକିଏ ନିବିଡ ଭାବରେ ଜାକି ଆଣେ, ପକେଇଥିବା କମଳ ଖଣ୍ଡିକରେ ଦୁହିଁଙ୍କ ମୁହଁ ଘୋଡେଇ ଦେଇ ଝାଳ ନାଳ ହୋଇ ଶୋଇପଡନ୍ତି । ତହିଁ ଆରଦିନ ବୋଉ କି ଦେଠେଇ କାହାଘରେ ଟିକିଏ ଶୋଇବାକୁ ଅନୁରୋଧ କଲେ ,ଦୁହେଁ ନାସ୍ତିବାଣୀ ଶୁଣେଇ ଦିଅନ୍ତି । କିଏ କହେ ନନା ରାଗିବେ ତ କିଏ କହେ ତୋ ମୁଣ୍ଡରଅଛଜରା ଉକୁଣି କାଛ ବାଡ ମାଡିଯିବେ । ଭାଇର ଦେହ ଖରାପ ହୋଇ ରାତିରେ ଝାଡା ବାନ୍ତି ହେଲେ,ଚାନ୍ଦ ସେ କମଳ ଲୁଗା ନେଇ ଗଡିଆରେ ନାକେଦମ ହୋଇ ଧୋଇ କରି ଆଣେ । ଭାଇକି ବି ନେଇ ସେହି ଗଡିଆରେ ଧୁଆ ଧୋଇ କରି ଆଣିବ । କେଜାଣି

କ'ଣ ଭାବି ଗଡିଆ ଆରପଟ ମଶାଣି କି ଚାହିଁ ଆଖିରୁ ଦି' ଧାର ଲୁହ ଗଡାଇ ଦେଇ ମନ ବୁଝାଇଦିଏ । ଭାଇ ବେଶି ହଇରାଣ କଲାବେଳେ ଯଦି ଚାପୁଡେ କି ବିଧେ ମାରିଦେଲେ, ଯଦି ତା କାନ୍ଦ ନନାଙ୍କ କାନରେ ପଡେ ତେବେ ଚାନ୍ଦ ଉପରେ ବୁହେ ବର୍ଷା ହୋଇଯାଏ । ଚାନ୍ଦ ଜାଣିପାରେ ତାକୁ ଗାଳିମନ୍ଦ ହେଲେ ବୋଉ ଭାରି ଉଲ୍ଲସିତ ହୁଏ । କାରଣ ବୋଉ ଆଉ ଚାନ୍ଦ କେହି କାହାକୁ ଦେଖି ପାରନ୍ତିନି । ଚାନ୍ଦର ମନେପଡେ ନନାଙ୍କ ବିଭାଘର ପୂର୍ବରୁ ସମସ୍ତେ କହୁଥିଲେ, ତିରିଶ ବତିଶି ବର୍ଷର ଟୋକାଟେ ଯଦି ବିଭା ନହେବ, ତା ମାଆ ଛେଉଣ୍ଡ ପିଲା ଦି' ଟାକୁ କିଏ ଦେଖିବ । ନନା ବି' ବିଭା ହେବା ପରେ ଏଇ କଥା କହିବାର ଚାନ୍ଦ ଶୁଣିଛି ।

ଚାନ୍ଦ ଯେତେବେଳେ ବସି ତା ପିଲାଦିନ କଥା କହେ,ପ୍ରାୟ ଏଇ ପଦକ କହେ- ଯିଏ ଆଉଥରେ ବିଭା ହେବ,ତାର ଯଦି ପିଲାଥିବେ, ତାହାଲେ ତାଙ୍କୁ ଆଗ ଟିକେ ଟିକେ ବିଷ ଦେଇ ମାରିଦେବା ଭଲ ।

ଚାନ୍ଦ ତ' ଅଧିକାଂଶ ବେଳେ ତା ପିଇସୀ ଝିଅ ଭଉଣୀ ସାଙ୍ଗେ ଆମ ଗାଁକୁ ଆସେ । ବିଶେଷ କରି ଆମ ଘରେ ଖେଳା ଖେଳି କରେ । ମୋର ଏତେ କର୍ମ ଚଞ୍ଚଳ ବୋଉଟା, ବେଳେ ବେଳେ ଚାନ୍ଦ ପାଖରେ ବସି ତା କଥା ଶୁଣିଲାବେଳେ, ଆଖି ବି ପୋଛି ପକାଏ । ମୋତେ ବି ତା'ର ଦିନ ଦିନକର ଘଟଣା ଶୁଣି ଏକଦମ ଆଶ୍ଚର୍ଯ୍ୟ ଲାଗେ । ଗୋଟେ ଛୋଟ ପିଲା ଏମିତି କରିପାରିବା, କଣ ସମ୍ଭବ ? ତା ସାଙ୍ଗରେ ଅଭଡା ବସିଲା ଦିନରୁ ଆମ ଦୁହିଁଙ୍କର କଣ ସଙ୍ଗାତ ସହିତ ତିନିଙ୍କର ଆତ୍ମୀୟତା ଆହୁରି ବଢ଼ିଗଲା । ଏମିତିକି ସେ ଚଞ୍ଚଳ ବିଭାହେଇ ଶାଶୁଘରକୁ ଗଲା ସିନା, ଶାଶୁଘରୁ ବାପ ଘରକୁ ଯେତେ ନ ଆସେ, ପିଇସୀ ଘରକୁ ବେଶୀଆସେ । ସିଏ ଯେତେବେଳେ ଲୁଚେଇ କରି ଖବର ଟିକିଏ ଦେଇଦିଏ, ସାନ ଆପଣେ ନାନା ବାହାନା ଦେଖାଇ ତାକୁ ଯାଇ ଘିନି ଆସନ୍ତି । ଆମର ତ ଆଗ ଦୁଆରି ଘର । ସେ ଆସିଗଲେ ବେଳେବେଳେ ଆମ ଘରେ ବସି ଗୋଟେ ଆସର୍ ଜମାଇଦିଏ । ବୋଉ,ମାଉସୀ,ନାନୀ ଯିଏ ଥିବେ ସମସ୍ତେ ତା ପାଖରେ ଘେରି ବସିଯିବେ । ତାକୁ ବାହାରେ ଦେଖିଲେ ସାଧାରଣରେ କିଛି ଜାଣି ହୁଏନି । ସତେ ଯେମିତି ଉଦୟ ହୋଇ ଆସୁଥିବା ସୂର୍ଯ୍ୟ ଉପରେ କଳା ବାଦଲ ଢ଼ଙ୍କା ମୁହଁଟିଏ । କିନ୍ତୁ ସେ ବସିଯାଇ ଗପ ଆରମ୍ଭ କରିଦେଲେ, ତୁମେ ଖାଲି ତା ମୁହଁକୁ ଚାହିଁ ପିଇ ଯାଉଥିବ । ସେ ମୁହଁରୁ ବାଦଲ କୁଆଡେ ଅପସରିଯାଇ ,ସତେ ଯେମିତି ତୀକ୍ଷ୍ଣ ସୂର୍ଯ୍ୟ କିରଣଗୁଡାକ ବିଚ୍ଛୁରିତ ହୋଇ ପଡୁଥିବ ଚାରିଆଡକୁ । ଖାଲି କଣ ପିଲାଦିନ କଥା,ସେତେବେଳର ଝିଅମାନେ ବର କଥା,ବିଭାଘର କଥା,ଶାଶୁଘର କଥା, କହିବାରେ ସଙ୍କୋଚ କରୁଥିଲେ । କିନ୍ତୁ ସେ ଗୋଟାଏ ଏମିତି ସାହାଣଦିଆ ଝିଅ ଥିଲା, ପିଲାଦିନରୁ ଅହରହ ଭଣ୍ଡାରି ମୁଠିରେ ଥାଇ ସାହଣଦିଆ ଖୁର ଧାରପରି କି ମାର୍ଜିତ ଧାରୁଆ କଥା, ଯାହା ତ ପିଲାଦିନ କଥା ତା ସାଙ୍ଗରେ ଆସ୍ତେ ମିଶିଯାଏ । ଢୋଇଁ କିଣାଠାରୁ ଶାଶୁଘରର ସମସ୍ତ କାରବାର ପର୍ଯ୍ୟନ୍ତ ।

ସତେ ଯେମିତି ତା କଥା ଶୁଣିଲେ ଲାଗେ ସେ ଗୋଟିଏ ଅଦାଲତରେ ସମାଜର କୁସଂସ୍କାର ବିରୁଦ୍ଧରେ ଅଭିଯୋଗ କରିଚାଲିଛି । କେତେବେଳେ କଥାରେ କନ୍ଦେଇ ଦେବ ତ କେତେବେଳେ ହସେଇ ହସେଇ ଗଡେଇଦବ । କେତେବେଳେ ବି ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଦିଏ ତାରି ବୁଦ୍ଧିରେ । ଏମିତି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଯାଉଥାଏ ଯେ, ତା ବର ଖୋଜା କଥାରେ ବଡ ମାନଙ୍କୁ ସାକ୍ଷୀ ବନେଇ ଦେଉଥାଏ । ବୋଉ ଆଡକୁ ଚାହିଁ କହେ- ଆହେ ମାଉସୀ, ନନା ସିନା ଭଲ ମନ୍ଦରେ ପଚାରନ୍ତିନି, କିନ୍ତୁ ବର ଖୋଜାରେ ଚୁଡା ଚାଉଳ ଧରି ଦୁଆର ଦୁଆର ବୁଲିଗଲେ । ମୁଁ ତ ଡେଙ୍ଗେଇଟେ, ପୁଣି ସାବେନିଟେ । ମାଗଣାରେ କଣ କିଏ ନବ । ଆମ ପାଖ ଗାଁରେ ଜଣେ ରିଟାର୍ଡ ବଡ ପୋଲିସ ଅଫିସର ଥିଲେ । ତାଙ୍କର ଚାରି ପୁଅ କି କଣ । ସେଥିରୁ ଗୋଟେ ପୁଅ ପୁଣି ଡାକ୍ତର, ଟିକିଏ ବୟସ ହେଇଗଲାଣି, ବୋଧେ ବାଆସ୍ତରିଆ ଚଗଲାଟେ କି କଣ । ଆମର ତ ଟିକିଏ ଥିଲାବାଲା ଘର ବୋଲି ଜାଣନ୍ତି । ତାଙ୍କ ଯାତ୍ରୁ ସଦଳ ବଳେ ଆସି ଆମଘରେ ହାଜର । ଯାହା ପାନ ଜଳଖିଆ ସରିଲା, ଦଦେଇ ମୋତେ ଡାକିଲେ, ମଣିନାନୀ ମୋତେ ସାଙ୍ଗରେ ନେଇ ଯେମିତି ବାହାରିଛି, ନନା ତେଣୁ ପଳେଇ ଆସି,ମୋ ହାତ ଧରି ନେଇଗଲେ । କାରଣ କଣ ଜାଣିଛଟି, ନାନୀଟା ଗୋରୀ ସୁନ୍ଦରୀ । ତାକୁ ସେମାନେ ଦେଖିଦେଲେ, ଆଉ କଣ ମତେ ମଙ୍ଗିବେ ? ନାନୀ ସିନା ଜାଣି ପାରିଲେନି, ମତେ କିନ୍ତୁ ହସ ମାଡୁଥାଏ । ତାଙ୍କ ସାଙ୍ଗରେ କିଏ ଗୋଟେ ମଉସା ଆସିଥାଏ । ମତେ ବସିବାକୁ କହିଲା । ମୁଁ ସବୁରିକି ମୁଣ୍ଡିଆ ମାରି ବସିଲି । ସେ ମଉସା ମୋ ଦି ପାଦ ତଳକୁ ସମାନ କରି ଯୋଡିବାକୁ କହିଲା । କହିଲ ଦେଖି, ଏତିକି ଭଦ୍ର ଲୋକଙ୍କ ଆଗରେ ମୁଁ ବୋହୂ ଦେଖା ଝିଅଟେ, ଦି ପାଦକୁ ହାତରେ ଧରି କେମିତି ଦି ଗୋଡକୁ ଟେକି ଦେଖେଇଥାନ୍ତି, ତଥାପି ପାଦ ତଳକୁ ପାଦତଳେ ଯୋଡି ଦେଖେଇଦେଲି । ପୁଣି ଦି ହାତ ସେମିତି ଯୋଡିକରି ଦେଖାହେଲା । ସେତିକିରେ ସରିଲାନି । ମୁଣ୍ଡର ଗଣ୍ଠି ଫିଟା ହୋଇ ଚୁଟିର ମାପ ମନ ପାଇଗଲା । ସବୁ ଲକ୍ଷ୍ମୀଙ୍କର ଚିହ୍ନ ମିଳିଗଲା ସିନା ? ସତ ଲକ୍ଷ୍ମୀ ବେଳକୁ ଟଣା ଓଟରା ପଡିଲା । ମୁଁ ତ ଆସିଲି ଭାରି, ସେଇଠି ଜ୍ୟୋତିଷ କହିଲେ, ଡାକ୍ତର ପୁଅ ଦି ହଜାରରୁ କମ୍ ହେବନି । ନନା ତ କିଛି କହିବେନି, ଦଦେଇ ହଜାରେ ଯାଏ ଗଲେ, କହିଲେ ପୁଅତ ଚାକିରି କରିନି । ସାଙ୍ଗେ ସାଙ୍ଗେ ଜ୍ୟୋତିଷ କହିଲେ, ଆହେ ଚାକିରୀ କରିନି କରିବ ତ ସେତେବେଳେ କ'ଣ ଜଗୁଆଳ ହେବ ନା ଗୁମାସ୍ତା ହେବ । ଡାକ୍ତରଟେ ହେବନା । ଦଦେଇ କହିଲେ ହଉ ! ଆମେ ଟିକିଏ ବିଚାର କରି ଖବର ପଠାଇଦେବୁ । ସେମାନେ ଗଲେ । ନନା ଦଦେଇଙ୍କ ଏଇ ବଡ ବେପାରକୁ ଆଖି ପାଇଲାନି,ଦଦେଇ ମଝିରେ ମଝିରେ କହୁଥାନ୍ତି,ଭଲ ଜମି ବାଡି ବି ଥିଲା । ଡାକ୍ତରଠୁ ଦଦେଇଙ୍କର ଆଖି ଜମି ଉପରେ ବେଶୀ ।

ଏମିତି ଖୋଜୁ ଖୋଜୁ ମାଉସୀ ଅରକ୍ଷିତକୁ ଦଇବ ସାହା ହେଲାପରି, ଦଦେଇଙ୍କ କପାଳକୁ ପୁଣି ବହୁତ ଜମି ବାଡି ବାଲାଟେ ହାବୁଡି ଗଲା । କେବଳ ପୁଅ ଯାହା ମାଟ୍ରିକ

ତିନିଥର ଦେଇଛି । ଏଇଥର ବି ଦେବ । ସେ ଯେତେଥର ହଉ ତା ପଢ଼ାଖର୍ଚ୍ଚ ଦଦେଇ ତୁଲେଇବାକୁ ରାଜି ହୋଇଗଲେ । ସେ ଯେତେ ପାଠ ପଢୁ କହି ଚାନ୍ଦ ହସି ହସି ଗଡିଗଲା । କହିଲା ମାଉସୀ ଦଦେଇଟା ଭାରି ସିଆଣିଆ । ପଛରେ ମୋ ନନାଙ୍କୁ କହିଲେ, ହଇରେ ଚକରା ଯେ ତିନିଥର ମାଟ୍ରିକ ଫେଲ ହେଲାଣି, ସେ କଣ ଆଉ ପାଶ କରିବ । ଯଦି ପାଶ୍ କରିବ ଆଉ କଣ କଲେଜରେ ପଢ଼ିବ ? ବିଭାଘର ହୋଇଗଲେ କୋଡିଏ ଟଙ୍କା ଲେଖାଁଏ ଦେଇ, କେତେଟା ମାସ ଦେଖିବା । କିନ୍ତୁ ମୋ ଶ୍ୱଶୁର ତ ଆଉରି ଚାଲାକ । ଦେଖିଲେ ଯେ ମାସ ଦିଟା ପରେ ଟଙ୍କା ଦେବାରେ ଏପଟ ସେପଟ ହେଲା, ଶ୍ୱଶୁର କହିଲେ ନାହିଁ ସମ୍ବୁଦି, ଆମେ ଯାହା ଯେମିତି ପଢ଼ା ଖର୍ଚ୍ଚ କରୁଛୁ, ବରଂ ଆମର ଏପଟେ ମୁଗ ବିରି ବେଶୀ ହୁଏନି,ଯାହା ହେବ ବର୍ଷକୁ ବର୍ଷ ସେ ମୁଗ ବିରିରେ ଦେଇଦେବ । ଆମ ଘରେ କୋଠୀରେ ବିରି ରହେ । ଥରେ ଧାନ ଧୋଇ ପଟୁ ପଡି ଗଲେ, ମୁଗ ବିରି ଗୋରୁ ଚରିଯାନ୍ତି । ଯାହାହେଉ ମୋ ଲକ୍ଷ୍ମୀଙ୍କର ପଣିଆରେ ଜ୍ୱୋଇଁ ବହୁ କଷ୍ଟରେ ସେ ବର୍ଷ ମାଟ୍ରିକ୍‌ଟା ଡେଇଁଗଲେ ସିନା, କିନ୍ତୁ ମୁଗ ବିରି ଓଳିଆ ଆଜିଯାଏଁ ବନ୍ଦ ନାହିଁ । ମୁଁ ଯେତେଥେର ବାପଘରକୁ ଯାଇ ଆସିବି, ମୋ ଶଗଡ଼ ପଛରେ ମୁଗ ହେଉ କି ବିରି ହେଉ ଓଳିଆଟେ ନିଶ୍ଚୟ ଥୁଆ ହେବ । ଆଉ ମୋ ଶ୍ୱଶୁରଙ୍କର ଦଦେଇଙ୍କି ଯେତିକି ପ୍ରଶଂସା, ସେତିକି ଖାତିରି ।

ଏମିତି କଥା ହେଉ ହେଉ ଥରେ ବୋଉ ପଚାରିଲା- ହଇଲୋ ଚାନ୍ଦ ! ତୋର ଦେଢ଼ଶୁର, ଦିଅର, ନଣନ୍ଦ କେତେ । ଚାନ୍ଦର ସେଇ ଖୁର ଧାରିଆ ହସ । ମୁରୁକି ମୁରୁକି ହସି କହିଲା ମାଉସୀ ? ସେକଥା କହନି । ଘୁଷୁରି ପଲ ପରି ପଲେ କହିବି, କି ମହାବଳ ପରି ଗୋଟେ କହିବି । ବୋଉ କହିଲା ଏମିତି କି କଥା କହୁଚୁ ମ । ଚାନ୍ଦ କହିଲା ହଉ ତାହାଲେ ମାଉସୀ, ମୂଳରୁ ଶୁଣ । ମୋ ଗୋସେଇଁ ଶ୍ୱଶୁରଙ୍କର ଭଲ କିଛି ସମ୍ପତ୍ତି ଥିଲା । ଦଶ ବଖରା ଦକ୍ଷୀଣି ଆଟୁ ଘରଥିଲା । ମଝିରେ ସାତ ବଖରିଆ କୋଠୀ ଥିଲା । ବାଡ଼ିଆଡ଼େ ଗୁହାଳରେ ଗୁହାଳେ ଗାଈ ବଳଦ ଥିଲେ କିନ୍ତୁ ମାଇପଟିଏ ଥିଲା ଯେ, ସେ ବାଞ୍ଝ । ଯେତେ ଯାହା ଓଷା, ବ୍ରତ ବିଧି ବିଧାନ, ଜାଗଯଜ୍ଞ ପର୍ଯ୍ୟନ୍ତ କଲେ, କିଛି ଫଳ ହେଲାନି । ସେଇଠୁ ମୋ ଗୋସେଇଁ ଶ୍ୱଶୁର, ଯାଇ ତାଙ୍କର କୋଉ ଲେଖା ଯୋଖା ଭଉଣୀ ହେବ, ତା'ର ଯାଆଁଳା ପୁଅ ହେଇଥିଲା । ରାଇପୁର ଗାଁରୁ ଯାଆଁଳା ପୁଅରୁ ଗୋଟେ ଯେ, କୁଆଡ଼େ ଲହୁରୁଣୀ ପରି ଫାଳେ ମୁହଁ । ନିତି ମଲେ, ନିତି ଜିଉଁଥାଏ । ସେଇଥିପାଇଁ ତା' ମାଆ ଏଇଠି କାଳେ ଜିଇଁଯିବ ବୋଲି ଯାଙ୍କୁ ଦେଇଦେଲା । ଯାଙ୍କରତ ଥିଲାବାଲା ଘର । ମୋ ଗୋସେଇଁ ଶ୍ୱଶୁର, ଶାଶୁ, ଆଉ ତାଙ୍କ ରାଣ୍ଡ ଭଉଣୀ । ଲାଗିପଡ଼ି ପୁଅଟାକୁ ବଞ୍ଚେଇ ବଡ଼ କରିଦେଲେ । ସାତ ବରଷକୁ ବଡୁ କରିଦେଇ, ପନ୍ଦର ବରଷକୁ ବିଭା କରିଦେଲେ । ଯେମିତି ମୋ ଶ୍ୱଶୁରଙ୍କୁ କୋଡ଼ିଏ ପୂରି ଏକୋଇଶି ହୋଇଛି, ମୋ ବଡ଼ ଦେଢ଼ଶୁର ଜନମ ହେଲେ । ମୋ ନିଜ ଶାଶୁ ବି, ଶ୍ୱଶୁରଙ୍କୁ ତାହିଁ କାଳି ଶୁକୁଟି ହେଇ

(ପୋଡ଼ିଖିଆ ଶୁଖୁଆ ପରି ମାଈପିଟିଏ) ହେଲେ କ'ଣ ହେବ ? ସବୁ ବରଷରେ ଥରେ, ଏନ୍ତୁଡ଼ି ଘରେ ପଶିବେ । ଆଠ ପୁଅ, ଚାରି ଝିଅ ଜନମ କଲେ ।ଏଣେ ଗୋସେଇଁ ଶାଶୁ କ'ଣ କଲେ କି ? ଏତେ ଦିଅଁ ଦେବତାରେ ଯାହା ହୋଇ ନଥିଲା, ବାଦ ବୁଦିଆକୁ ଗୋଟିଏ ପୁଅ ଜନମ କରି ବସିଲେ । ପୁଣି ସେଇ ହସ । ହେଲେବି ପୋଷିଆଁ ପୁଅକୁ ଦେଖିପାରୁଥାନ୍ତି । ସେଇ ମୋ' କାଳି ଶୁକୁଟି ଶାଶୁ ଭାରି ଗୁଣର । ସେ ବି ସେ ଦିଅରକୁ ଭାରି ଯତ୍ନ କରନ୍ତି । ୟା' ଭିତରେ ସେ ପୁଅ ବଡ଼ ହେଇ ବିଭାହେଲେ । ଗୋରା ଚେକି ଚାକି ହେଇ ଭଲ ଘରୁ ଝିଅଟିଏ ଆସିଲେ ସିନା, କିନ୍ତୁ ସେ ପୁଣି ହେଲେ ବାଞ୍ଝ । ଏଣେ ମୋ' ଜନମ କଲା ଶାଶୁଙ୍କ କୁଆଡ଼େ ଚାଳିଶି ବର୍ଷ ପାଖାପାଖି ବେଳକୁ, ମୋ' ବର ପେଟରେ ରହିଲେ । ତେଣେ ବୁଢ଼ୀ ଲାଜରେ କାନ୍ଦ କଟା କରି ଅନ୍ନଜଳ ଛାଡ଼ିଦେଲେ କହିଲେ କେମିତି ହେଲେ ଏପେଟ ଖସେଇ ଦେବି । ହଇଲୋ ଏତିକି ନାତି ନାତୁଣୀ ହେଲେଣି, କେମିତି କାହା ଆଗେ ଠିଆ ହେବି ? ଜୋଇଁମାନେ କ'ଣ କହିବେ ? ଯେତିକି ବୟସ ହେଉଥାଉ ପଛେ, ଜୋଇଁ କଲେ ବୁଢ଼ୀ । ଜୋଇଁମାନେ କହିବେ ଆମ ବୁଢ଼ିଙ୍କର କଣଟିଏ ହେବ । ମୋ'ର ପ୍ରାଣ ହାରି ଦେବାକୁ ମନ ହେଉଛିଲୋ ଶଙ୍ଖି । ମୋ' ପୋଷିଆଁ ଶାଶୁ, ତାଙ୍କୁ ବହୁତ ନେହୁରା ହୋଇ ବୁଝିଆ ବୁଝି କଲେ । ବହୁତ ନେହୁରା ହୋଇ କହିଲେ, ଜମା ୟା କରନି । (ଲିଙ୍ଗଭଗ୍ନ ମହାପାପ) ନିଜ ହାତରେ ୟା କରି ପାରିବ ? ଯେଉଁମାନେ ଏତୁଟିମାନ ହେଲେଣି, ଇଏ ପରା ତାଙ୍କରି ଭିତରୁ ଗୋଟିଏ । ଏଥିରୁ ଗୋଟିଏ କ'ଣ ମାରି ଦେଇପାରିବ ? ମୋ' ସାନକୁହା ମାନ, ଆଉ କେତୋଟା ମାସ ଏମିତି ଏମିତି କଟିଯିବ । ଆଉ ଯାହା ହବ, ମତେ ଏନ୍ତୁଡ଼ିଶାଳରୁ, ଫୁଲ ଫଳ କରି ଟେକି ଦବ । ତୁମେ ତା'ର ଦେବକୀ ମା' ହେଲେ, ମୁଁ ତା'ର ଯଶୋଦା ମା' ହେବି । ସେ ଯେମିତି ଜାଣିବନି ତୁମଠୁ ଜନମ ବୋଲି । ତୁମକୁ ଦେଠେଇ, ମୋତେ ବୋଉ ଡ଼ାକିବ ।

ସତକୁ ସତ ସେଇଆ ହେଲା । କୋଇଲି ଜନମ କଲା ସିନା କୁଆ ପାଳିଲା । କେହି ୟାଙ୍କୁ ଆଉ ତାଙ୍କ ପୁଅ ବୋଲି କହନ୍ତିନି । ଇଏବି କେବେ ତାଙ୍କୁ ନିଜ ନନା ବୋଉ ବୋଲି ଡ଼ାକନ୍ତିନି । କିନ୍ତୁ ମାଉସୀ ମୋ' ଜନମ କଲା ଶ୍ୱଶୁର ଭାରି ଭଲ । ମଲା ମାଛିକି ମ' ବୋଲି କହିବେନି । ଯାହା କହନ୍ତି ବଡ଼ ଦାଣ୍ଡ ଗୋରୁ ଆଉ ମୋ' ପୋଷିଆଁ ଶ୍ୱଶୁରଙ୍କୁ, ଗୋସେଇଁ ଶାଶୁ ଏମିତି ଗେଲବସର କରି ବଢ଼େଇ ଥିଲେ ଯେ, ଏ ପୋଷିଆଁ ଶାଶୁଙ୍କର ଯୋଡ଼େ ଗୋଦର ଗୋଡ଼ । ପୁଣି ଟିକେ ଦି' ପୁରିଆ ମଣିଷ । ସେଥିରେ କିବା ଦିନ କିବା ରାତି ଖାଲି ଶ୍ୱଶୁରଙ୍କ ସେବାରେ । ତା'ଙ୍କ ଖାଅ ପିଅ ଦେଖିଲେ ତୁମେ କାବା ହୋଇଯିବ । ଏମିତି ଖାଇଲାବାଲା ମୁଁ ଆଉ କାହିଁ ଦେଖିନି । ଗୋସେଇଁ ଶାଶୁତ ଆଗ ମରିଥିଲେ । ଯେମିତି ଗୋସେଇଁ ଶ୍ୱଶୁର ମଲେ, ଏ ଶ୍ୱଶୁର କି ଆଉ ଏକାଠି ରହନ୍ତି ? ଧର୍ମକୁ ବିଚାରି, ତାଙ୍କୁ ସାତ ବଖରା ଘର, ଆଉ ଅଧେ ଜମି ଦେଇ, ଭିନ୍ନେ ହୋଇଗଲେ । (ବସି ଖାଇଲେ ତ' ନଈ ବାଲି ସରେ) ଯେତେ ଜମି ଥିଲେ ସୁଦ୍ଧା, ଏମିତି ବସି ଖାଇଲେ କେତେ ଦିନ

ଯିବ ? ଏତିକି କୁଟୁମ୍ବରେ, ଦିହେଁ ଶାଶୁ ଶ୍ୱଶୁର ତାଙ୍କ କର୍ମ ଆଦରି ରହିଲେ । ଆମର ତିନି ବଖରା ଘର । ଅଧେ ସମ୍ପତ୍ତି । ପୁଣି ଗୋସେଇଁ ଶାଶୁଙ୍କର ମଉଡ଼ ମାଳଠୁ, ଗଣ୍ଡିଆ, ମଲ୍ଲିକଢ଼ି, ନୋଥ, ଗୁଣା, କେତେ ରୂପା ଅଳଙ୍କାର । ସବୁ ମୋ ଏଇ ଶାଶୁଙ୍କ ପାଖେ । ଆଉ ବଡ଼ ଶାଶୁ ଦୁର୍ବଳିଆ ହେଲେ କ'ଣ ହେବ । ସେ ଘଡ଼ିଏ ବସିବେନି । ଦି'ଯାଙ୍କର ବି ଟିକିଏ ମେଳ ଅମେଳ ନଥାଏ । ବାଡ଼ିଆଡ଼େ ଧାନ ଉଷୁଆଁ, ମୁଗ ଭଜା, ମୁଢ଼ୀଭଜା, ଦୋପାଖା ଚୁଲି ଲଗେଇ, ଦିହିଁଙ୍କର କାମ ଏକା କରି ପକେଇବେ । ଶାଶୁଙ୍କୁ କହିବେ ଦିଅରଙ୍କର ପାନରୁ ଚୂନ ଖସିଗଲେ, ଏଇଲେ ତୋ ଉପରେ ଉତ୍ତମ ମଧ୍ୟମ ହେଇଯିବ ଲୋ ଶଙ୍ଖି ! ସତକୁ ସତ ମୋ' ଶାଶୁଙ୍କର କୋଉଠୁ ମାଇମାଛ, କଉ, ମାଗୁର, ରଡା; ଧରା ହେଇ ଆସି ବାରମାସି, ଅଗଣାରେ ହାଣ୍ଡିମାନଙ୍କରେ ବଞ୍ଚା ହେଇଥିବ । ଯେତେବେଳେ କାତି ମାଛ ନମିଳିବ, ସେଇଥିରୁ ପୁଞ୍ଜେ ବାଡ଼ିଆ ହେବ । ଆଉ ଦୁହାଁଳୀ ଗାଈରୁ, ଗୋଟେ କି ଯୋଡ଼େ ନିଶ୍ଚେ ଦୁଧ ଦେଉଥିବ । ଶ୍ୱଶୁରଙ୍କ ଗୋଡ଼ ତଳ ଆଲମାରୀରେ, ଘୋଡ଼ିଆ ହେଇ ଘିଅ ଘଡ଼ିଟେ ଥିବ । ପାଟକପୂରା କଦଳୀ ପେଣ୍ଡା ଗୋଟାକ ପଛକୁ ଗୋଟେ, ବାଡ଼ିରେ ନଥିଲେ ହାଟରୁ କିଣା ହେଇ ଆସି, ଖଟ ଗୋଡ଼ତଳକୁ ଆଟୁରୁ ଦଉଡ଼ି ଲାଗି ଟଙ୍ଗା ହୋଇଥିବ । ଆଉ ଆମ୍ବ ଦିନେ ଆମ୍ବ, ପଣସ ବେଳାରେ ପଣସ, ଯାହା ତ ବିକା ହେବ, ଆଉ ଭଲ ଭଲ ବଛା ହୋଇ ଖଟତଳକୁ କାହାପରେ କିଏ ପାଚିବ, ସଜଡ଼ା ହୋଇ ଥୁଆ ହୋଇଥିବ । ପୁଣି ବାଡ଼ିଆଡ଼ ଗଛରେ ଯେତେ ମେଘୁଆ ରୁଆଛାଡ଼ିବ, ଆଲମାରୀରେ ସଜଡ଼ା ହୋଇ କାହା ପଛକୁ କିଏ ଥୁଆ ହେବ । ପୁଣି ଆଉ କାହା କଥା ଛାଡ଼, ନାତି ନାତୁଣୀକି ବି ଗୋଟେ ସେଥିରୁ ଦିଆ ହେବନି ।

ପୁଣି ମାଉସୀ ପାନ ସଉକି କିଛି କମ୍ କି ? ପାନବଟା ଯେ, ମଜ୍ଜା ହେଇ ସେଥିରେ ମୁହଁ ଦିଶୁଥିବ । ତା' ତଳେ ଦି'ଟା ଶୋରିଷ ପଡ଼ି, ତା' ଉପରେ ଓଦା କନା ପଡ଼ି ପାନ ସଜଡ଼ା ହୋଇ ପ୍ରସ୍ତ ପ୍ରସ୍ତ ହେଇ ଥୁଆ ହେବ । ପ୍ରସ୍ତ, ପ୍ରସ୍ତକରି ଶୋରିଷ ପକାଇଲେ, ପାନ କୁଆଡ଼େ ମସ ମସିଆ ହେବ । ଗୁଣ୍ଡି ତିଆରି ହେବ ସାତ ଦିନକୁ ଥରେ । ନହେଲେ ବାସ୍ନା ପଳେଇବ । ସେଥିରେ ପାନ ମଧୁର, ପୋସ୍ତକ, ଜାଇଫଳ, ଜାଇପତ୍ରି ସୁରଙ୍ଗୀ କମଳା ଶୁଖିଲା ଚୋପା, ଏମିତି କେତେ କ'ଣ ପଡ଼ିବ । ଆଉ ବର୍ଷକୁ ଥରେ, କେତକୀ ଖଇର ତିଆରି ହେବ ଯେ, ସେଦିନ ଆମେ ଶାଶୁ, ବୋହୂ ନାକେଦମ । ଖଇର ଆସି ଗୁଣ୍ଡ ହେଇ ବତୁରିବ । ଆଉ ମାଉସୀ ମସଲା ଯେ କେତେ, ସବୁ ନାଁ ବୋଧେ କହିପାରିବିନି । ଯାଙ୍କର ତ କିରାଣୀ ଚାକିରୀ । ଇଏ ପୁରୀରୁ ସପ୍ତାହରେ ଦି'ଥର ଆସିବେ । କୋଉଥର ଅଙ୍ଗୁର କୋଳି, କୋଉଥର ସୁରଙ୍ଗୀକମଳା, ନହେଲେ ଖଜୁରା, ଅଟା, ଚିନି, ସବୁ ଘିନିକରି ଆସିବେ । ରାତିକି ନନା ବୋଉଙ୍କର ଗୋଡ଼ ମୋଡ଼ିବେ । ନନା ବୋଉଙ୍କୁ ଭାରି ଭକ୍ତି । ହଁ କମଳା ଖାଇ ଶ୍ୱଶୁର ଗୋଟିଏ ଚୋପା ଫୋପାଡ଼ି ଦେବନି । ଶାଶୁଙ୍କୁ ପୁରା ତାଗିଦ୍ ସବୁତିକ ଶୁଖେଇ କରି ରଖିବେ । ସିଏ କଟାହେଇ କେତେକୀ ଖଇରରେ ପଡ଼ିବ । ବଡ଼ ବଡ଼

ଖଣ୍ଡମାନ କଟା ଗୁଆ ସଙ୍ଗେ ମିଶିକରି ରହିବ । ଆଉ ଖଇର ପାଇଁ ମସଲା ସେଇ ପୁରୀରୁ ଆସିବ । ଗନ୍ଧ ଶୁଣ୍ଠୀ, ପାନମଧୁରୀ, ପୋସ୍ତକ, ଅଳେଇଚ, ଗୁଜୁରାତି, ଜାଇଫଳ, ଜାଇପତ୍ରି, କର୍ପୂର ଦାନା, କବାବ ଚିନି, ଲବଙ୍ଗ ବୋଧେ ପଡ଼େ କି କ'ଣ ? ଆଉ କ'ଣ କ'ଣ ପଡ଼େ ମନେ ପଡୁନି । ସିଏ ପୁଣି ଖାଲି ଚୁଆରେ ଚକଟା ହେବ । ହଁ କଅଁଳିଆ କେତକୀ ପାଖୁଡ଼ା ଟିକି ଟିକି କଟା ହେଇ, ସେଥିରେ ଗୋଳିଆ ହେବ । ଆଉ ମୁଠାରେ ଲମ୍ୱା ଲମ୍ୱା ସାଇଜିରେ ନିଜେ ବସି ବଳିବେ କି, ଯଦି ଶାଶୁଙ୍କର ଟିକିଏ ସାନ କି ବଡ଼ ହେଇଯିବ, କି ବକା, ତମେ କାନରେ ଶୁଣିବନି । ବଡ଼ କେତକୀ ପାଖୁଡ଼ାରେ ଶୁଆଇ, ତା' ଉପରେ କେତକୀ ପାଖୁଡ଼ାମାନ ଗୁଡ଼ାଇ, ସେହି ଖଇରରେ କଦଳୀ ଗଛର ଶୁଖିଲା ବାସୁଙ୍ଗା ପଟୁକା ବାହାରି ଭିଡ଼ା ହେବ । ସେ ପୁଣି ଗୋଟେ ମାଠିଆରେ ପଶି, ତା' ମୁହଁରେ ଗୋଟେ ସଢ଼େଇ ଦିଆହୋଇ, ତା' ଉପରେ ଗୋଟେ କନା ଭିଡ଼ା ହେଇ, କେତେମାସ ରହି ଗମ ହେବ । କେତେ ମାସ କ'ଣ ? ଜାଣ ଗୋଟେ ଗୋଟେ କଢ଼ା ହୋଇ ସରିବା ପର୍ଯ୍ୟନ୍ତ ସେଇ ଖଟତଳେ ଥୁଆ ହେଇ ଗୋଟେ ଗୋଟେ ବାହାରି ଖିଆ ହେଉଥିବ ।

ଆଉ ମାଉସୀ ଚୂନ କଥା ଶୁଣିବ ? ଇଏ ପୁରୀରୁ ପୋଡ଼ା ଶାମୁକା କିଣି କରି ଆଣିବେ, ସେଥିରୁ କିଏ ଗୋଡ଼ି ପଡ଼ିବ, କଳା ଶାମୁକା ଦେଖି, ଶ୍ୱଶୁର ତାକୁ ବାଛିବେ ବେଶୀ ଗୋଡ଼ିଆ ଶାମୁକା ହେଲେ, ଜାଣ ଯାଙ୍କ କପାଳ ଫାଟିଲା । ତାକୁ ଗୋଟେ ହାଣ୍ଡିରେ ରଖି, ଟିକିଏ ଉଷୁମ ପାଣି ଦେଇଦେଲେ, ସେ ଭାତ ଫୁଟିଲା ପରି ଗବ ଗବ ହେଇ ଫୁଟୁଥିବ, ସେତେବେଳେ ଦେହରେ ପଡ଼ିଗଲେ ଫୋଟକା ହେଇଯିବ ମ । ସେ ରନ୍ଧା ସରିଗଲେ, ଆଉ ମୁନ୍ଦେ ଥଣ୍ଡା ପାଣି ପଶି ରହିବ । ତା'ଆରଦିନ ଗୋଳିଆ ହୋଇ ଖଣ୍ଡେ ପଖଲା କରିଆରେ ଛଣାହେବ । ସେ ଛଣା ଚୂନ ହାଣ୍ଡି ମୁହଁରେ ଗୋଟେ ପଲମ ଘୋଡ଼ିଆ ହୋଇ, ଗୋଟେ ମଳା ଉପରେ, କୋଠି ତଳେ ରହିବ । ତା' ଉପରେ ଗୋଟିଏ ଛୋଟିଆ ସଢ଼େଇର ଅଣକଟିଏ ଥିବ । ଯେଉଁଦିନ ଚୂନ ଖାଇରୁ ଚୂନ ସରିବ, ସେ ହାଣ୍ଡିରୁ ଡ଼କିଏ ଚୂନ ଆସି ଆଗ କାଠ ପରି ନିଗିଡ଼ା ହେବ । ସେଥିରେ କର୍ପୂର ପଡ଼ି, ଗୋଟେ ପଥୁରି ଗିନାରେ ସୁନ୍ଦର ହେଇ ଖଲ୍ଲା ହେବ । ତା' ଭିତୁରୁ ଯାଇ ଚୂନ ଖାଇର ଗୋଟେ ପଟେ ଚୂନ, ଆଉ ଗୋଟେ ପଟେ ଚିରା ପାନ ରହିବ । ବନ୍ଧୁ-ବାନ୍ଧବ, ପ୍ରଜା-ପାଟକ, ଚିହ୍ନା-ପରିଚ ଯିଏ ଆସିବେ, ବସି କଥା ହଉ ହଉ, ଶ୍ୱଶୁରେ ଆଗ ପାନ ବଟୁଆଟେ ତାଙ୍କ ଆଡ଼ିକି ବଢ଼ାଇଦେବେ । ସିଏ ପାନ ଖଣ୍ଡେ ଭାଙ୍ଗି ପାଟିରେ ପୂରାଇଦେଇ, ବୁହେ ବୁଢ଼ାଙ୍କୁ ପ୍ରଶଂସା କରିଯିବେ । ସେତେବେଳେ ବୁଢ଼ାଙ୍କ ମନକୁ ଆଉ କୁଣ୍ଢ ପାଉନଥିବ । ସତରେ ମାଉସୀ, ବୁଢ଼ାଙ୍କ ପାନ ଖଣ୍ଡେ ପାଟିରେ ପୂରାଇ ଚୋବାଇ ଦେଲେ, ସେ ଖଣ୍ଡ ମଣ୍ଡଳ ମହକି ଯିବ । ମୋର ବେଳେ ବେଳେ ଭାରି ଲୋଭ ହୁଏ । ବୁଢ଼ିଙ୍କୁ ଯେତେ କହିଲେ, ବୁଢ଼ି ସେ ବଟାରେ ହାତ ଦେବେନି । ମୁଁ ବେଳେ ବେଳେ ଲୁଚେଇ କରି, ଆଣି ଖାଇଦିଏ ଯେ, ବୁଢ଼ା ଯେମିତି ପାନ ପେଡ଼ି ପାଖେ ବସିଯିବେ, ସାଙ୍ଗେ ସାଙ୍ଗେ ପାଟି କରିବେ ଏଥିରେ

କିଏ ଲାଗିଥିଲା କି, ବୁଢ଼ୀ ସାଙ୍ଗେ ସାଙ୍ଗେ କହିବେ ନାହିଁ ମ ! ସାନ ଟୋକା ଖାଁଲାବେଳେ ଗୋଡ଼ ବାଜିଯାଇଥିବ । ବୁଢା ବୁହେ ଗୁଣୁରୁ ଗୁଣୁରୁ ହେଇ କହୁଥିବେ, ହଁ ଗୋଡ଼ ବାଜିଯାଉଥିଲା !

ସତରେ ମାଉସୀ, ସକାଳୁ ସଞ୍ଜଯାଏଁ ଖାଲି ଖାଇବା ଛଟା । ଧନ୍ୟ ସେ ଶାଶୁ । ବୁଢ଼ା ସକାଳୁ ଦାନ୍ତ ଘଷି ଆସିଲାବେଳକୁ, ବୁଢ଼ି ମଢା ଡ଼ାଳଟିକୁ ହାତକୁ ବଢ଼ାଇଦେବେ । ବୁଢା ନିଜେ ଗାଈ ଦୁହିଁ ଆଣିବେ । ଏଣେ ଖଣ୍ଡେ ପିଢ଼ା ପଡ଼ି, ବେଲା, ଡ଼ଙ୍କି, ଚିନିଡ଼ବା ଥୁଆ ହେଇଥିବ । ଶ୍ୱଶୁର ଦୁଧ ଡ଼ାଳଟା ଥୋଇଦେଇ, ଚିନି ପକେଇ ଭଲ କରି ଗୋଳେଇ ଦେବେ, କାନ୍ଧରୁ ଗାମୁଛା କାଢ଼ି ବେଲାରେ ପକାଇ ଛାଣିଦେବେ । ଆଲୋ ମା, ଢ଼କ ଢ଼କ କରି ସେ କଞ୍ଚାଦୁଧ ବେଲାକ ପିଇଦେବେ । ଟିକିଏ ଡ଼େରି ହେଇଗଲେ ପ୍ରଳୟ । ଦୁହାଁ ଦୁଧରୁ ଉଷୁମ ଛାଡ଼ିଗଲେ ଗଲା । କହିବେ ଏ ଧାରଷ୍ଣ କ୍ଷୀରଟା, ସବୁ ରୋଗର ମଉଷଧି । କେଜାଣି ବାବୁ କେମିତି କଞ୍ଚା ଦୁଧ ନିଇତି ପିଅନ୍ତି । ପୁଣି ନିଇତି ରାତିକି ପିଠା । ଆଜି ମଣ୍ଡା ତ କାଲି ଇଣ୍ଡୁରୀ, ଆଜି ପୁରୁ ଚକୁଳି ତ କାଲି ପୋଟଳ ଚକୁଳି । ପୁଣି କେଉଁଦିନ ଚିତଉ ତ କେଉଁଦିନ ପୋଡ଼ପିଠା । ପୁଣି ଅଳପ ସଳପ ନୁହଁ । ମୋଟ ମୋଟ ପୁରୁ ଚକୁଳିରୁ ଗୋଟିଏ ଲେଖା, ଦଶ କି ବାର । ଆଉ ତା' ସାଙ୍ଗକୁ ଯାହା ହେଲେ ତିଅଣ । ମିଣିପି ଖିଆ ବେଳେ ମାଛ ନହେଲେ ତ ପତରରେ ବସିବେନି । ଆଉ ଡ଼ାଲିଠଉଁ ଯେତେ ଯାହା ହେବ, ସବୁ ତାଙ୍କ ବରାଦ ଅନୁସାରେ । ମୁଗ ଟିକେ ଖର ଭଜା ହେବ । ଦେଶି ଆଳୁ ଚକା ଚକା ହେଇ କଟାହେବ, ଶାଗ ଗୁଣ୍ଡ ହେଇ କଟା ହେବ, ନଡ଼ିଆ ସରୁ ସରୁ ହେଇ କୋରା ହେବ ଯେ ଖଣ୍ଡେ ହେଲେ ଖୋଳପା ଛାଡ଼ି ନଥିବ । ମାଉସୀ, କେବଳ ଆମ ଘରେ ଖିଆ ପିଆରେ ଦିନ ଗୋଟାକ ପଳଉଚି । ସେହି ବୁଢ଼ି ବୋଲି ପାରୁଛନ୍ତି । ମୁଁ ବେଶୀ ଭାଗ ବାହାର କାମ କରେ । ଶାଶୁ ଅଧ ରାତିରୁ ଉଠି, ଯାହା ଯେମିତି କାମ ସାରି ଗାଧୋଇ, ସେହି ରନ୍ଧା କାମରେ ଲାଗିଯାନ୍ତି । ପରବ ପୁନିଅଁ ଥିଲେ ତ ମଣିଷ ମଲା ଜାଣ । ଦଶଟା ବେଳକୁ ପିଠା, କ୍ଷୀରି, ଡ଼ାଲମା, ମାଛତିଅଣ, ଖେଚେଡ଼ି ଯାହା ହେବାର ସରିଥିବ । ଖରା ଉପର ପିଣ୍ଡାକୁ ଉଠୁ ଉଠୁ ଶ୍ୱଶୁର ଯାଇ ଦିଅଁଙ୍କ ଘରେ ହାଜର । ଦିଅଁ ବସା ସରି ଘଣ୍ଟି ବାଜିଲା ବେଳକୁ, ଭୋଗ ଦିଅଁଙ୍କ ଘରେ ବଢ଼ା ସରିଥିବ । ଏଣେ ଖାଇବାକୁ ମୁରୁଜ ଠା ପଡ଼ି ପିଢ଼ା ପାଣି ହେଇଥିବ । ଆଉ ଲକ୍ଷ୍ମୀ ପୂଜା ହେଲେ ତ ମଣିଷ ଅଧା ପ୍ରାଣ । କ୍ଷୀରି ଖେଚେଡ଼ି, ଦହିଭାତ, ସାତ ଠା ତିଅଣ କରି ଚିତୋଉ କଲାବେଳକୁ କାହିଁରେ କ'ଣ । ତା' ଆଗରୁ ଝୋଟି ମୁରୁଜ ଯେତିକି, ପଛକୁ ପିଠା-ଖେଚେଡ଼ି ନେବାକୁ ଦେ-ଦେଉଣୀ ସେତିକି ।

ମୁଁ ତ ଘର ଲିପି-ଲିପି ଦରମରା ହୁଏ । ଦିନେ ତାଙ୍କ ପୁଅ କହିଲେ- 'ନନା ଆମେ ମାଟି-ଆଟୁ ଭାଙ୍ଗି, ଖଣ୍ଡେ ଛାତ ପକାଇଦେବା । ଆଉ ଟିକିଏ କାନ୍ଥ ଫାନ୍ଥରେ ସିମେଣ୍ଟ ମାରିଦେବା' । ମାଉସୀ କ'ଣ କହିବି, ବୁଢ଼ା ତ ରାଗରେ କାହିଁରେ କ'ଣ । କହିଲେ-

ହଇରେ ଅଲକ୍ଷଣା ତୁ କ'ଣ କହୁଛୁ କିରେ । ଇଏ ତିନି ପୁରୁଷର ଘର । ମାଟି ଘର ସିନା, ଯା ସଙ୍ଗେ କେତେଟା ପକା ସରିହବରେ । ତୁଁ ଜାଣିଥା, (ପୋତା ଶାଳ, ଉଭା ତାଳ, ରୁଅ ହେନ୍ତାଳେ, ଗଣ୍ଠି ବେତାଳେ, ସେ ଘର ଯାଏ ଅଶେଷ କାଳ) ମୋ ବୋଉ ବାହାରିପଡ଼ି କହିଲା- ଆଉ ପଦେ ରହିଗଲା ଲୋ ଚାନ୍ଦ ! (ଘରଣୀ ଚେତାଳେ) ଚାନ୍ଦ ପଚାରିଲା ମାଉସୀ ସେ ପୁଣି କ'ଣ ? ବୋଉ କହିଲା ତୋରି ପରି ଗୋଟେ ଝିଅ, ସେ ଘରକୁ ଘରଣୀ ହେବା ଦରକାର । ମୋ ବୋଉ ତାକୁ ବୁଝାଇ- କହିଲା ଘର ତଳ ମାଟିରେ ଯେଉଁ ଖମ୍ଭ ପୋତା ହେଇଥିବ, ସେଗୁଡ଼ିକ ଶାଳୁଆ ଖମ୍ଭ ଆଉ ତା' ଉପରେ ଯେଉଁ ଶେଣୀ ପଡ଼ିବ, ସେଗୁଡ଼ିକ ତାଳ ଶେଣୀ ହେବ । ଆଉ ରୁଅ କାମେଡ଼ାରେ ଯେଉଁ ବାଉଁଶ ଲାଗିବ, ସେ ହେବ ହେନ୍ତାଳ ବାଉଁଶ । ଆଉ ରୁଅ କାମେଡ଼ା ମଝିରେ ଯେଉଁ ଗଣ୍ଠି ଦିଆହେବ ସେଗୁଡ଼ିକ ବେତ ଚିରା ହେଇ ଗଣ୍ଠି ଦିଆହେବ । ଆଉ ମୁଁ ଯେଉଁ ଶେଷ ପଦକ କହିଲି, ସେ ଘରେ ତୋରି ପରି ଗୋଟିଏ ଘରଣୀ ଥିବ । ଯାହାର ସବୁଆଡ଼ିକି ଚେତନା ଥିବ । ଆଉ ତୋ ଶାଶୁଙ୍କ ପରି ଖାଲି, ଖାଇବା ପିଇବାକୁ ଦେଲେ କ'ଣ ଘର ରହିବ ? ଯେତେ ସମ୍ପତ୍ତି ଥାଉ କୁଆଡ଼େ ଉଡ଼ିଯିବ । ଅଧେ ସମ୍ପତ୍ତି ହଉ ପଛେ ସବୁ ସରିଯିବ ! ଚାନ୍ଦ କହିଲା ମାଉସୀ ସରିବ କ'ଣ ମ! ସରିବା ଆଖି ଆଗେ ଦେଖି ଯଦି ନ ଜାଣିବେ, ଆଉ ତାଙ୍କୁ କିଏ ଚେତେଇବ ! ମୋ ଜନମ କଲା ଶ୍ୱଶୁରଙ୍କର ପରା, ଆମକୁ ଛାଡ଼ି ସାତ ପୁଅ, ସାତ ବୋହୂ, ଝିଅମାନେ ସିନା ଶାଶୁ ଘରକୁ ଗଲେଣି । ଆଉ ପୁଅଙ୍କ ପିଲାମାନେ ମିଶି, ଚାଳିଶି ପ୍ରାଣୀଙ୍କି ପାଖେଇଲେଣି । ଆଗରୁ ତ ଶ୍ୱଶୁର ଭିନେ ହେଇଥିଲେ । ଶାଶୁ ଯେମିତି ମରିଗଲେ, ସାତ ପୁଅ ଯାକ ଭିନେ ହୋଇଗଲେ । ସାତ ବଖରା, ସାତ ପୁଅ ଭାଗ ବାଣ୍ଟିଦେଲେ । ଆଉ ମଝି ସାତ ବଖରାତ କୋଠି ଥିଲା । ସବୁରି ମଝି ସାହୋଲାରେ କୋଠୀ ଖଣ୍ଡେ ଖଣ୍ଡେ ଭାଗ ପଡ଼ିଲା । ଦାଣ୍ଡଘର, ବାଡ଼ିଘର, ଦିଅଁଙ୍କ ଘର ହାଣ୍ଡିଶାଳ ଛାଡ଼ିଦେଲେ, ସେ କୋଠୀଘର ଖଣ୍ଡକ ଲେଖାଏଁ ସବୁରି ଶୋଇବା ଘର । ଯାହା ହଉ, ଆଉ ଖଟ ପଲଙ୍କ ଦରକାର ହଉନି । କୋଠୀରେ ତ ବଢ଼ିଆ ଶାଳୁଆ କାଠ, ପଟା ପଡ଼ିଥିଲା । ସେହି ଜାଣ ସବୁରି ହାତୀ ଦାନ୍ତ ପଲଙ୍କ । ଆଉ ଯାହା ଜିନିଷ ପତ୍ର ବି ସେହି କୋଠି ତଳେ ରହିଯାଉଛି । କହି ବୁହେ ହସି ହସି ବେଦମ୍ । ଆଉ ଶଶୁରଙ୍କ ପାଇଁ କିଛି ଘର ନାହିଁ କି ଜମିରେ ବି ଭାଗ ନାହିଁ । ବଡ଼ ଦେଢ଼ଶୁରଙ୍କର ତ' ଗୋଟିଏ ପୁଅ । ବଡ଼ ଶଶୁରେ ତାଙ୍କରି ସେଇ କୋଠି ପଟା ଉପରେ ନାତିକି ଧରି ଶୁଅନ୍ତି । ଆଉ ସାତ ପୁଅଙ୍କ ଘରେ, ସାତ ଦିନ ପାଳି କରି ଖାଇବେ । ଅଶୀ ବର୍ଷର ବୁଢ଼ା ତ' ଦିନେ ଦିନେ ମନେନଥିବ ଯେ, ଯେ ପୁଅ ଘରୁ ସାତ ଦିନିଆ ପାଳି ସରିଯାଇଛି । ଆଜିଠୁଁ ଆରପୁଅ ଘରକୁ ଯିବେ କ'ଣ ? ମିଣିପି ଖିଆବେଳକୁ ପୋଖରୀରେ ଗାଧୋଇ, ହରେ-କୃଷ୍ଣ, ହରେ-ରାମ ବୋଲି ବୋଲି, ପୁଣି ସେଇ ପୁଅ ଘରକୁ ପଶିଯାଇ, ପିଣ୍ଡାରେ ନିଜେ ପିଢ଼ାଖଣ୍ଡେ ପକେଇଦେଇ, ବସି ପଡ଼ି ଡ଼ାକଟେ ମାରିଦେବେ । ମାଲୋ ! ବେଇକି ଆଣେ,

ବଡ଼ ଭୋକ । ବୋହୂ ଭାତ ଆଣିବେ କ'ଣ ? ରାଗ ତମ ତମ ହୋଇ ଆସି କହିବେ, ଏଠିତ ଥାତି ଥୋଇଚ ଯେ ନିତି ଗେଫା ମାରିବ । ଆମ ପାଳି ପରା କାଲିଠୁଁ ସରିଛି । ମାଉସୀ ଦେଖିଲେ ପଥର ବି ତରଳିଯିବ । ବୁଢ଼ା ଗୋଟେ କୁନି ପିଲା ପରି, ବୋହୂ ମୁହଁକୁ ବଲ ବଲ କରି ଚାହିଁ, କହିବେ ନାଇଁଲୋ ମା, ମୋ ମନେ ନାହିଁ । ହାତରେ ପାଣି ଢ଼ାଳଟେ ଧରି, ଉଠିବେ ଆର ବୋହୂଙ୍କ ଘରକୁ । ଯଦି ତ ସିଏ ବାଢ଼ିଦେଲେ ଦେଲେ, ନହେଲେ କହିବେ ବସ । ଏମିତି ପିଲାଙ୍କ ପରି ହେଲେ କେମିତି ହେବ । ପିଲା ଛୁଆର ଘର, ରନ୍ଧାବଢ଼ା ସରିଲେ ତ । ଥରେ ଥରେ ଆମର ଯଦି ରନ୍ଧା ସରିଥାଏ । ଶାଶୁ ତ ଦେଖା ଦେବେନି କି ତାଙ୍କ ଅଇଁଠା ଛୁଇଁବେନି କହିବେ - ଦେଢ଼ଶ୍ୱରକୁ ଆଡ଼ ଆଡ଼ ମଳାଶୁରକୁ ଦଇବ ଛାଡ଼ । ଯଦି ଦେଢ଼ଶୁର ଅଇଁଠା ଛୁଇଁଲ, ଆର ଜନ୍ମକୁ ପେଚା । ନାଇଁ ଯଦି ମଳାଶୁର ଅଇଁଠା ଛୁଇଁ ଦେଲ, ତାହାଲେ ସିଧା ଗୋରୁ ଲାଞ୍ଜରେ ଟିଙ୍କ ହେବ କହିଦେଇ ଅଭଡ଼ାର ପୁଣି ସେଇ ବେପରୁଆ ହସ । ମୁଁ ଶାଶୁଙ୍କୁ କିଛି ନ କହି, କୋଉ ପିଲାକୁ ପଠେଇ ଡ଼ାକି ଆଣେ । ସିଏ ତ ଏଡ଼େ ବୁଢ଼ା ମୁଁ ତାଙ୍କୁ ମାଇନ କରେନି । ତାଙ୍କ ପେଟ ପୂରିଲାବେଳକୁ, ତାଙ୍କ କଲ୍ୟାଣରେ ମୋ ପେଟ ପୂରିଯାଇଥାଏ । ପୁଣି ସେଇ ଯାଆମାନେ ସହିବେକି ? ବାର କଥା ଦେଖେଇ ଶିଖେଇ କହିବେ । କହିବେ ଏକା ପେଟରେ ସିନା ଜନମ । କାହା ତପସ୍ୟା ବଳ କେତେ । ବଡ଼ଘର ଝିଅ, ବଡ଼ ଘର ବୋହୂ । ତାଙ୍କୁ ସବୁ ପଇସା ଗୁଡ଼ାକ ଆଙ୍ଗୁଠି ଅଗରେ ନଚଉଛି । ହଉ ଦେଖିବା ଭଗବାନେ ଅଛନ୍ତି । ସବୁ ସହନ୍ତି । ହେଲେ ଗର୍ବ ସହନ୍ତିନି । ଶାଶୁ ବି ମୋତେ ବ୍ୟସ୍ତ ହୋଇ କହନ୍ତି, ଆଲୋ ! ସେମାନେ ସହୁନାହାଁନ୍ତି । ତୁ କାହିଁକି ଡ଼ାକୁଛୁ । କିନ୍ତୁ ଇଏ ଶୁଣିଲେ କାନ୍ଦି ପକାନ୍ତି । କହନ୍ତି ନନା ବୁଝିବେନି ବୋଲି ସିନା । ନଇଲେ ଦଦେଇଙ୍କ ପାଇଁ କ'ଣ ଗୋଟେ ବ୍ୟବସ୍ଥା କରନ୍ତି ।

ଆଉ ତାଙ୍କ ନନା କ'ଣ ବୁଝିବେ କିଓ, ମାଉସୀ । ଏଣେ ସିଏ ପରା ବସି ଖାଇ, ଖଣ୍ଡିଏ, ଖଣ୍ଡିଏ ଜମିବିକିବାକୁ ଆରମ୍ଭ କଲେଣି । ମୋର ଆଗ ଯୋଡ଼େ ଝିଅ ହୋଇଗଲା ବୋଲି, ଶ୍ୱଶୁରଙ୍କ ମୁଣ୍ଡରୁ ହାତ ବାହାରିଲାନି । ଶାଶୁ ତ ସାନ ଝିଅଟା ବେଳକୁ, ଆଖିରେ କ'ଣ ପଡ଼ିଗଲା ବୋଲି, ଖାସ୍ ଆଖି ମକଚି ଲାଗିଲେ । ମୁଁ ଜାଣିପାରି କହିଲି ହେଲେ ହେଲା, ଝିଅ କ'ଣ କୁଆଡ଼ୁ ଆସିଛି ? ସେହି ଦଶମାସ କଷ୍ଟତ ସବୁ । ପୁଣି ମୋର ଲାଗେ, ଲାଗେ ଦି' ପୁଅ ହେଇଗଲାରୁ, କି ଆନନ୍ଦ ! ମୁଆଁ ବଣ୍ଟା, ଠିଆ-ପାଲା ହରିଲୁଟି, ଏମିତି କେତେ କ'ଣ ସିନା ହେଲା । ଏସବୁ ଆନନ୍ଦ ସେ ଜମିବିକା ପଇସାରେ । ୟାଙ୍କର ଦରମା କେତେ । ପୁଣି ସାତ ଦିନକୁ ଦିଥର ବୁଢ଼ାଙ୍କ ବରାଦି । ଭଲ ମନ୍ଦ ଆଣୁ ଆଣୁ, ଦରମାକୁ ନିଅଣ୍ଟ । ପୁରୀ ଘରଭଡ଼ା ଯିବା ଆସିବା ଗାଡ଼ି ଖର୍ଚ୍ଚ, ପିଲାଙ୍କ ଔଷଧ ପତ୍ର । ବୁଢ଼ାଙ୍କ କବିରାଜି ଔଷଧ ବି କମ୍ ନୁହେଁ । ମୁଁ କିନ୍ତୁ ପ୍ରାଣପଣେ ଲାଗିଥାଏ । ପିଲେ କେମିତି ପାଠ ପଢ଼ିବେ, ମଣିଷ ହେବେ । ଏଣେ କ'ଣ ହେଉଛି କି ଆମର ଦରମାରେ ଚଳୁନି । ତେଣେ ଫସଲ ବି କୁଆଡ଼େ ଉଭେଇ ଯାଉଛି । ମୁଁ ଦିନେ ଅନୁମାନ କଲି,

ଦେଢ଼ଶୁରଙ୍କର ଖଣ୍ଡେ ଜମିରେ ଯେତିକି ଫଳୁଚି, ଆମର ତା' ପାଖେ ସେତିକି ଜମି । କିନ୍ତୁ ଅଧା କ'ଣ ଚଉଠା ବି ଫସଲ ହଉନି । ତା'ର କାରଣ କ'ଣ ଜାଣିଲ ? ବୁଢ଼ାଙ୍କର ବାତ ଧରି ବାଁଗୋଡ଼ ଟିକିଏ ଛୋଟ । ପୁଣି ମନରେ ଭାରି ଗର୍ବ । ଏକା ଅଧେ ଜମିର ମାଲିକ । ଜମିଦାରୀ ନଥିଲେ କ'ଣ ହେଲା, ଗୋଟେ ଜମିଦାରୀର ଠାଣୀ । ନିଜେ ଆଉ ଜମା ବିଲକୁ ଯାଆନ୍ତିନି । ଯେଉଁ ବିଲରେ ଯେତେ ଧାନ ବୁଣା ହେବ, ଭୋଇ ଆସି ଘରୁ ଟୋକେଇଟା ନେଇଯିବ । ଆଉ ସିଏ ଧାନ ବୁଣିବାକୁ ଭୋଇସାହି ବାଟେ ଗଲାବେଳେ, ତା'ଘରେ ଟୋକେଇରୁ, ଅଧା କି ତିନିପାଆ ଧାନ ଅଜାଡ଼ି ଦେଇଯିବ । ବାକି ଯାହା ଟୋଟେ ଗୋଟେ ବିଲରେ ବୁଣିଲା କିଏ ଦେଖୁଛି । ତେଣେ ଧାନ ନହେଲେ, ଏଣେ ଜମି ବିକ୍ରୀ । ଇଏତ ଆମର ସୁପୁତ୍ର ଶ୍ରବଣ କୁମାର'' । ନନାଙ୍କୁ ପାଟି ଫିଟାଇବେନି । ଥରେ ଆଉ ଖଣ୍ଡେ ଜମି ବିକିବାକୁ, ସବୁ ଠିକ୍ ଠାକ୍ କଲେ । ତାକୁ ପୁଣି ବଡ଼ ଦେଢ଼ଶୁରେ କିଣିବେ । ମୁଁ କି ଆଉ ସମ୍ଭାଳେ । ସେଦିନ ରାତିଯାକ ମତେ ନିଦ ହେଲାନି । ଭାବି ଭାବି ଗୋଟେ ଉପାୟ ପାଞ୍ଚିଲି । ମୋର ଟୋକେଇଏ ରୂପା ଅଳଙ୍କାର, ବାକି ଯାହା ସୁନା, ଚୁଲି, ଅନନ୍ତ, ହାର, କାନଫୁଲ, ପେଣ୍ଡି, ସବୁ ଏକାଠି କରି ଗୋଟିଏ ବାଉଁଶିଆରେ ପୁରେଇଲି । ଆଉ ଶାଶୁଙ୍କ ହାତେ ନଦେଇ, ବଡ଼ ଝିଅକୁ ଧରି ଯାଇ, କାନ୍ଥ ଆଢୁଆଳରେ ଠିଆହେଲି । ବୁଢ଼ା ଦୁଧ ବେଲାକ ପିଇସାରି, ପିଣ୍ଡାରେ ବସିଛନ୍ତି । ବଡ଼ ଝିଅକୁ କହିଲି, ସରଳା ଲୋ' ! ବାପାଙ୍କୁ କହ ୟା'କୁ ବିକି ଖର୍ଚ୍ଚ କରିବେ । ଆଉ ଜମି ବିକିବେନି । ଆଉ ତୋ ଭାଇମାନେ କ'ଣ ଭିକ ମାଗିବେ ? ନଇଲେ ତୋ' ବଡ଼ ଅଜାଙ୍କୁ ଡ଼ାକି ପିଲାମାନଙ୍କ ପାଇଁ କିଛି ହେଲେ ଗୋଟେ ବ୍ୟବସ୍ଥା କରିବେ । ଏଥର ସବୁ ଜମିଭାଗ ଲଗେଇଦେବେ । ଆମର କେହିତ ବିଲ ଦେଖି ଯିବାକୁ ନାହିଁ । ଆଉ ହାତ ଚାଷ ହବନି । ଶ୍ୱଶୁରଙ୍କର ଆମ ଦଦେଇଙ୍କି ଭାରି ଖାତିରି । ସମୁଧିଙ୍କ ନାଁ ଶୁଣି, କି ମୋ ଡ଼ରରେ ମୁଁ ଟିକିଏ ଆଗରୁ ଜାଣୁଥାଏ । ଶ୍ୱଶୁର ପୁଅକୁ ସିନା ଧମକେଇ ଦିଅନ୍ତି । ମତେ ଟିକିଏ ଡ଼ରନ୍ତି ସିଏ ଝିଅ ଉପରେ ପାଟିକରି କହିଲେ, ନେଲୁ ନେଲୁ ଆଗ ଏ ଜିନିଷ ଏଠୁ ଉଠା । ସକାଳୁ ଇଏ ଲକ୍ଷ୍ମୀଛଡ଼ା କଥା । ଦେହରୁ କଢ଼ା ହେଇ ଜିନିଷ ବିକା ହେବ । ୟା' କହିଲେ ସିନା, ଅଳଙ୍କାର ତ ବିକା ହେଲାନି, ଆଉ ଜମି ବିକା ନା' ବି ଧରାହେଲାନି । ମୋରି କଥା ଅନୁସାରେ, ଜମି ସବୁ ଭାଗ ଦିଆହେଲା । ବାଡ଼ିଆଡ଼ ଖଳାରେ । ଧାନ ବାଡ଼ିଆ ହୋଇ ବେଙ୍ଗଳା ପଡ଼ିଲା, ସବୁ ଅଧା ଅଧା ହେଲା । ସେହି ଦିନଠୁ ଧାନ ବିକା ହେଉଛି ସିନା, ଆଉ କେବେ ଅଭାବ ହେଉନି । ବୋଉଠୁ ମୋ' ଅଭଡ଼ାଙ୍କ କଥା ଶୁଣିଲା ବେଳେ, ମୁଁ ଅଭଡ଼ାଙ୍କ ବୁଦ୍ଧିକି ଜମା କଳନା କରିପାରେନି । ସେତେବେଳେ ଯଦି ଅଧିକା ପାଠ ପଢ଼ିବାର ସୁବିଧା ପାଇଥାନ୍ତେ, ତାହାଲେ କ'ଣ ନାଇଁ କ'ଣ କରିପାରିଥାନ୍ତେ । ସେଥିରେ ପୁଣି ତାଙ୍କର ପାଞ୍ଚପୁଅ ଆଉ ପାଞ୍ଚ ଝିଅ ବି ହୋଇଥିଲା । ଦୁଇଟା ପୁଅ ଆଉ ଝିଅ ଛୋଟବେଳରୁ ମରିଯାଇଥିଲେ । ସେ ନିଜେ ଘରେ ରହି ଜମି-ବାଡ଼ି ସହିତ, ଶାଶୁ-

ଶ୍ୱଶୁରଙ୍କୁ ଚଳାଇ ଆସ୍ତେ, ଆସ୍ତେ ପିଲାମାନଙ୍କୁ, ସହରକୁ ପା଼ ପଢ଼ିବାପାଇଁ, ନନାଙ୍କ ପାଖକୁ ପଠେଇଲେ । ପୁରୀରେ ଗୋଟିଏ ଛୋଟିଆ ଘର କିଣି, ନନା ଝିଅ, ପୁଅମାନଙ୍କୁ ପ୍ରାଣପଣେ ଲାଗିପଡ଼ି ନିଜେ ହାତରେ ରାନ୍ଧି, ପିଲାଙ୍କୁ ଖୁଆଇ, ସ୍କୁଲମାନଙ୍କରେ ପଢ଼ାଇ ଯୋଗ୍ୟ କରାଇଲେ ଯେ ଗାଁରେ ବି ସମସ୍ତଙ୍କ ପାଖେ ଅଭଡ଼ାର ଗୋଟିଏ ଖାତିର ବଢ଼ିଗଲା । ଅଭଡ଼ାଙ୍କ ବର ତ ବିନା ପରାମର୍ଶରେ ପାଦେ ଆଗେଇବେନି ।

ସେତେବେଳେ ଗାଁ ସ୍କୁଲମାନଙ୍କରେ ଗୋଟେ ମଦର ପୋଷ୍ଟ ଖୋଲିଲା । ସେଥିରେ ରହିବାକୁ, ଗାଁବାଲାମାନେ ଯାଙ୍କୁ ଅନୁରୋଧ କଲେ । ଫେରେ ଗାଁ ମହିଳା ସମିତିର ସମ୍ପାଦିକା ବି ହେଲେ । ଏଇ ଦୁଇ ଚାକିରୀରୁ କିଛି କିଛି ଟଙ୍କା ବି ପାଇଲେ । ତାଙ୍କର ପ୍ରତ୍ୟେକ ଟଙ୍କାଟିକି ସାଇତି ରଖି ଶ୍ୱଶୁର ଫେରେଇ ଦେଇଥିବା ଅଳଙ୍କାରରୁ କିଛି ବିକି ପୁରୀର ଛୋଟିଆ ଘରଟିକୁ ବିକ୍ରୀକରି, ଭଲ ଘରଟିଏ କିଣି ଦୋତାଲା କୋଠାଟିଏ କଲେ । ଝିଅଗୁଡ଼ିକ ବିଭା ଓ ପୁଅଗୁଡ଼ିକ ଯୋଗ୍ୟର ହୋଇଗଲେ । ଶାଶୁ ଶ୍ୱଶୁର ସଂସାରରୁ ବିଦାୟ ନେଲେ । ଏଇ ସବୁଗୁଡ଼ିକ ନିର୍ଦ୍ଧାରିତ ଧାରା ଅନୁସାରେ ହୋଇଗଲା ସିନା ତଥାପି ପିଲାଦିନରୁ ଦୁଃଖ କଷ୍ଟରେ ଘୋରି ହୋଇ ତୀକ୍ଷ୍ଣ ଧାର ପରି ବିଚକ୍ଷଣ ଝିଅଟାର ଶେଷ ଜୀବନରେ ଅଶାନ୍ତିର ସୀମା ରହିଲା ନାହିଁ । ଯାହା ଉପରେ ଭଗବାନ ଦାଉ ସାଧନ୍ତି ତାକୁ ବା ଶାନ୍ତି ଦବ କିଏ । ମଝିରେ ହାତ ପୂରାଇ ବିଧାତା ସ୍ୱାମୀ,ଝିଅ,ପୁଅ,ଜ୍ୱାଇଁ ବେଶ୍ କିଛି ଖସେଇନେଲା । ବେଳେବେଳେ ଯମଦଣ୍ଡରୁ ପରିବାର ଦଣ୍ଡ ବି ବଳିପଡ଼େ । ଏବେ ବି ଥରେ ବଡ଼ ଦେଉଳକୁ ଯାଇ, ପ୍ରଭୁ ଜଗନ୍ନାଥଙ୍କୁ ପ୍ରାର୍ଥନା କରି କହନ୍ତି, 'ହେ ପ୍ରଭୁ ! ତୁମ ଉପରେ ହାତ କାହାର, ତୁମେଇ ତ ବଡ଼ ଲୋକ, ତୁମ ଇଚ୍ଛା ପୂର୍ଣ୍ଣ କର । ମୁଁ ତ ମୁଣ୍ଡ ପତେଇଛି ପିଠି ଦେଖେଇଛି । ଏଇ ସଂପୂର୍ଣ୍ଣ ଦେହଟିକି ଅର୍ପଣ କରି ଦେଇଛି ଆପଣଙ୍କୁ ।।



# ଅଶୋକା

ପୁଣି ସମୟର ଆବର୍ତ୍ତନରେ ବସନ୍ତ ଆସେ । ଚଇତାଳିର ମଧୁର ପରଶରେ ଅଶୋକ ଗଛରେ ତା'ର ନାଲି ସୁନ୍ଦର ଫୁଲର ପେନ୍ଥାମାନ ଫୁଟି ମଣିଷକୁ ଆମନ୍ତ୍ରଣ କରେ । କହେ ଆ' ମତେ ଦେଖ୍, ମୁଁ ଖାଲି ସୁନ୍ଦର ନୁହେଁ ମୁଁ ପୁଣି ଅଶୋକା । ମୋତେ ନେଇ ଏଇ ଅଷ୍ଟମୀ ଦିନ ଟିକିଏ ଟିକିଏ ସେବା କର । ତୋର ସବୁ ଶୋକ ହରଣ କରିବାକୁ ପରା ମୁଁ ଚାହିଁ ବସିଛି । କିନ୍ତୁ ପ୍ରକୃତରେ କେତେ ଶୋକ ହରଣ କରେ କେଜାଣି । ସେଇ ଶୋକ ଭୁଲିବାକୁ କି ମନେ ପକେଇବାକୁ କେଜାଣି ମୋର ସାମନାରେ ଠିଆ ହୋଇଯାଏ, ସେଇ ଉଷା । ପହିଲି ଉଷାର ଅନ୍ଧାର ମିଶା ଆଲୁଅ ପରି, ରଷାଣିଆ ମୁହଁଟିଏ ।

ଅଶୋକାଷ୍ଟମୀ ଦିନ ହାତରେ ଦି'ଟା ଅଶୋକା କଢ଼ୀ ଧରି, ଧୀରେ ଧୀରେ ଆସି ମତେ ପଚାରିଲା, ଆଜି ଅଶୋକା କଢ଼ି ଖାଇଛୁ ? ମୁଁ କହିଲି ନାଇଁମ ! ଆମ ଅଜା ନଡ଼ିଆ ତୋଳା ସାରି, ଆସି ଗାଧୋଇ, ଦିଅଁ ପୂଜା ସାରି ଦିଅଁଙ୍କ ପଞ୍ଚୁପାତ୍ରି ପାଣିରେ ଅଶୋକା କଢ଼ୀ ପକାଇ ମନ୍ତୁରେଇବେ । ସେହି କଢ଼ୀ ସାଙ୍ଗରେ ଟିକିଏ ଟିକିଏ ପାଣି ସବୁରି ହାତକୁ ଦେବେ ନା । ମୁଁ ଆଗରୁ କୁଆଡୁ ପାଇବି ?

ଉଷା ତା' ହାତରୁ ଦି'ଟା ଅଶୋକ କଢ଼ୀ ଧରି କହିଲା, ଆମ ଦଦେଇ ଦିଅଁପୂଜା ସାରି ସବୁରିକି ଦେଲେ ଯେ, ମୁଁ ସେଥିରୁ ଦି'ଟା ଆଣିଛି ତୋ ସାଙ୍ଗେ ଅଶୋକା ବସିବି ବୋଲି । ମୁଁ ମହା ଆନନ୍ଦରେ ତାକୁ ଆଁ ଦେଖେଇ ଦେଲି ସେ ଆଗ ଗୋଟିଏ କଢ଼ୀ ମୋ' ପାଟିକୁ ଦେଇ, ଆଉ ଗୋଟିଏ ମୋ' ହାତକୁ ଦେଇ ନିଜେ ଆଁ କଲା । ଆଉ ଗୋଟିଏ ମୁଁ ତା' ପାଟିକୁ ଦେଇଦେଲି । ମୁଁ ତାକୁ କହିଲି ଅଶୋକା ନମସ୍କାର । ସେ ବି ହାତ ଯୋଡ଼ି ମୁଣ୍ଡପୋତି, ଗୋଟିଏ ଭାରି ସୁନ୍ଦର ଭକ୍ତିପୂର୍ଣ୍ଣ ନମସ୍କାର କରି କହିଲା, ଅଶୋକା ନମସ୍କାର । ମୋତେ ଆଉ ଭୁଲରେ ବି ଉଷା ଡ଼ାକିବୁନି ମୁଁ କହିଲି ନା, ଆଉ କିଏ କାହାକୁ ତୁ ତା' କରିବାନି କି, ନାଁ ଧରିବାନି । ତା' ସବୁଦିନର ନିରାଶ ମୁହଁରେ ସୁନ୍ଦର ହସଟିଏ ଫୁଟାଇ କହିଥିଲା ନାଁ । ସେହି ଅଶୋକାଟି ମୋ'ର ।

ତା'ର ଗୋଟିଏ ଗୁଣ, ଅଳ୍ପ କଥାରେ ଭାରି ରୁଷେ । ଘରେ କିଏ କ'ଣ ଟିକିଏ କହିଦେଲେ, ଆମ ଘରକୁ ଆସି ଗୋଟିଏ ଅଣ ଆଡ଼ିଆ ଯାଗାରେ ହାଣ୍ଡିପରି ମୁହଁଟିଏ ଲଦି ବସିଯିବ । ଗାଲ ଉପରେ ଶୁଖିଲା ଲୁହଧାର ଦିଟା ବାରମ୍ବାର ଲୁହ ଗଡ଼ି ଓଦା ହୋଇଯାଉଥାଏ । ଯିଏ ଯେତେ ଯାହା ପଚାରିଲେ କିଛି ଉତ୍ତର ଦିଏନି । କେବଳ ସେହି

ଲୁହର ଧାର ଛୁଟୁଥିବ । ତା'ବୋଉ ବି ନିଶ୍ଚେ ଖୋଜି ଖୋଜି ଆସିବ ଆମରି ଘରକୁ । ନିଜ କପାଳରେ ବୁହେ ହାତ ବାଡ଼େଇ ହେବ । ନିଜେ କାନ୍ଦି କାନ୍ଦି ନିଜ ଆଖିରୁ ଲୁହ ପୋଛିବା ସହିତ, ଲୁଗା କାନିରେ ଅଶୋକା ମୁହଁଟିକୁ ପୋଛି, ଡ଼େଣା ଭିଡ଼ି, ଘରକୁ ନେବ । ବୁଝା, ବୁଝି କରି ଭାତ ଖୋଇବ । ଅଶୋକାର କିନ୍ତୁ ଚାରି ପାଞ୍ଚ ବୟସରୁ ଏଇଟା ପ୍ରାୟ ଧାରାବାହିକ ଭାବେ ଚାଲିଥାଏ । ଏଡ଼େ ଛୋଟିଆ ଝିଅର ଏଡ଼େ ଗୁମାନ । କିନ୍ତୁ ତା'ଉପରେ କେହି ବିରକ୍ତ ହୁଅନ୍ତିନି । ପ୍ରାୟ ସହାନୁଭୂତିରେ ସମସ୍ତେ ବତୁରି ଯାଆନ୍ତି । ସେଇଟା ଯେମିତି ତା'ପରି ପିଲାଙ୍କର ସହଜାତ ଧର୍ମ । ତା'ପାଇଁ ବରଂ ମା' ମାଉସୀମାନଙ୍କର ଆଖି ଜକେଇ ଉଠେ । କାରଣ ସେ ତା'ର ଦୁର୍ଭାଗ୍ୟକୁ କୋଡ଼ରେ ଧରି ମର୍ତ୍ତ୍ୟମଣ୍ଡଳରେ ଗୋଡ଼ ଥୋଇଥିଲା । ଏଠି ଯାହାକୁ ନିଜର ବୋଉ ନନା ବୋଲି ଭାବି ମାନ ଅଭିମାନ କରେ, ସେ ତା'ର ପ୍ରକୃତ ନନା ବୋଉ ନୁହଁନ୍ତି । ତା'ର ଦଳିତ ମାଆ ସତେ ଯେମିତି, ତାକୁ ପେଟରୁ ଏକୁଟିଆ କାଢ଼ି ପୃଥିବୀରେ ଥୋଇଦେଇ, ନିଜେ ସ୍ୱର୍ଗ ସୁଖର ଲାଳସା ସମ୍ଭାଳି ପାରିନଥିଲା । ଥରେ ମାତ୍ର ମା' କୋଡ଼ର କି ହାତର ସୁଖ ଜାଣିବା ପୂର୍ବରୁ ତା' ମାଆ ଆଖି ମୁଜି, ବାଟ ଭାଙ୍ଗି ଚାଲିଯାଇଥିଲା ଆରପୁରକୁ ।

ଉଷା ପିଇସୀନାନୀର ମାତ୍ର ସାତ ବରଷର ଝିଅଟିଏ ଥିଲା । ପିଇସୀ ନାନୀର ବଡ଼ ଯାଆ ଥିଲେ ବାଞ୍ଝ । ଯାଆଙ୍କ ବ୍ୟତୀତ ଆଉ ଘରେ ସ୍ୱାମୀ, ଦେଢ଼ଶୁର, ଶ୍ୱଶୁର ଥିଲେ ଦିଇଯାଆ ଦିହିଁଙ୍କି ଭଉଣୀର ସ୍ନେହରେ ଦେଖୁଥିଲେ । ତେଣୁ ସାହାସ କରି, ଜନମରୁ ମା'ଖିଆ ପିଲାଟାକୁ, ସାନଯାଆ କୋଡ଼େଇ ଆଣିଥିଲେ ବଡ଼ ଯାଆଙ୍କ ଉଦ୍ଦେଶ୍ୟରେ । କିନ୍ତୁ ଭାଗ୍ୟ ତ ବଡ଼ । ତାକୁ ଆଣିବାର ବର୍ଷେ ନ ଯାଉଣୁ ବଡ଼ ଯାଆଙ୍କର ବାର ବର୍ଷ ବାଞ୍ଝରେ ଗୋଟିଏ ଝିଅ ହେଇଥିଲା । ପିଲାଟି ଜନ୍ମ ବେଳେ ଯାଆ ଏତେ କଷ୍ଟ ପାଇଥିଲେ ଯେ, ଡ଼ାକ୍ତର ପେଟରୁ କାଟି ପିଲାଟିକୁ ବାହାର କରିଦେବ ବୋଲି କହୁଥିଲା । ସତେ ଯେମିତି କହନ୍ତି - ମାଆରେ ଦାୟ ନା ପିଲାରେ ଦାୟ । ସେତେବେଳେ ସ୍ୱାମୀ ମାଆରେ, ଦାୟ କହିଲାବେଳେ, ଶ୍ୱଶୁର ପିଲାପାଇଁ ବ୍ୟାକୁଳ ହେଉଥିଲେ । ଭାବିଥିଲେ ଏଇ ଆଣିଲା ଝିଅଟି ଶୁଭ । ୟା'ରି ନିଃଶ୍ୱାସରେ ନିଶ୍ଚେ ପୁଅଟିଏ ହେବ । କିନ୍ତୁ ଦଇବର ବିଚାର ଅନ୍ୟପ୍ରକାର । ମାଆ ଆଉ ପିଲା ଦୁହେଁ ବଞ୍ଚିଗଲେ ସିନା, କିନ୍ତୁ ପିଲାଟି ପୁଅ ନହୋଇ ଝିଅଟିଏ ହେଲା । ଏକା ସାଙ୍ଗେ ଘରେ ତିନି ତିନିଟା ଝିଅଙ୍କୁ ଦେଖି ଶ୍ୱଶୁରଙ୍କ ଅସନ୍ତୋଷ ବେଳକୁ ବେଳ ବଢ଼େଇ ପଡିଲା । ସବୁ ଆକ୍ରୋଶ ପଡିଲା ଏଇ ପାଳିତା ଝିଅ ଉପରେ । ଯେଉଁଟି ସାଥୀରେ ବୁଢ଼ାଙ୍କର ରକ୍ତର କୌଣସି ସମ୍ପର୍କ ନାହିଁ । ସେଇଟି ବି ଦେଖିବାକୁ ଏଇ ଦୁହିଁଙ୍କ ତୁଳନାରେ ଟିକିଏ ଅସୁନ୍ଦର । ବୁଢ଼ାଙ୍କର ବେଶୀ ରାଗର କାରଣ,ଏଥିରୁ ଗୋଟେ ପର ପୂରେଇ ଘର ନାଶ ଗଲା । ଘରେ ଝିଅ ଧାଡି ମାଡିଗଲେ । ଏଇ କୁଣ୍ଡା ଭୁଷୁଣ୍ଡି ପାଇଁ ବର ଘର ଖୋଜିବାକୁ ମୋ ପୁଅ ବହୁତ ହଇରାଣ ହେବ । ୟା ପିଛା ଅଯଥା ଗୁଡିଏ ଧନ ଖର୍ଚ୍ଚ ହେବ । କିନ୍ତୁ ନିଷ୍ପାପ ଶିଶୁ ନିରୀହ ଉଷାର ଉଷା ପରି କୋମଳ ଶିଶୁ

ହୃଦୟଟି, ଜାଣି ପାରେନି ତାର ବା ଅପରାଧ କ'ଣ ? ତା ଶୋଭାକୁ ବାପା,ଏତେ ଭଲ ପାଇଲା ବେଳେ ତା ଉପରେ ଏମିତି ବିରକ୍ତ ହୁଅନ୍ତି କାହିଁକି ? ଟିକିଏ ପାଖକୁ ଗଲେ ଭାରି ଏମିତି ରାଇଁ ଚାଇଁ ହୋଇ ଦୂରେଇ ଦିଅନ୍ତି କାହିଁକି ? ବହୁକାଳ ଯାଏଁ ବିଚାରି ଜାଣେନି ଯେ ସେ ପାଳିତା ବୋଲି । କାଉ ବସାରେ କୋଇଲି ପିଲାର କୁହୁ କୁହୁଡାକରେ କୁଆ ବ୍ୟଥିତ ହୋଇ ଅଣ୍ଡରେ ହାଣି କୋଇଲି ପିଲାକୁ ଘଉଡେଇଲା ବେଳେ ସେ ଗୁଞ୍ଜି ହୋଇ କୁଆ କୋଡରେ ପଶିଲା ପରି, ଶୋଭାକୁ ଡାକି ବାପା ପାଖରେ ବସାଇ ତା ଟିକିଏ ବିସ୍କୁଟ ଖଣ୍ଡିଏ କି ଖଇ ଗଣ୍ଡିଏ ଦେଲାବେଳେ, ଉଷାର ଲୋଭାସକ୍ତ ଆଖି ଦିଓଟି, ନିରୀକ୍ଷଣ କରୁଥାଏ । ବାପାଙ୍କ କୋଡରେ ବସିଥିବା ଶୋଭାର ଟିକି ଥାଳିଆଟି ଉପରେ । ପାଖକୁ ଯିବାକୁ ସାହାସ ନଥିଲେ ବି ଟିକି ମନଟି ଶୋଭା ସାଙ୍ଗେ ଆଉଜି ଯାଉଥାଏ ସେହି ବାପାଙ୍କ କୋଳ ଭିତରେ । ଶୋଭା ତ ତା ଟିକି ଭଉଣୀ ଦେଠେଇ ଝିଅ ।

ସେତିକି ବେଳେ ଉଷାକୁ କାଖେଇ ତା ବୋଉ ବାଡିଆଡକୁ ନେଇ ଆସି ନିଜେ ଆଖି ପୋଛି ପୋଛି ଆଉ ଗୋଟିଏ ଗିନାରେ ମୁଢ଼ି ଚୁଡା ଦେଇ ଉଷାକୁ ବାଆଁରେଇ ଦିଅନ୍ତି । ଉଷାର ବୟସ ବଢ଼ିବା ସଙ୍ଗେ ସଙ୍ଗେ ଉଷା ବୁଝି ପାରିଥିଲା, ସେ ଘରେ ତା'ର ସ୍ଥିତି କେତେ ଅବାଞ୍ଛିତ । ସାଧାରଣ ଭାବେ, ସାଙ୍ଗ ସୁଖ ହୋଇ ଖେଳ ବୁଲା କଲେବି, ସବୁ ବେଳେ ତା ମୁହଁ ଉପରେ ସତେ ଯେମିତି ବାଦଲର କଳା ଛାଇ ଘୋଡେଇ ହୋଇ ରହିଥାଏ । ପୁଣି ତାରି ଦୁର୍ଭାଗ୍ୟକୁ ତାକୁ ପ୍ରାୟ ଆଠ ନଅ ବର୍ଷ ବେଳକୁ ତା ପାଳିତା ବୋଉର ଆଉ ଗୋଟିଏ ଝିଅ ହେଲା । ଅଶୋକା ଏତେ ମନ ମରା ହୋଇଗଲା ଯେ , ଧୀରେ ଧୀରେ ତା ରୁଷିବାଟା ବି କମିଗଲା । ବାପାଙ୍କର ଖିଟି ଖିଟି ବି ଦିନକୁ ଦିନ ଅଧିକରୁ ଅଧିକତର ହେଲା । ପ୍ରତି କଥାରେ ସାନ ବୋହୂ ଉପରେ ବିରକ୍ତ ହେବାକୁ ଲାଗିଲେ । (କୁହନ୍ତି ତ ଶାଶୁ ମାରୁଥାଏ ବୋହୂକୁ, ବୋହୂ ନିଉଛୁଣି କାହାକୁ ମାରିବ, ମାରୁଥାଏ ଚୂଳି ମୁଣ୍ଡକୁ) ବୋଉ ବେଳେବେଳେ ବାପାଙ୍କର ଆକ୍ରୋଶ ଉଷା ଉପରେ ଛିଣ୍ଡାଇଦିଏ । ଦିନେ କୁନି ଝିଅଟି ଅଶୋକା ଗୋଡରୁ ଗଡି ତଳେ ପଡିଗଲାରୁ ବୋଉ ଅଶୋକାକୁ ଗୋଟିଏ ଜୋର ଚାପୁଡା ପକେଇଦେଲା । ସେଦିନ ସେ ନ ରୁଷିଲେ ବି ଆମ ଘରକୁ ପଳାଇଆସି, ତାର ପୂର୍ବ ପରିଚିତ ସ୍ଥାନ, ଦୋତାଲାରଅଧା ସିଡି ଉପରେ ବସି ଦୁଇ ହାତରେ ମୁହଁଟିକୁ ଘୋଡାଇ ଅନବରତ କାନ୍ଦିଚାଲିଥାଏ । ବେଳେବେଳେ ସାମାନ୍ୟ କାନ୍ଦର ହେଙ୍କା ଶୁଭୁଥାଏ । ମୁଁ ଶୁଣିପାରି ଯାଇ ତାଙ୍କ ପାଖରେ ବସି ପଡି ପଚାରିଲି- ଅଶୋକା ଆଜି ପୁଣି କ'ଣ ହେଲାକି ? ସେଦିନ ସେ ନିଜେ କାନ୍ଦ ବନ୍ଦ କରି ହେଙ୍କା ଉଠା ସ୍ୱରରେ ଗଳାକୁ ଥରାଇ ଥରାଇ କହିଲା, ଅଶୋକା ଜାଣିଛ ତ ମୋ ପାଇଁ ଏ ସଂସାରରେ କେଉଁଠି ଜାଗା ନାହିଁ ।

ତୁମେ ଜାଣିଛ ମୋ ନିଜ ନନା ଆଉ ଗୋଟିଏ ନୂଆ ବୋଉକୁ ବିଭା ହୋଇଛନ୍ତି । ତାଙ୍କର ପୁଣି ଆମ କୁନି ଝିଅ, ସୁମି ସାଙ୍ଗର ଗୋଟିଏ କୁନି ଝିଅ ହୋଇଛି । ମୁଁ ଯାହାକୁ ମାମୁଁ ଡାକେ ସେ ମାମୁଁ ନୁହଁନ୍ତି, ସେ ମୋ ନନା । ତାଙ୍କର ଯେଉଁ ବଡ ଝିଅ ନିଶା ନାନୀ ,

ଟେ ମୋର ନିଜ ନାନୀ । ତାର ଦିଟା ପୁଅ । ଆଉ ଯେଉଁ ବଳି ଭାଇନା, ସେ ମୋର ନିଜ ଭାଇନା, ତାଙ୍କର ଏବେ ବିଭାଘର ହେବ । ଆଉ ସାନ ଭାଇନା ସେ ମୋତେ ଭାରି ସୁଖ ପାଆନ୍ତି । ସେ ସବୁବେଳେ ଘରେ ରହନ୍ତି, ମୋତେ ହେଲେ ସେ ଦିନେ ଆସି ତାଙ୍କ ଘରକୁ ଡାକି କରି ନିଜେ ନେଇଯାଆନ୍ତେ । ହେଲେ ଏ ବୋଉ ମୋତେ ଭାରି ସୁଖ ପାଏ, ଯେ ପୁଣି ତ ତାର ଆଉ ଗୋଟେ ଟିକି ଝିଅ ହେଲାଣି, ମୋ ସତ ନନାଙ୍କର ବି ତ ଝିଅ ହୋଇଛି । ମୋତେ ଆଉ କିଏ କାହିଁକି ନେବ ? ହେଲେ ନିଜ ବୋଉତ ସ୍ୱର୍ଗରେ ଅଛି । ସେ ମୋତେ ତା ପାଖକୁ ନେଇଯାଆନ୍ତାନି ! ଏତିକି କହି ନିଜ କୋଡରେ ମୁହଁ ମାଡି ଜୋରରେ କଇଁ କଇଁ ହୋଇ କାନ୍ଦି ଉଠିଲେ । ମୋର ସେହି ଛୋଟିଆ ମନଟା ତାଙ୍କ କଥାରେ ସତେ ଯେମିତି କ୍ଷତ ବିକ୍ଷତ ହୋଇଯାଉଥିଲା । ମୁଁ ନିଜକୁ ସମ୍ଭାଳି ନପାରି ତାଙ୍କୁ ଦି ହାତରେ ଜାକି ଧରି ତାଙ୍କ କାନ୍ଧରେ ମୁହଁ ମାଡ଼ି ଜୋରରେ କାନ୍ଦି ଉଠିଲି । ବୋଉ ତଳେ ପରିବା କାଟୁଥିଲା କି କଣ, ମୋ କାନ୍ଦ ଶୁଣି ଉପରକୁ ଉଠି ଆସି ମୋତେ ଦୋହଲେଇ ଦେଇ ପଚାରିଲା, କିଲୋ କଣ ହେଲା ? ମୁଁ ହଠାତ୍ କିଛି କଥା କହି ପାରିଲିନି । ବୋଉ କିଛି ବେଳ ଆମ ମୁହଁ ପୋଛା ପୋଛି କରି କିହିଁକି ବୁଝାଇବାରୁ ମୁଁ ଆସ୍ତେ କାନ୍ଦି କାନ୍ଦି ସବୁ କଥା କହିଲି । ବୋଉ ବି ନିଜେ କାନ୍ଦି ପକାଇ, ମତେ ଛାଡି ତାଙ୍କୁ କୋଳକୁ ଜାକି ନେଇ କେତେ ବୁଝେଇ କହିଲା ଛି କୁଆଡେ କାହିଁକି ଯିବୁ ଲୋ ! ପିଲେ, ଏମିତି କଥା କହନ୍ତିନି, ଆଉ ଦି ଚାରିଟା ବର୍ଷରେ ଶାଶୁ ଘରକୁ ଯିବୁ । ଥରେ ଶାଶୁ ଘରକୁ ଗଲେ ଭାରି ଏଠି ସମସ୍ତେ ବହୁତ ଗେଲ ଆଦର କରିବେ । ତୋ ପରି ଗୁଣର ଝିଅକୁ ତେଣେ ଶାଶୁ ଶ୍ୱଶୁର୍ ବର କେତେ ଦେଖିପାରିବେ । କାନ୍ଦନା ମୋ ମାଆ ପରା ସେତେବେଳେ ତୋ ମନ କେତେ ଖୁସି ଲାଗିବ । ସେ ଧୀରେ ଧୀରେ କାନ୍ଦ ବନ୍ଦ କରି, କୋହକୁ ସମ୍ଭାଳି ନେଲେ ।

ତହିଁ ଆରଦିନ ବୋଉ ଗଡ଼ିଆ କୁଳେ ତା ବୋଉକୁ ଏକୁଟିଆ ଦେଖି କହିଲା- ହେମ ଲୋ, କିଛି ଭାବିବୁନି, ଗୋଟେ କଥା କହିବି । ହେମ ଭାଉଜ ମୁଣ୍ଡରେ ଲୁଗାକୁ ଟିକିଏ ଟାଣି ଦେଇ ବୋଉ ପାଖକୁ ଆଉ ଟିକିଏ ଆଗେଇ ଆସି ଖୁଡ଼ୀଶାଶୁଙ୍କୁ ମାନ୍ୟତାର ସହିତ ଅତି ଧୀରେ କହିଲା- କଣ କି ? ବୋଉ କହିଲା- ଉଷାଟି ବଡ ହେଇଗଲାଣି । ତାର ବୟସ ତାକୁ ଧୀରେ ଧୀରେ ସବୁ ବୁଝାଇ ଦେଲାଣି । ଏବେ ମାର ଧର କଲେ ସେ ଭାରି ମନଦୁଃଖ କରୁଛି । ଆଉ ଯାହା ଯେମିତି କଲେ ଦୁଃଖ ନାହିଁ, ତା ଅଦେଖା ବୋଉଟାକୁ ଭାରି ମନେ ପକଉଛି । ସେ ତ ଅତି ଧୀର ସ୍ଥିର ପିଲା, ତାକୁ ଟିକେ ବୁଝା ସୁଝା କରିବୁ । ନହେଲେ କେତେବେଳେ, କୋଉ କଥା ଥାଏ । ତାଙ୍କ ବୋଉ ଆଉଟିକିଏ ବୋଉ ପାଖକୁ ଲାଗି ଆସି ଏପଟ ସେପଟକୁ ଚାହିଁ ଅତି ଧୀରେ କହିଲା- ନାଇଁମ ଖୁଡ଼ୀ, ଶାଶୁ ନଣନ୍ଦଙ୍କ ଜ୍ୱାଳା ସିନା ସହି ହୁଏନି, ଶାଶୁ ନଣନ୍ଦ ନଥିଲେ କଣ ହେଲା, ଶଶୁର ମିଶିପି ଲୋକ ହେଇ ସୁଦ୍ଧା ତାଙ୍କ ଜ୍ୱାଳା ଆଉ ସହି ହଉନି । ସେ ଘରେ ଚାରି ଚାରିଟା ଝିଅ, ହେଲାରୁ

ବୁଢ଼ା ଭାରି ବିରକ୍ତ ହେଉଛନ୍ତି । ମୁଁ କେତେ ସହିବି କହିଲ, ସେହି ଦିନଠୁ ମାଡ ଗାଳି, ଟିକିଏ କମିଯାଇଥିଲା ଅଶୋକାର ।

ପ୍ରାୟ ଚଉଦ ବର୍ଷ ବୟସରେ, ତାର ବିଭାଘର ହୋଇଗଲା । ସବୁ ଝିଅ ତ ଶାଶୁ ଘରକୁ ଗଲେ କାନ୍ଦନ୍ତି । ସେ ବି କାନ୍ଦୁଥିଲା । ମୁଁ କିନ୍ତୁ ତା କାନ୍ଦର ଅନ୍ତରାଳରୁ ଦେଖି ପାରୁଥିଲି, ତାର ଆଉ ଗୋଟିଏ ରୂପ । ମୁଁ ତା ପାଖରେ ବସି ଚୁପ ଚୁପ ତା କାନରେ କହିଥିଲି, (ଆଗୋ ଅଶୋକା କହି ମୋତେ ଯାଉଛ ଛାଡି, ମନେ ପକାଉଥିବ ଘଡିକି ଘଡି) ମୋ ଛଡା ସବୁରି ଅଜ୍ଞଣାତରେ ସେ ସାମାନ୍ୟ ହସିଥିଲେ । ସେହି ହସରେ ତା'ର ଅନ୍ତରର ସମସ୍ତ ବେଦନାକୁ ହଜାଇ ଫୁଟି ଉଠିଥିଲା ସାମାନ୍ୟ ତୃପ୍ତି । ଯେମିତି ସେହି ଦିନର ପ୍ରତୀକ୍ଷାରେ ସେ ଚାହିଁ ବସିଥିଲା । ଏବେ ଏଇ ନିଦହଜା ଅତୀତ ରୋମନ୍ଥନରେ ମନେ ପଡିଯାଏ, ପୁରାଣର କଥା । କେବେ ପିଲାଦିନେ ରାମାୟଣର ଗୋଟିଏ ଗପ ଶୁଣିଥିଲି । ସେ ଖାଲି ରାମାୟଣ ନୁହେଁ, ସେଇଟା ବିଚିତ୍ର ରାମାୟଣର ଗଳ୍ପ । ରାବଣ କୁଆଡେ ମହାଜ୍ଞାନୀ, ବଡ ରାଜନୀତିଜ୍ଞ , ଅତି ବଳଶାଳୀ, ଭାରୀ ଗର୍ବି ଓ ବଡ କବିରାଜ ମଧ ଥିଲା । ତା ରାଜ୍ୟର ଶାସନ ବଡ କଡ଼ା । ସବୁ ପ୍ରଜାମାନେ କର ଦେବାକୁ ବାଧ ହେଉଥିଲେ । କିନ୍ତୁ ମୁନି ଋଷିମାନେ ଜଙ୍ଗଲରେ ପତ୍ର କୁଡିଆରେ ରହି ଫଳ ମୂଳ ଖାଉଥିବାରୁ ତାଙ୍କ ପାଖେ କୌଣସି ଧନ କର ଦେବାକୁ ନଥିଲା ସିନା ତାଙ୍କ ଦେହର ବିଶୁଦ୍ଧ ରକ୍ତ କର ଆକାରରେ ସଂଗ୍ରହ କରାଯାଇ ସୈନ୍ୟମାନଙ୍କ ପାଇଁ ରକ୍ତ ଭଣ୍ଡାରରେ ରଖାଯାଉଥିଲା । ରାବଣ ତାକୁ ଅତି ନିରାପଦ ସ୍ଥାନରେ ଚାବି ଦେଇ ରଖି ସମସ୍ତଙ୍କୁ ଜଣାଇଦେଇଥିଲା ଯେ ଏଇ ଘରେ ବିଷ ଅଛି । ଯାକୁ କେହି ଖୋଲିବା ନିଷେଧ ।

ଦୈବାତ୍ ଦିନେ ରାବଣର ମନ୍ଦୋଦରୀ ସଙ୍ଗେ ମନାନ୍ତର ହୋଇଥାଏ । ରାବଣ କିଛିଦିନ ପାଇଁ ବାହାରକୁ ଚାଲିଯାଇଥାଏ । ମନ୍ଦୋଦରୀ ଅତି ଦୁଃଖରେ ବିଷପାନ କରିବା ଉଦ୍ଦେଶ୍ୟରେ ସେ ରକ୍ତରୁ କିଛି ପାନ କରିଦେଇଥିଲେ । କିନ୍ତୁ ସେ ତ ଋଷିମାନଙ୍କ ରକ୍ତ ଜୀବନ ସଞ୍ଚାର ନକରି କୌଣସି ମତେ ବ୍ୟର୍ଥ ହେବନି । ତେଣୁ ମନ୍ଦୋଦରୀ ଅତି ଚଞ୍ଚଳ ଗର୍ଭବତୀ ହୋଇ ଅତି ଶୀଘ୍ର କନ୍ୟା ସନ୍ତାନଟିଏ ପ୍ରସବ କଲେ । ରାବଣ ନଥିବା ଭିତରେ ଏପରି ଦୁର୍ଭାଗ୍ୟରେ ନିରୁପାୟ ହୋଇ ଶେଷରେ ମନ୍ଦୋଦରୀ ଗୋଟିଏ ବୁଦ୍ଧି ପାଞ୍ଚି ସୁନ୍ଦର ମଞ୍ଜୁଷାଟିଏରେ ଝିଅଟିକୁ ଭର୍ତ୍ତିକରି ଗୋଟିଏ ଦାସୀ ହାତରେ କିଛି ଦୂରକୁ ପଠାଇଦେଇ କହିଲେ- ରାତି ପାହିବା ଆଗରୁ ଯେଉଁଠି ପହଞ୍ଚିବୁ , ମଞ୍ଜୁଷାଟିକୁ ସେଇଠି ପୋତିଦେଇ ଆସିବୁ । ସତକୁ ସତ ରାତି ପାହିଲା ମିଥିଳାରେ, ସେଇଠି ସେ ଦାସୀ ଝିଅ ସହିତ ମଞ୍ଜୁଷାଟିକୁ ପୋତି ଦେଲା । ତାପରେ ରାଜା ଜନକ ତାକୁ ଜମି ହଳ କଲାବେଳେ, ସୀତାର ଗାରରୁ ଝିଅଟିକୁ ପାଇ ତାର ନାମ ରଖିଲେ ସୀତା । ମନ୍ଦୋଦରୀର ଝିଅ ହିସାବରେ ସୀତା ବି ରାବଣର ଝିଅ । ସୀତାଙ୍କୁ ଚୋରୀ କରିବାରେ ରାବଣ ଉପରେ ଦୋଷାରୋପ କଲାବେଳେ, ରାବଣ କହିଥିଲା- ଜବର ଦସ୍ତି ଚୋରୀ କରି ଆଣିନଥିଲେ,

ସୀତା କେବେ ରାମଙ୍କୁ ଛାଡି ଆସିନଥାନ୍ତା । ରାମ ସିନା ପିତୃ ସତ୍ୟ ପାଳି ବଣକୁ ଆସିଥିଲେ । ସୀତା ବିଚାରୀ ରଜା ଝିଅ । ବଣରେ ଅସୁର ଅସୁରୁଣୀଙ୍କ ମେଳରେ ପୁଣି ସୁପର୍ଣଖା ପରି ଅସୁରୁଣିମାନଙ୍କ ଅତ୍ୟାଚାରରେ କାହିଁକି ରହନ୍ତା ? ପୁଣି ଆଉ ଗୋଟିଏ କାରଣ ବି । କୈକେୟୀ ନିଜର ବଂଶ ରକ୍ଷା ପାଇଁ, ଦଶରଥଙ୍କୁ ରାମକୁ ବନାବାସର ବର ମାଗିଥିଲେ । କାରଣ ସୀତା ଥିଲେ ବନ୍ଧ୍ୟା । ମୋହ ସହିତ ବଶିଷ୍ଠ ଆଉ କୈକେୟୀ ଆଗରୁ ଏ ପରାମର୍ଶ କରିଥିଲେ । ତେଣୁ ମୁଁ ସୀତାଙ୍କୁ ଆଣି, ଅଶୋକ ବନରେ, ରଖିଥିଲି । ଯେଉଁଥିରେ ଶୋକ ହେବ ନାହିଁକି ବନ୍ଧ୍ୟା ଦୋଷ ରହିବ ନାଇଁ ।

ସେହି ଅଶୋକ ବନ କଥା । ଭାବିଲାବେଳକୁ ମୋର ସେହି ଅଶୋକ କଢ଼ିଖିଆ, ଅଶୋକାଟା ମନେ ପଡ଼ିଯାଏ । ଭାଗ୍ୟ ଯାହାର ବିପକ୍ଷ ତା'କୁ ବା ସାହାଯ୍ୟ ହେବ କିଏ । ଅଶୋକ ବନରେ ରହିବା ପରଠାରୁ ସୀତାଙ୍କ ଜୀବନରେ ଆଉ ସୁଖ ଆସିନଥିଲା । ମୋ' ଅଶୋକା ସେମିତି ଆଜନ୍ମ ଦୁଃଖୀ । ତାଙ୍କ ସ୍ୱାମୀର ସେ ଥିଲେ ଦ୍ୱିତୀୟ ପକ୍ଷ ସ୍ତ୍ରୀ । ହେଲେବି ତାଙ୍କ ମନରେ ଦୁଃଖ ନଥିଲା । କିନ୍ତୁ ସ୍ୱାମୀ ଥିଲେ ଭୀଷଣ ଶ୍ୱାସରୋଗୀ । ନିଜର ସଂସାର ଆରମ୍ଭରୁ, ଚାଲିଲା ତା'ର ବ୍ରତ, ଉପବାସ,ପୂଜା, ମାନତି ପ୍ରାୟ ସପ୍ତାହରେ ପାଞ୍ଚଦିନ । କିଛି ନା କିଛି ଉପବାସ ଥିବ । ଏକବାରେ ଉକ୍ତିମତି ପତିବ୍ରତା ନାରୀ ତାର ଦାନ ସବୁ କିନ୍ତୁ ପ୍ରତିଦାନ ବିହୀନ । ସ୍ୱାମୀର ତାଙ୍କ ଉପରେ ଆନ୍ତରିକତା ନଥାଏ । (କହନ୍ତି ତ, ଯେଣେ ଇଚ୍ଛା ତେଣେ ଯାଆ, ଭଗ୍ୟ ଘେନି ବୁଲୁଥାଆ ।) ଶେଷ ପର୍ଯ୍ୟନ୍ତ ସେ ଥିଲେ ନିଃସନ୍ତାନ । ମୋର ଦୁର୍ଭାଗ୍ୟକୁ କଟକ ବଡ଼ ଡ଼ାକ୍ତରଖାନାରେ, ମାସେ ଖଣ୍ଡେ ବୋଉକୁ ଜଗି ରହିବାକୁ ପଡ଼ିଥିଲା । ସେଇ ଥିଲା, ମୋ' ଅଶୋକାଙ୍କ ସାଙ୍ଗେ, ଶେଷ ଦେଖା । ମୋ' ସ୍ୱାମୀ ମଝିରେ, ମଝିରେ ଆମ କଥା ବୁଝିବାକୁ ଆସନ୍ତି ଡ଼ାକ୍ତରଖାନା । ଦିନେ ଆସି କହିଲେ, ଆଜି ତୁମ ଅଶୋକାଙ୍କୁ ଦେଖିଲି । ସେ ଗୋଟିଏ ଟିଫିନ୍ କ୍ୟାରିୟର ଧରି ଯାଉଥିଲେ । ମୁଁ ତ ତାଙ୍କୁ ଚିହ୍ନିପାରି ନଥାନ୍ତି । ସେ ମୋତେ ନମସ୍କାର କରି, ତାଙ୍କ ପରିଚୟ ଦେଇ କହିଲେ, ତାଙ୍କ ସ୍ୱାମୀ ଏଇଠି ଡ଼ାକ୍ତରଖାନାରେ ଚାଳିଶ ନମ୍ବର ବେଡ଼ରେ ଅଛନ୍ତି । ତାଙ୍କ ସ୍ୱାମୀଙ୍କର କ'ଣ ହେଇଛି, ନ କହିଲେ ବି, ତାଙ୍କୁ ଦେଖିଲେ ଜାଣିହେବ ଯେ, ତାଙ୍କ ଉପରେ ନିଶ୍ଚିତ ଗୋଟିଏ ବଡ଼ ଝଡ଼ ବୋହି ଯାଇଛି । ବୋଉ ବି ଏତିକ ଶୁଣିପାରି, ମୋତେ ବାଧ କଲା, ତୁ ଚଞ୍ଚଳ ଯା' ତା'ର କ'ଣ ହେଇଛି, ତାକୁ ଟିକିଏ ଦେଖି ଆସିବୁ । ପରେ ଆମେ ଦିହେଁ ଆସି, ତାଙ୍କ ସ୍ୱାମୀଙ୍କୁ ଦେଖିଲୁ । ସେ ବିଚାରୀ ତାଙ୍କ ସ୍ୱାମୀଙ୍କ ଗୋଡ଼ ପାଖେ ବସି ପାଦ ଆଉଁଷୁଥିଲେ । ଆମକୁ ଦେଖି, ଧଡ଼ପଡ଼ ହୋଇ ଉଠି, ଅଶୋକା ମୋତେ କୁଣ୍ଢେଇ ପକେଇଲେ । ନମସ୍କାରର ଆଦାନ ପ୍ରଦାନ ପରେ, ତାଙ୍କ ସ୍ୱାମୀ, ଟିକିଏ ଆଉଜି କରି ବସି, ମୋ'ସ୍ୱାମୀଙ୍କୁ ଚଉକିରେ ବସିବାକୁ ଅନୁରୋଧ କରି, କହିଲେ ଯେ, ମୁଁ ହଠାତ୍ କୋରାପୁଟରୁ ବଦଳି ହୋଇ, ଏଠିକି ଆସିବା ଦିନେ ଦିଦିନ ପରେ, ମୋ ଛାତିରେ କଫ ଜମି, ନିମୁନିଆଁ ହୋଇଗଲା । ଆଉ ଆମରତ କେହି ନାହିଁ । ଏଇ

ନିଜେ ଯାଇ ଇନିସେକ୍ଟରଙ୍କୁ କହି ମୋତେ ଡ଼ାକ୍ତରଖାନାକୁ ନେଇ ଆସିଲା ବୋଲି ବଞ୍ଚିଗଲି । ନହେଲେ ଆଉ ଦିନେ ଦି'ଦିନ ଡ଼େରି ହୋଇଥିଲେ ମରି ଯାଇଥାନ୍ତି । ଏବେ ଭାବୁଛି ଯିବୁଭାରି ବୋଲି । ଇଏ ଭାରି ହଇରାଣ ହୋଇଗଲାଣି । ହୋଟେଲରୁ କ'ଣ ଆଣି ଦି'ଓଳି ଖାଉଛୁ, ଏଇଠି ତଳେ ଜଗି ଶୋଉଛୁ । ମତେ ଆଉ ଭଲ ଲାଗୁନି, କେମିତି ଯିବି ରାତି ନିଦ ହଉନି । ଏତିକିବେଳେ ଅଶୋକା ମୋ' ସାଙ୍ଗେ କଥାହେଉଥିଲାବେଳେ ତାଙ୍କ ସ୍ୱାମୀଙ୍କ ସମବେଦନାଭରା କଥା ଶୁଣି, ତାଙ୍କ ଆଖିରେ ଲୁହ ଭରି ଯାଉଥାଏ । ମୁଁ ତାଙ୍କୁ ଟିକିଏ ବାହାରକୁ ଡାକି ଆଣି କହିଲି, ପୁଣି ଆଉ କାନ୍ଦ କାହିଁକି ? ମୋ' ବୋଉ ଉପର ମହଲାରେ ଅଛି ଚାଲ ଦେଖି ଆସିବ । ବ୍ରଜବାବୁଙ୍କ ଦେହ କଥା ଶୁଣି ସେ ବ୍ୟସ୍ତ ହେଉଥିଲେ । ବୋଉ ନାଁ ଶୁଣି, ତାଙ୍କର ଆଖିରୁ ଢ଼ଳ ଢ଼ଳ ଲୁହ ତଳକୁ ଗଡ଼ି ଆସୁଥିଲା । ମୋତେ କିନ୍ତୁ ଲାଗିଲା, ତାଙ୍କ ପିଲାଦିନର ଆମ ପକା ପାହାଞ୍ଚରେ ବସି, ଗଡ଼ି ଆସୁଥିବା ଲୁହଠାରୁ ଆଉ ଏ ଲୁହ ବହୁତ ତଫାତ୍ । ଏ ଲୁହ ଆଉ ବେଦନାର ନୁହଁ ଆଶ୍ୱାସନାର ।

ତା'ପରେ ଆଉ ଦେଖା ନହେଲେ ବି, ଶୁଣିଥିଲି ତାଙ୍କର ଗୋଟିଏ ସାନଯାଆ ଗୁଡ଼ିଏ ପିଲାଙ୍କୁ ଛାଡ଼ି, ମରିଯାଇଥିଲା । ଅଶୋକା ତା'ର କୋଡ଼ ପୁଅଟିକୁ ଆଣି ପାଳି, 'ଟୁକୁ ବୋଉ' ଡ଼ାକ ପାଇଥିଲେ । ସେ ଜୀବନରେ ଦିନେ ସ୍ୱାମୀ ନିନ୍ଦା କରିନଥିଲେ । ଏମିତିକି କିଏ ଯଦି କେତେବେଳେ, ତାଙ୍କ ସ୍ୱାମୀର ଦୋଷଗୁଣ କହିଦିଏ ସେ ନିଜ କାନରେ ହାତ ଦେଇ, କହନ୍ତି ଛି, ସ୍ୱାମୀ ନିନ୍ଦା ଶୁଣନ୍ତିନି । ତୁମେ ଟିକିଏ ତାଙ୍କ କଥା ଭାବିଲ ଦେଖି, ପ୍ରଥମରୁ ସ୍ତ୍ରୀମଲା, ଦୁଇଟା ବିଭା ହୋଇ ପିଲାଟିର ମୁହଁ ଦେଖିଲେନି । ସାରା ଜୀବନ ରୋଗରେ ସନ୍ତୁଳି ହେଲେ । ଆଉ କ'ଣ କରନ୍ତେ ଯେ !

ତା'ର ସେହି ସ୍ୱାମୀ, ଆଉ ବେଶୀଦିନ ବଞ୍ଚିନଥିଲେ । ଶେଷ ବେଳକୁ ଅଶୋକା ପୁଅଟିଏ ଆଣି ସ୍ୱାମୀଙ୍କ କୋଡ଼ରେ ଦେଇଥିଲେ । ଆଉ ମା'ଖିଆ ପିଲା ଏବଂ ସ୍ୱାମୀଙ୍କ ସେବାରେ, ତାଙ୍କ ଜୀବନ ବିତାଇ ଦେଇଥିଲେ । ଯାହା ହେଉ ପୋଷ୍ୟ ପୁଅ ହେଲେ ବି, ଅଶୋକ କନ୍ଦୀର ଆଶୀର୍ବାଦରୁ ହେଉ, କି ଭଗବାନଙ୍କ ଦୟାରୁ ହେଉ, ଶେଷ ଜୀବନଟି ଶାନ୍ତିମୟ ଥିଲା । ସେଇ ଅଲୋଡ଼ା ଦେହଟିର ।।



# ଗୋଲାପ

ଏମିତି କେତେଗୁଡ଼ିଏ ସାଙ୍ଗଙ୍କର ନିଦାରୁଣ ମୃତ୍ୟୁର ଭୟଙ୍କର ନିର୍ଯ୍ୟାତନା ଭିତରୁ, ନିଜକୁ ଫେରାଇ ଆଣି, ଅନ୍ୟ କଥା ଚିନ୍ତା କଲାବେଳକୁ ଦିଶିଯାଏ ନମରି ହଜିଯାଇଥିବା, ଗୋଲାପର ଶିଠୁଆ ମୁହଁଟା । ସେତେବେଳର ଢ଼ଳ ଢ଼ଳ ଦରଫୁଟା ଗୋଲାପ ପାଖୁଡ଼ା ପରି ଚଳଚଞ୍ଚଳ ଗୋଲାପଟା, ତାଙ୍କ ସାଙ୍ଗେ କେଉଁଦିନ, ଗୋଲାପ ପାଖୁଡ଼ା ପାଟିରେ ଦିଆଦେଇ ହୋଇ ଗୋଲାପ ବସିଥିଲି ମନେ ନାହିଁ । ମନେ ନାହିଁ ବି ତାଙ୍କ ସାଙ୍ଗେ କେଉଁ ବୟସରେ କେଉଁଦିନ ପ୍ରଥମ ପରିଚୟ ହୋଇଥିଲା । ସେ ତ ଆମ ଦାସ ଘରର ନାତୁଣୀ । ଆରପଟ ସାହିର ଆମ ଘର ସିଧାକୁ ଦଶ ବାରଟା ଘର ଛାଡ଼ି, କାଠ କରତ ଦକ୍ଷିଣ ଆଟୁର ଚାଳ, ଆଉ ସିମେଣ୍ଟ ଲଗା ପଥର ପିଣ୍ଡା ଘରର ଝିଅ । ଆଉ ତାଙ୍କ ଘର ନିୟମ ନିଷ୍ଠା ଏତେ, ଯେ, ଆମ୍ଭର କଂଗ୍ରେସିଆ ଘର । ଆମ ଘର ଭିତର ଦେଇ ବାଉରି ଯାଅ ଆସ କରନ୍ତି ବୋଲି, ତାଙ୍କ ଘର ମାଇପେ ଆମକୁ ଛୁଅନ୍ତିନି । ଗୋଲାପ ଘରିକା ଖେଳି ବୁଲି ଫେରିଲେ, ଲୁଗାଖଣ୍ଡିମାନ ବାଡ଼ିଘର କାଠିରେ ଥୋଇଦେଇ, ଘରେ ଗାମୁଛା ପାଲେଟି କାରବାର ହୁଅନ୍ତି ।

ତାଙ୍କ ବୁଢ଼ୀ ପିଇସୀ ସୁନାନାନୀ, ବାଳଶ୍ରୀ ବିଧବା କାଳରୁ, ୟାଙ୍କ ଘରେ ରହିଯାଇଛନ୍ତି । ସେ ପାହାନ୍ତିଆରୁ ବଡ଼ ପୋଖରୀକୁ ଗାଧୋଇ ଯାଆନ୍ତି ଯେ, ପାଣିଗରେ ଧରି ଆସିଲା ବେଳକୁ, କୂଳରେ ଯଦି ଅଇଁଠା ଦାନ୍ତକାଠି ଖଣ୍ଡେ ମାଡ଼ି ପକାନ୍ତି, ତେବେ ସେ ଗରା ପାଣି ଢ଼ାଳି, ଲୁଗା ଧୋଇ ଆଉଗରେ ପାଣି ଆଣି, ଯେତେବେଳେ ଆସିଥାନ୍ତି ପଛକେ, ପୁଣି କେଉଁଠି ପତର ସାଙ୍ଗରେ ଛିଣ୍ଡା କନା ଖଣ୍ଡେ ମାଡ଼ି ପକେଇଲେ, ସେ ପାଣି ଗରାଟି ସେଇଠି ଅଜାଡ଼ି, ପୋଖରୀକି ଫେରି ଗାଧେଇ ପୁଣି ପାଣି ଆଣିବେ । ଏମିତି ଦିନେ ଦିନେ, ଓଳିଏ ଗାଧୋଇ ଗରେ ପାଣି ଆଣିବାରେ ବିତିଯାଏ । ପଛରେ ଆଖିକୁ ଆଉ ଭଲ ଦିଶିଲାନି ବୋଲି, ଲୋକେ କହନ୍ତି (ଅତି ନିୟମ କରେ ଯିଏ, ଆଖି ଫୁଟି ମରେ ସିଏ)

ଯାହାହେଉ ସୁନା ନାନୀଙ୍କ ନିୟମ ନିଷ୍ଠାକୁ ଗୋଲାପଙ୍କ ନନା, ଦଦେଇ ବୋଉ, ଦେଠେଇ ଭାଇନାମାନେ ସମସ୍ତେ ମାନି ଚଳିଲାବେଳେ, ଗୋଲାପ ଘରୁ ଗୋଡ଼ କାଢ଼ିଲେ, ଏକବାରେ ବ୍ୟତିକ୍ରମ । କୋଉ ବଣରୁ କୋଳି ତୋଳା ହୁଏତ, କାହା ସାଙ୍ଗେ ନଇରେ ମାଛ ଧରା ହୁଏ । କୋଉ ଭୋଇ ଘରେ ପଶି ତା' ଚାଳରୁ ବନ୍‌ଶୀ ଆଣି, ଜିଆ ଖୋଳା

ହୋଇ, ଗୁଛା ହୋଇ, ନଈରେ ବନ୍‌ଶୀ ପଡ଼ିବାରେ ବାଧା ନଥାଏ । ଗୋଲ୍ଲାକ ସାଙ୍ଗ ଏକାଠି ହେଲେ, ଧରାଟା ସରା । କେତେବେଳେ ଛାତ ଉପରେ ଡୁଡୁ ଖେଳ ହେଲାଣି ତ, କେବେ ଦୋତାଲା ଘରେ ଅନ୍ଧାର ଗୁଡ଼ି ଖେଳ । ଆଉ ଗୋଲାପ କଥାକହିଲାବେଳେ ସତେ ଯେମିତି ପାଟିରେ ବାଟୁଳି ବାଜିବନି । କୁଆଟାକୁ ଭୁଆଟା କହି, ଏମିତି ଗପିଯିବେ ଯେ, ଅଧେ ସତ ହେଲେ, ଅଧେ ମନଗଢ଼ା । କିଏ ତାଙ୍କ କଥାରେ ବିରକ୍ତ ହୋଇଯାଏ ତ, କିଏ ହସି ହସି ଗଡ଼ିଯାଉଥିବ । ଲମ୍ବା ଗପଟିଏ କହିଦେଇ ସାରି, ହସି ହସି କହିବେ, ମୋ' କଥା କ'ଣ ସତ କରୁଛ କି ? ଖାଲି ମିଛ ନା ।

ହେଲେ ସେ ବିଚାରିଟା ଗୋଟେ ଘାଟାରେ ପଡ଼ିଗଲା । ତା'ଶାଶୁଟା ତାକୁ ଜମା ବାପଘରକୁ ଛାଡ଼େନି । ଏଣେ ଗୋଲାପର ବାପ ନରିମିଶ୍ରେ ଏକନମ୍ବର ଟାଉଟର । ଖାଇବା ପିଇବାରେ ଭାରି ସଉକ । ସାହି ଭାଇରେ କିଏ ମଲାକି, କାହାର ନିମିତ୍ତ ହେଲା, ଜବରଦସ୍ତି ତା'ଘରେ ପଶି, ଲମ୍ବା ତାଲିକା କରିଦେବେ ନରି ମିଶ୍ରେ । କିନ୍ତୁ ତା'ପିଲେ କେମିତି ଚଳିବେ, ସେ ଲୋକଟିର ଭବିଷ୍ୟତ କ'ଣ ହେବ ? କିଛି ନଭାବି, ଆଗ ଖାଇବା ପିଇବାର ଉତ୍ତମ ବ୍ୟବସ୍ଥା, କରେଇ ନେବା ତା'ଙ୍କର କାମ । ଏହିପରି ମାମଲତକାର ଲୋକକୁ, କେହି ବି ବାଧା ଦେଇ ପାରନ୍ତିନି । ସେହି ନରିମିଶ୍ରେ ତାଙ୍କ ଝିଅ ପାଇଁ ବର ଖୋଜି ଖୋଜି ଯାଇ ନରସିଂହ ପୁର ଶାସନର ଜଣେ ସାଆନ୍ତ ବ୍ରାହ୍ମଣ ଘରେ ପହଞ୍ଚିଲେ । ଟୋଇଁଟି ଦେଖିବାକୁ ଭାରି ସୁନ୍ଦର । ବିଧବା ମା' ଗୋଟିଏ ବୋଲି ପୁଅ । ପୁଅର ମାମୁଁଘର ଭିଙ୍ଗାରପୁର ଚଉଧୁରୀ ଘର । ଦାଣ୍ଡବାଡ଼ି କୋଡ଼ିଏ ନଡ଼ିଆ ଗଛ ସହିତ, ମା'ର ବାପଘରୁ ପାଇଥିବା, ସମ୍ପତ୍ତିର ଆୟରେ, ମା'ପୁଅ ବର୍ଷକ ଚଳିଲା ପରି । ପୁଣି ଶାସନିଆଁ ଗାଆଁ ତ । ପୁଅର ମେଳା-ମଉଜ, ସାଙ୍ଗ-ଭାଙ୍ଗ, ପାନ-ପାଚିଲା ଗାମୁଛା ଏଇଥିରେ ସବୁ ଭାରି ସଉକ । ପ୍ରାୟ ଦାଣ୍ଡ ପିଣ୍ଡାରେ ଦୁଇ ଆଣ୍ଠୁକୁ ଯୋଡି, ଅଣ୍ଟାରେ ପାଚିଲା ଗାମୁଛାଟିକୁ ଭିଡି ଦି ନଳି ଗୋଡ ଉପରେ ଗୋଟିଏ ବଡ ଫାଶ ପକାଇ, ଧୋବ ପଇତା, ଚିତା ସାଙ୍ଗକୁ ସାନଚୁଟିଟିଏ ରଖି, ବସି ପ୍ରାୟ ଝୁଲୁଥାନ୍ତି । (କହନ୍ତି ତ ବସି ଖାଇଲେ ନଈବାଲି ସରେ)ସେହି ଧାନ ଜମି ଆଉ ନଡିଆ ଗଛ କେତୋଟା । ପୁଣି ବୋହୂଟିଏ ଅଇଲା । ଏଇ ତିନି ପ୍ରାଣି କୁଟୁମ୍ବଙ୍କୁ କେତେ ଚଳେଇବ ? ( ପୁଣି ଯୋଗକୁ ଶାଶୁ ମଲା, ବୋହୂ ବେଇଲା ଯୋଉ ତିନି କି ସେହି ତିନି । ବୁଢ଼ୀର ଜମିରୁ କିଛି ବିକ୍ରୀ କରାଇ ଖୁବ୍ ଧୁମ ଧାମରେ ସୁଦ୍ଧ ଘରଟିକୁ ସାରି, ନରି ମିଶ୍ରେ ପୋଖତୀ ଘରପାଇଁ ଝିଅଟିକୁ ନିଜ ଘରକୁ ଘେନି ଆସିଲେ । ଝିଅର ପୁଅଟିଏ ହେଲା ସିନା କିନ୍ତୁ ଏକୁଟିଆରେ ଯାଇ ଶାଶୁ ଘରେ ବା ଚଳିବ କେମିତି ?ଜମି ବି ତ କିଛି ବିକ୍ରୀ ହୋଇଯାଇଛି । ତେଣୁ ବାପ ଘରୁ ଆଉ ଯିବାର କି, ଟୋଇଁ ଝିଅକୁ ନେବାର ନାଁ ଧରିଲେନି ।

ଟୋଇଁ ବା କେତେଦିନ ହାତରେ ରାନ୍ଧି ଖାଇବେ ? ସେ ପ୍ରାୟ ବେଳା ଅବେଳାରେ ଶ୍ୱଶୁର ଘରକୁ ଯିବା ଆସିବା ଆରମ୍ଭ କଲେ । ବେଳେ ବେଳେ ମୁଣ୍ଡବିନ୍ଧା କି ପେଟ ଖରାପ

ବାହାନା କରି କିଛି କିଛି ଦିନ ଏକକାଳୀନ ରହିବାକୁ ଆରମ୍ଭ କଲେ । ଶ୍ୱଶୁରଙ୍କର ତ ଏକାନ୍ନବର୍ତ୍ତୀ ପରିବାର । ଶ୍ୱଶୁରଙ୍କର ସେମାନେ ଦୁଇ ଭାଇ । ବିଧବା ନାନୀ, ସ୍ତ୍ରୀ, ଭାଉଜ, ବଡ଼ ଭାଇଙ୍କର ଗୋଟିଏ ପୁଅ, ଗୋଟିଏ ଝିଅ, ନିଜର ଗୋଟିଏ ପୁଅ, ଦୁଇ ଝିଅରୁ ବଡ ଝିଅଟି ମରି ଦୁଇଟି ପିଲା ଆଣଙ୍କ ପାଖରେ ଥାଆନ୍ତି । ଏମିତି ଗୋଟିଏ ଭରପୁର ପରିବାରରେ ଜୋଇଁ ତ ପରପୁଅ । ସବୁଦିନ ଘରେ ରହିବାରୁ, ସାହି ପଡିଶାରୁ ଆରମ୍ଭ କରି ଘର ଲୋକମାନେ କିଏ କେମିତି ଟୀକା ଟିପ୍ପଣୀ କଲେ ।

ସେଇ ପିଇସୀ ସୁନାନାନୀ, ଆଖିକୁ ଭଲ ନ ଦିଶିଲେ ବି ପାଟିଟା କେତେବେଳେ ବନ୍ଦ ହୁଏନି । ସେ ଜାଣ ଘରର ମୁରବୀ । ତାଙ୍କ ବେଳାରେ ତାଙ୍କରଏଡେ ଦାପଟ ଥିଲା ଯେ ଯାହା କହନ୍ତି ଗର୍ଭିଣୀ ଗାଇ ବାଟ ଛାଡିଦେଉଥିଲେ । ବଡ଼ ଭାଇର ପଛ ମାଇପ ଯେତେବେଳେ ବୋହୂ ହୋଇ ଆସିଲା, ସେ କରେଇରୁ ସବୁ ଚକୁଳି କାଢୁ କାଢୁ ହାତ ତାତିଗଲା ବୋଲି ଚୁଲି ମୁଣ୍ଡରୁ ପଳେଇ ଆସିବା ଦେଖି ସୁନାନାନୀ ତା'ର ହାତଟିକୁ ପୁରା ତାତିଲା କରେଇରେ ଘଷି ଦେଇଥିଲେ । ସେ ହାତ ଭଲ ହେଲା ପରେ ଆଉ ଜୀବନରେ କେବେ ତାତି ନଥିଲା ।

ସାହି ଭିତରେ ତାଙ୍କ ଘରର ବାଡି ପିଣ୍ଡା ଢ଼ିଙ୍କି ଶାଳ ବାଡିଘର ଯେତେ ମାଟି ଘର ଅଛି, ସବୁ ମାଟି ଗୋବରରେ ଲିପା ହୋଇ ଗିଲ ଘଷିଲାପରି ଚିକ୍କଣ ହୋଇଥାଏ ।ତାଙ୍କ ଘର ଝୋଟୀ ଚିତା ସବୁରି ଘର ତହୁଁ ବଳି ସୁନ୍ଦର । କେଉଁଥିରେ ବାହୁନିବାକୁ ନଥାଏ । ଆଉ ମିଣିପେ ଖାଇ ବସିଲା ବେଳେ, ମୁରୁଜ ପଡି ଦି ଖଣ୍ଡ ପତଳା ପିଢ଼ା ପଡିବ । ତା ପାଖେ ଗୋଟିଏ ଗୋଟିଏ ଶାମୁଶେଇରେ ପାଣି ଭର୍ତ୍ତି ହୋଇ ଥୁଆହୋଇଥିବ, ଯେ ଥାଳି ଗିନା ଥାଳିଆ ସେହି ଶାମୁଶେଇ ମିଶି ସୁନା ପରି ଝଟକୁଥିବ । ଆଉ ସେହି ପିଢ଼ା ପାଖେ ଖଣ୍ଡିଏ ଦି ହାତିଆ ବେତ ବାଡି ଖଣ୍ଡିଏ ସରୁ ତାଳପତ୍ରରେ ବୁଣା ଗୋଟିଏ ଛୋଟିଆ ବିଞ୍ଚଣା ବିରାଡି ଆଉ ମାଛିଙ୍କୁ ତଡିବାକୁ ଥୁଆ ହୋଇଥିବ । ଆଉ ଚାଳ କାମେଡାରେ ଗୋଟିଏ ଛୋଟ ବାଉଁଶ ଚାଙ୍ଗୁଡିରେ ସରୁ ସରୁ ଖଡିକା ଚଞ୍ଚାହୋଇ ଟଙ୍ଗା ହୋଇଥିବ । ମୁହଁ ଧୋଇଲା ପରେ ଦାନ୍ତ ଖୁଣ୍ଟିବାକୁ ଏଇ ସବୁ ଠିକଣା କେବଳ ସୁନାନାନୀ ପାଇଁ । ଏପରି ପରିପାଟି ଘର ଗାଁରେ ଦେଖିବାକୁ ମିଳିବନି । ସେହି ସୁନା ନାନୀ କେମିତି ସହନ୍ତେ ? ସବୁବେଳେ ଝିଆରୀ କାନ ପାଖେ ଗୁରୁଗୁରୁ ହୁଅନ୍ତି । ଆଲୋ ! ଯାହା ହେଲେ ଶ୍ୱଶୁର ଘରେ ଜୋଇଁ କୁକୁର ନାଁ ଆଉ... ।

ଯାହାହେଉ ଠିକ୍ ସେତିକି ବେଳକୁ ବିରାଡି କପାଳକୁ ଶିକା ଛିଣ୍ଡିଲା ପରି ନରି ମିଶ୍ରଙ୍କ ଜମିକି ଲାଗି ଆଉ ଜଣଙ୍କର ଖଣ୍ଡେ ସରସା ଜମି ବିକ୍ରୀ ହେବାର ଥିଲା । ଗୋଲାପଙ୍କ ନନା ,ଝିଅକୁ ବହୁତ ଫୁସୁଲା ଫୁସୁଲି କରି ଜୋଇଁଙ୍କୁ ବୁଝାଇବାକୁ କହିଲେ । ସେହି ଜମି ଖଣ୍ଡି ଝିଅ ନାଁରେ କିଣିବା ପାଇଁ ଝିଅ ଜୋଇଁଙ୍କୁ ବୁଝା ବୁଝି କରି ଜୋଇଁର ବାକି ସବୁ

ସମ୍ପତ୍ତି ଘର ଡିହ ବିକା ହୋଇଗଲା । ଯୋଗକୁ ସେ ଲୋକର ଜମି ବିକା ହୋବାର ନୋହିଲା । ପୁଣି ସେତିକି ବେଳେ ଖବର ଆସିଲା ଯେ ଗୋଲାପଙ୍କର ଯୁଦ୍ଧ ବିଭାଗରେ ଯାଇଥିବା ଭାଇ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହୋଇ ଦିଲ୍ଲୀରେ କେଉଁ ଡାକ୍ତରଖାନାରେ ଚିକିତ୍ସିତ ହେଉଛନ୍ତି । ସୈନ୍ୟ ବିଭାଗରେ ଚାକିରୀ କରିଥିବା ହେତୁ ଭଲ ଚିକିତ୍ସା ପାଇ ଦୁରାରୋଗ୍ୟରୁ ମୁକ୍ତ ହେବା ସଙ୍ଗେ ସଙ୍ଗେ ଚାକିରୀରୁ ମୁକ୍ତ ହୋଇ ଗଲେ । ନନା ଦିଲ୍ଲୀ ଯାଇ ସାଙ୍ଗରେ ପୁଅକୁ ଧରି ଆସିଲା ବେଳେ, ଡାକ୍ତରଙ୍କ ଠାରୁ ଖାଦ୍ୟ ପେୟର ଗୋଟିଏ ଲମ୍ବା ତାଲିକା ଧରି ଆସିଥିଲେ । ଯାହାକି ଯକ୍ଷ୍ମା ରୋଗୀ ପାଇଁ ଅପରିହାର୍ଯ୍ୟ ବୋଲି ଡାକ୍ତର ବୁଝାଇ ଦେଇଥିଲେ । ଯାହାହେଉ ସେତେବେଳେ ଗୋଲାପ ନନାଙ୍କ ହାତରେ ଜ୍ୱାଇଁଙ୍କର ଜମିବିକା ନଗଦ ଟଙ୍କାଟି ଥିଲା । ତେଣୁ ବିଶେଷ ଅସୁବିଧା ପୁଅର ଜୀବନରକ୍ଷା ପାଇଁ ହେଲାନି ସିନା, ଝିଅର ସାରା ଜିବନଟି ଧ୍ୱଂସ ହୋଇଗଲା କହିଲେ ଚଳେ ।

ସେ ଜ୍ୱାଇଁ ବି ଶ୍ୱଶୁର ଘରେ ରହି କୁକୁର ପରି ପ୍ରତିବର୍ଷ ଗୋଟିଏ ଲେଖାଏଁ କରି ପାଞ୍ଚୋଟି ପୁଅ ଜନ୍ମ କରେଇଲା ବେଳକୁ ଗୋଲାପଙ୍କ ଦୁର୍ଦ୍ଦଶା କହିଲେ ନସରେ । ସେହି ପିଲା ଦିନର ଏତେ ହସ ଖୁସିଆ ଗୋଲାପଟା ବଡ ପୋଖରୀ ଗାଧୋଇ ଯିବା ବାଟରେ ଦେଖାହେଲେ ବହୁତ କାନ୍ଦେ । ବଡ ଲାଜ ଲାଜ ହୋଇ କହେ, ମୋତେ ଆଉ କାହା ଆଗକୁ ଆସିବାକୁ ଇଚ୍ଛା ହେଉନି ଲୋ ଗୋଲାପ ? ଦେହରେ ତ ଆଉ କୋଉଠି ରତିଏ ହେଲେ ସୁନା ନଥାଏ । ଖାଲି କୋତରୀଆ ପାଣିମରା ପାଣିକାଚ ଗଣ୍ଡାକ ପ୍ରାୟ ଦିହର ରଙ୍ଗ ସଙ୍ଗେ ମିଶିଯାଇଥାଏ । ସତେ ଅବା ସ୍ୱାମୀ ଜିଇଁ ଥାଇ ସ୍ତ୍ରୀ ରାଣ୍ଡ । ଦେହର ଦରସିଝା ଚମଡା ଯେ କି ନିଆଁରେ ନୁହେଁ କି ଖରାରେ ନୁହେଁ କେବଳ ମନର ତାତିରେ ଲୋଚା କୋଚା ହୋଇ ପାଉଁଶିଆ ପଡିଯାଇଥାଏ । ଚିରା ଓଦା ଲୁଗା ଖଣ୍ଡକରେ ଦେହ ମୁଣ୍ଡକୁ ଘୋଡାଉ ଘୋଡାଉ ବିକଳରେ କହନ୍ତି- କୋଉଠି ଯାଇ ମୂଲ ଲାଗନ୍ତି ହେଲେ, ମଜୁରୀ ପଇସାରେ ଚାଉଳ କିଣି ରାନ୍ଧି ମୁଁ ପେଜ ପିଇ ପିଲାଙ୍କୁ ଗଣ୍ଡେ ଲୁଣ ଭାତ ଦେଇ ଚଳିଯା'ନ୍ତି ସିନା , ଆଉ ଏଠି ରହନ୍ତିନି । ସତକୁ ସତ ଭଗବାନ ଦିନେ ତାଙ୍କ ଗୁହାରୀ ଶୁଣିଲେ ।

କିଛି ଦିନ ପରେ ତାଙ୍କ ସ୍ୱାମୀ ନିରୁଦ୍ଦିଷ୍ଟ ହୋଇଗଲେ । ( ବନ ପୋଡିଗଲେ ସମସ୍ତେ ଜାଣନ୍ତି, କିନ୍ତୁ ମନ ପୋଡିଗଲେ କେହି ଜାଣିବାର ଉପାୟ ନଥାଏ ) ଗୋଲାପ ବି କାହାକୁ ଜଣାଇ ଦେବାକୁ ଚାହୁଁ ନଥିଲେ । ସ୍ୱାମୀ ଥିବା ଦୁଃଖରୁ ସ୍ୱାମୀ ନଥିବା ଦୁଃଖ ତାଙ୍କୁ ଭିତରେ ଭିତରେ ଜାଳିପୋଡି ଦେଉଥାଏ । ଏପରି ଅଯାଗା ଘା' ନିଜେ ଦେଖିହୁଏନି କି କାହାକୁ ଦେଖାଇ ହୁଏନି । ଘରର କାମ ଦାମରେ ଟିକିଏ ଖିଲାପ ହେଲେ ଅତ୍ୟାଚାର ବି ସହିବାକୁ ପଡୁଥାଏ । କେବଳ ତାଙ୍କ ବୋଉ ଯାହା ଟିକିଏ ସହାନୁଭୂତିରେ ଝିଅକୁ ଆଶ୍ୱାସନା ଦିଅନ୍ତି । ସେ ବା କ'ଣ କରିବେ, ଏପଟେ ଝିଅ ସେପଟେ ପୁଅ । ଝିଅର ଜମି ନ ବିକିଥିଲେ ବୋଧେ ପୁଅ ବଞ୍ଚି ନଥାନ୍ତା । କିନ୍ତୁ ସେଥିପାଇଁ ବାପକୁ କିଛି କହି ପାର ନ୍ତିନି । କି ଝିଅର ଦୁଃଖ ସହିପାରନ୍ତିନି ।

ପ୍ରଭୁଙ୍କ ଦୟାରୁ ଦିନେ ଗୋଲାପ କାହାଠାରୁ ଖବର ପାଇଲେ ଯେ ତାଙ୍କ ସ୍ୱାମୀ ନିଶ ଦାଢ଼ୀ ବଢ଼ାଇ ଭୁବନେଶ୍ୱର ଲିଙ୍ଗରାଜଙ୍କ ମନ୍ଦିରରେ ଯୋଗାଣିଆ କାମ କରି ନିଜକୁ ଲୁଚାଇ ରଖିଛନ୍ତି । ଯା ଭିତରେ କୋଡ ପୁଅଟି ବି ମରି ଯାଇଥିଲା । ବଡ ଦୁଇ ପୁଅଙ୍କୁ ବାପ ଘରେ ଛାଡି ଚାଲି ଯାଇଥିଲେ ଗୋଲାପ ତାଙ୍କ ସାନ ପିଲା ଦିଓଟିଙ୍କି ଧରି ସେହି ଭୁବନେଶ୍ୱର । ମନ୍ଦିରରେ ସ୍ୱାମୀଙ୍କ ସନ୍ଧାନ ପାଇ ଆଉ ଫେରି ନଥିଲେ ଘରକୁ । ସେଇଠି କେଉଁଠି ଖଣ୍ଡିଏ ଘରଟିଏ ଜବର ଦଖଲରେ ବି ପାଇ ପାରିଥିଲେ । ଏଣେ ବାପଘରେ ପୁଅ ଦିଓଟି ବି ଆସ୍ତେ ଆସ୍ତେ ପାରି ଯାଇଥିଲେ । ସାଧାରଣିଆ ଚାକିରୀ ଖଣ୍ଡିଏ ଲେଖାଁଏ କରି ବାପ ମାଙ୍କ ସଙ୍ଗେ ଆସ୍ତେ ଯାଇ ସାମିଲ ହୋଇ ଯାଇଥିଲେ । ପରେ ଗୋଲାପ ବିଧବା ହୋଇଯାଇଥିଲେ ସିନା, ଆଉ ବୋଧେ ଅଭାବ ଭୋଗୀ ନଥିଲେ । ପରେ ଅଚଳ ହୋଲାପରି ମୋଟା ହୋଇ ଯାଇଥିଲେ । ଏଇ ସବୁ ମୋର ଶୁଣାକଥା । ଆଉ କେବେ ଗୋଲାପଙ୍କୁ ଦେଖିବାର ସୁଯୋଗ ପାଇନି । ତଥାପି ପିଲା ଦିନର ସେହି ହଜିଲା ସାଙ୍ଗଟାକୁ ଏବେ ବି ବେଳେ ବେଳେ ମୋର ଏଇ ନିଦୁଅ ମନଟା ଖୋଜି ପକାଏ ସେହି ବସନ୍ତର ଦରଫୁଟା ଗୋଲାପଟାକୁ । ପିନ୍ତୁ ତା ବଦଳରେ ଆଖି ଆଗରେ ନାଚିଯାଏ, ନିପଟ ବୈଶାଖ ଝାଞ୍ଜିରେ ପିଚି ହୋଇ ହୋଇ ଡେମ୍ଫରେ ଲାଗିଥିବା ଦରଫୁଟା ପାଖୁଡା ଗୁଡାକ । ଜନ୍ମ ସ୍ଥାନରୁ ମୁକ୍ତି ପାଇବାର ଆତ୍ମା ଚିତ୍କାର ବି ମୋ କାନକୁ ଶୁଭେ । ମନକୁ ଭୁଲାଇବାକୁ ଆଉ ଯାହାକୁ ମନେ ପକାଇଲେ ବି ଗୋଲାପଙ୍କର ସେଇ ଦରସିଝା ଦେହଟାକୁ ମନରୁ ପୋଛି ଦେବାକୁ ଚେଷ୍ଟା କରି ବି ହାରିଯାଏ ।।



# ବଉଳ

''ମନେ ପଡେ ସାଙ୍ଗ ବଉଳ ଲୋ !
କାନି ଖିଅ ଧରା ଗରାରେ ପହରା
ନଈ କୂଳ ତୁଠ ଗହଳ ଲୋ !''

ମୁଁ ପିଲାଦିନୁ ଭାରି ବୋଉ ସୁହାଗିଆ ଝିଅ । କେତେ ବଡଟେ ହେବାଯାଏ ସବୁବେଳେ ବୋଉ କାନି ଧରି ତା ପଛେ ପଛେ ଲସର ପସର ହେଉଥିବି । ଟିକିଏ ବୋଉ ଶୋଇପଡୁ ପଡୁ ତା କୋଡରେ ପଶି ଏମିତି ଓପାଦରେ ବୋହିଯିବି ଯେ ଖରାଦିନେ ବୋଉ ବିରକ୍ତ ହୋଇ କହିବ, ଓହୋ, ତୁ ଗୋବର ପରି ମୋ ଦେହରେ ଲେସି ହୁଅନା ଭଲା । ସେ ମୋତେ ଗୋବର କହୁ କି ତାହାଠୁ ନିକୃଷ୍ଟ ଆଉ କିଛି କହୁ, ମୁଁ କିନ୍ତୁ ନଛୋଡ ବନ୍ଧା । ତାକୁ ଛାଡି ଦଣ୍ଡେ ରହିପାରେନା ।

ସେଇଥି ପାଇଁ କି କଅଣ ମୋର ଏହି ମା ଛେଉଣ୍ଡ ସାଙ୍ଗ ଗୁଡାକ ମୋ ମନକୁ ସବୁବେଳେ ଦୋହଲାଇ ଦିଅନ୍ତି । ମୋରି ସାଙ୍ଗ ଅଶୋକାଟା ଜନ୍ମରୁ ମା କଣ ଜାଣିଲାନି । ଆଉ ଅଭଡା ବା କେତେ ବରଷ ଚାରି କି ପାଞ୍ଚ ହେବ, ବୋଉ ବୋଉ ବୋଲି ମଶାଣି ଭୂଇଁକି ଦରାଣ୍ଡି ପକାଉଥିଲା । ଗଙ୍ଗାପାଣିଙ୍କ କଥା ତ ଛାଡ । ଅଭଡା ତୋଡାଣି ପଥୁରି ଥୋଇ ଦେଇ କାଛରେ ମୁହଁମାଡି, ସେଇ ଯେଉଁ କରୁଣ କାନ୍ଦଣା । କହିଲ ଭଲା ଏ ମା ଖିଆ ସାଙ୍ଗ ଗୁଡାକଙ୍କ କଥା ମତେ କେତେ ବାଧୁ ନଥିବ । ଆହା ! ବୋଉ ବୋଇଲେ କି ପଦାର୍ଥ କି ? ସେ କଥା ଭାବିଦେଲେ, ମୋ ସାଙ୍ଗ ଗୁଡାକଙ୍କ ପାଇଁ ପିଲାଦିନରୁ ମୋ ଛାତି ବିଦାରୀ ହୋଇଯାଏ ।

କିନ୍ତୁ ଏଇ କୋଦେଇ ଖୁମୁଳି ନିଆସୀଟା ସବୁଠାରୁ ଅଲଗା । ଇଏ ବୋଉ ପେଟରୁ ବାପକୁ ଖାଇଦେଇଛି । କିନ୍ତୁ କେବେ ବାପ ପାଇଁ ପରାୟ କରେନି କି ବାପ ପାଇଁ କେବେ ମୁହଁ ଶୁଖାଏନି । ଲୋକେ କହନ୍ତିନି, ଘୋଡା ଚଢ଼ା ବାପ ପଛେ ନଥିବ, ଶାଗ ତୋଳି ମା ଥିବ । ସେ କୁଆଡେ ବାପ ମରିବାର ସାତ ମାସ ପରେ ଜନ୍ମ ହୋଇଥିଲା ବୋଲି, ତା ନାଁ ନିଆସୀ ଦିଆହୋଇଥିଲା ।

ଅନେକ ପୁଅ ଶ୍ୱଶୁର ଘରେ ଘର ଜୋଇଁଆ ହୁଅନ୍ତି ସିନା, କିନ୍ତୁ ନିଆସୀ ବୋଉ ଜୋଇଁ ଘରେ ଘର ଶାଶୁଆ ହୋଇ ରହିଯାଇଥିଲା । ଯେତେବେଳେ ନିଆସୀ ନନା ମରିଗଲେ , ସେତେବେଳେ ନିଆସୀର ସାରୀନାନୀ ନଅ ବରଷର ହୋଇ ଆମ ଗାଁର

ଅଗାଧୁ ନନ୍ଦଙ୍କୁ ଦୋଡ ପକ୍ଷରେ ବିଭା ହୋଇ ସାରିଥିଲା । ଅଗାଧୁ ନନ୍ଦେ ଗୋଟିଏ ନିମ୍ନ ପ୍ରାଥମିକ ସ୍କୁଲର ଶିକ୍ଷକ ଥିଲେ, ଗାଁ ପାଖାପାଖି ପରହାଟ ଗାଁରେ । ବାଳଶ୍ରୀ ସ୍ତ୍ରୀ,ଶାଶୁଙ୍କ ପେଟର ଶାଳି, ଶାଶୁଙ୍କୁ ମିଶାଇ ତିନି ପ୍ରାଣୀଙ୍କୁ ଜୋଇଁ ତାଙ୍କ ଘରେ ଆଶ୍ରୟ ଦେଇଥିଲେ । ଜୋଇଁଟି ଦେଖିବାକୁ ସିନା ଗୋଟିଏ ଯମଦୂତ ପରି , ଠିଆ ଠିଆ ବାଳ, କଜଳ କଳା ବର୍ଣ୍ଣ, କାହିଁରେ କଣ ଡେଙ୍ଗା । ସେଥିରେ ଯେତେ ଖାଇଲେ ବି ପେଟଟା କୋଶଳୀ ତଙ୍ଗା ପରି ସବୁବେଳେ ପିଠିକି ଲାଗିଥାଏ । ଗୋଡ ବି ସାମାନ୍ୟ ଗୋଦର । ହେଲେ କଣ ହେଲା ଗୁଣ ଭାରି ସୁନ୍ଦର । ଅତି ଶାନ୍ତ ସରଳ ନିଷ୍କପଟ ଲୋକଟିଏ । ସେ କଅଣ ବା କରନ୍ତା ।

ଶଶୁର ମଲା ବେଳକୁ ଶାଶୁର ଆଉ ତିନି କୂଳରେ କେହି ନଥିଲେ । ଶାଶୁ ତା ହେତୁ ପାଇଲା ଠଉଁ ବାପକୁ ଦେଖି ନଥିଲା । ତିନି ବରଷର ଝିଅକୁ ନଇ କୂଳରେ ବସେଇ ଗାଧୋଉ ଗାଧୋଉ ତା ବୋଉକୁ ବଡ ନଈର ବଢ଼ି କୁଆଡେ ଭସେଇ ନେଲା କି ଜାଣି ଜାଣି ଭାସିଗଲା କେଜାଣି, ଆଉ ତାର ପତ୍ତା ମିଳିଲାନି । ଝିଅର ଲେଖାଯୋଖାର ଖୁଡିଟିଏ ତାର ପୁଣି ଗୁଡିଏ ପିଲା । ସେ ଦୟା କରି କି ବାଧ ହୋଇ ଝିଅଟିକୁ ପାଳିଥିଲା । କିନ୍ତୁ ବିଧିର ବିଚାର ବଡ ଭିନ୍ନ ।

କିଛି ଦିନ ପରେ , ସେ ଖୁଡିଟି ତା ପିଲା ମାନଙ୍କ ସାଙ୍ଗେ ଏ ଝିଅଟିକୁ ନେଇ ବଳପୁର ସାଗର ସ୍ନାନ ବୁଡକୁ ଯାଇଥିଲା, ଝିଅଟି ପିଲା ମାନଙ୍କ ସାଙ୍ଗରେ ଉପରେ ବୁଲୁଥିଲା, ସେହି ସାଗରସ୍ନାନ ବୁଡ ପକେଇ ଉପରକୁ ଅନେକ ମାଇପେ ଓଦା ଲୁଗାରେ ଉଠି ଆସୁଥିଲେ । ଖୁଡି ସାଙ୍ଗରେ ଆଉ ଗୋଟିଏ ଅଳ୍ପ ବୟସର ବିଧବା ସ୍ତ୍ରୀ ଲୋକଟିଏ ଗାଧୋଇ ସାରି ପିଲାମାନଙ୍କ ପାଖେ ଥୋଇଥିବା ଲୁଗାଖଣ୍ଡି ପାଇଟି ପକାଇଲା ବେଳକୁ ଏଇ ଝିଅଟି ଦଉଡି ଯାଇ ସେ ସ୍ତ୍ରୀ ଲୋକର ଅଣ୍ଟାକୁ ଧରି , ତୁ ମତେ ଛାଡି କୁଆଡେ ଯାଇଥିଲୁ ବୋଲି ଜୋରରେ କାନ୍ଦିବାକୁ ଲାଗିଲା । ସେ ସ୍ତ୍ରୀ ଲୋକଟି ଆଶ୍ଚର୍ଯ୍ୟରେ ଏ ଘଟଣା କ'ଣ ବୁଝିଲା ବେଳକୁ ଖୁଡି ବି ଝିଅ ପାଖକୁ ଆସି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଗଲେ ।

ସେ ଝିଅଟିର ନଇରୁ ନଫେରିଥିବା ବୋଉ କୁଆଡେ ବୟସ ରପ,ବର୍ଣ୍ଣ, ମୁହଁର ଗଠନ , ପ୍ରାୟ ଇଆ ଭଳିଆ । ଝିଅ କି ଆଉ ଛାଡେ । ଜୋକ ପରି ତା କାଖରେ ଲାଗି ରହିଲା । ସେ ସ୍ତ୍ରୀ ଲୋକଟି ଥିଲା ବିଧବା, ଆଉ ନିଃସନ୍ତାନ । ସେ ଭାବିଲା ଏଇଟି ବୋଧେ ମୋତେ ବରାଳ ବାଲ୍ମୀକିଶ୍ୱରଙ୍କର ଦୟା । ସେହିଦିନଠାରୁ ସେ ଝିଅଟିକି ନେଇ, ନିଜର କରି ପାଳିଲେ ।

ମୋତେ ଦିନେ ନିଆସୀ ବୋଉ ତାଙ୍କର ଏହି ଶୈଶବର କଥା କହିଥିଲେ । ଏ ଘଟଣା ଏପରି ତାଙ୍କ ମନରେ ଆଙ୍କିହୋଇ ରହିଥିଲା ଯେ ସେ କହିଲା ବେଳେ ଲାଗୁଥିଲା, ଏହି ଅଳ୍ପଦିନ ତଳର ଅବା ଏ ଘଟଣା । ଏତେ ଦୁର୍ଭାଗ୍ୟ ଭିତରେ ସେଇ ବୋଉଟି ପାଇଁ

ତାଙ୍କ ମନରେ ଗର୍ବ ହେଉଥିଲା ଯେ ତାଙ୍କ ବୋଉ ଥିଲା ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ଲେଖା ଯୋଖା ଭଉଣୀ । ଆଉ ଗୋପବନ୍ଧୁ ଦାସଙ୍କ ଘରକୁ ତାଙ୍କର ଯିବା - ଆସିବା , ଡକା -ହକା ଥିଲା । ସେଇଥିପାଇଁ ସବୁ ଦୁଃଖ ଭିତରେ ଗୋପ ମାମୁଁ କହିଲା ବେଳେ ତାଙ୍କ ମୁହଁଟି ଭାରି ଉଜ୍ଜଳି ଉଠୁଥିଲା ।

ସେହି ଦୁଃଖିନୀ ବୋଉଟାକୁ ,ଏଇ ପେଟ ଲାଣ୍ଡିଆ ଝିଅ ନିଆସୀଟା, ନାକେଦମ କରେ । ସେଇ ନିଆସୀର ତା ଭିଣେଇ ଘରେ ଜନ୍ମ । ସେ ହୁଣ୍ଡିର ତ ସେ ସାହି ଗୋଟାକ ଭିଣେଇ ଲେଖା । ନିଆସୀ କାହା ପାଟିରୁ ପାନ ସିଠା ମାଗି ଖାଇବଣି ତ କାହା ଭାଙ୍ଗ ବଟା ଶିଳ ପାଖେ ବସି ଗୋଡ ଲମ୍ବେଇ ଶିଳଧୂଆ ପାଣି ଗିନେ ପିଇବଣି । କିଏ ଖାଇ ବସିଲାବେଳେ ଚଳୁ କରି ସାରି ଭାତ ଡାଲି ଗୋଳେଇ ଚାରିଗୁଣ୍ଡା ଖୁଆଇ ଦେବଣି ତ କିଏ ଗିନାରେ ଆମ୍ବ ଦି ଖଣ୍ଡ କି ପଣସ ଦି ପୁଳା ଦେଇ ବସେଇ ଦବଣି । କିଏ କହେ ମୋତେ କୁଦି ଦେ ତ କିଏ କହେ ମୁଣ୍ଡରୁ ପାଚିଲ ବାଳ ଓପାଡି ଦେ । ସମସ୍ତେ ଏମିତି ଥଟ୍ଟା ପରିହାସ କରି ସେ ଗୋଟେ ଏକାବେଳେ ଦୁର୍ଦ୍ଦଣ୍ଡି ଝିଅ ହୋଇଥାଏ ।

କିନ୍ତୁ ସ୍କୁଲରେ ପଢ଼ିଲାବେଳେ ଉପର କ୍ଲାସ ଝିଅମାନେ ତାକୁ ଭାରି ହଇରାଣ କରନ୍ତି । କିଏ କୋଳି ଖାଇବାକୁ ଆଁ କର କହି ତା ପାଟିରେ ଦିଟା ଶୁଖିଲା ଛେଳିଲଣ୍ଡି ପକେଇ ଦିଏ ତ କିଏ କୁଲି ବେଙ୍ଗ କି ବଣ ଫଳ ଦିଟା ପକେଇ ଦିଏ । ବିଚାରୀ କଲବଲ କରି, ପାଟିରେ ହାତ ପୁରାଇ ଥୁ ଥୁ କରି ବସି ବୁହେ କାନ୍ଦେ । ସେଇଥିପାଇଁ କି କଣ ତା ପ୍ରତି ମୋର ଭାରି ଆନ୍ତରିକତା ଥାଏ । ଦେଖିବାକୁ ବହୁତ ମୁଷ୍ଟ ସବଳ । ଯେ କୌଣସି ଦୁର୍ଦ୍ଧାନ୍ତ କାମକୁ ସେ ଆଗ ବାହାରି ପଡେ । ପହଁରା ନଜାଣି କଇଁ ଫୁଲ ତୋଳିବାକୁ , ପାଣିକି ପଶିଗଲେବି ଫୁଲକୁ ହାତ ନପାଇଲେ, ପଛରେ ଯଦି କିଏ ଆଉ ଟିକିଏ ଆଗେଇ ଯାଆ ବୋଲି କହିଲା, ସେ ଭୃକ୍ଷେପ ନକରି ଆଗକୁ ହାତ ବଢ଼ାଏ । ପୁଣି ବଡ ବଡ କଙ୍କଡା ଗାତରେ ହାତ ପୁରାଏ, କଙ୍କଡା ତା ବୁଢ଼ା ଗୋଡରେ ତା ଆଙ୍ଗୁଠିକି ଚିପି ଧରିଲେ ଅତି ଆନନ୍ଦରେ ଟାଣି ଆଣି ବରଡା ପତ୍ର ଜାଳି, ଲୁଣ ତେଲ ପକେଇ ତାକୁ ପୋଡି, ସନ୍ଧେଇରେ ଛେଚି ଆପେ ଖାଇ ସବୁରିକି ଖୁଆଇବ । ନଈରେ ପାଣି କଷ ହେଉଥିବା, ବାଉଁଶର ରୁଦ୍ର କି ଡୋଲିକୁ ଆସ୍ତେ ଆସ୍ତେ ଯାଇ ଉପରକୁ ଟେକି ତହିଁରୁ ମାଛ ଧରିବାରେ ପାରଙ୍ଗମ । ସାପଟେ ଦେଖିଲେ ଗୋଡେଇ ଗୋଡେଇ ବାଡେଇବାରେ କୁଣ୍ଠିତ ନଥାଏ । ଏଇ ସବୁ କାମରେ ଆମ ସାଙ୍ଗମାନଙ୍କ ସହିତ ଅନ୍ୟ ସାଧାରଣ ଲୋକ ବି ତାକୁ ଉତ୍ସାହିତ କରନ୍ତି । କେଜାଣି କାହିଁକି ମୁଁ ଜମା ସହିପାରେନି । ତା ହାତ ଧରି ଭିଡ଼ି ତାକୁ ବାଧା ଦିଏ । ଦିନେ ଦିନେ ଯାଇ ତା ବୋଉକୁ କହେ । ବିଚାରୀ ବୋଉଟି ତାର ନିରୁପାୟ ଆଖିରେ ଝିଅକୁ ଚାହିଁ ମତେ ଚାହେଁ । ଦୀର୍ଘ ନିଃଶ୍ୱାସ ପକାଇ କହେ, ପେଟରୁ ନ ମରି ମତେ ଏତେ ଦୁଃଖ ଦେବାକୁ ଜନ୍ମ ହୋଇଛି ମା' । ଯାହା ମୋ ଭାଗ୍ୟରେ ଥିବ । ତୁଇ ଏକା ତା'ର ଭରସା ।

ଗାଁ ଗହଳର ଆଶିଣ ମାସରେ ଆମ ଝିଅମାନଙ୍କର ଭାରି ଫୁଲ ଗୁନ୍ଥା ନିଶା । ଠାକୁରାଣୀଙ୍କ ପାଇଁ କିଏ କେତେ ଫୁଲ ସଂଗ୍ରହ କରି, କେତେ ହାଡିଆ ମାଳଗୁନ୍ଥି ପାରିବ । ଆଉ ଫୁଲମାଳ, ରକ୍ତ ଚନ୍ଦନ, ଦୁବ, ଚୁଆ, ବଳିତା, ନେଇ ସନ୍ଧ୍ୟାବେଳେ ଠାକୁରାଣୀଙ୍କି ଦେଇ ଆସିବା, ସବୁ ଝିଅଙ୍କର ସେଥିରେ ଭାରି ଆନନ୍ଦ । ମୁଁ ସେଇଥିପାଇଁ ସଙ୍ଗାତ ଭାଇ କାଳିଆକୁ ପଟକେଇ ରଖିଥାଏ । ଏକା କାଳିଆକୁ ଦିଶ ନିଅଣ୍ଟ, ହେଲେ ସେ ନୁଣ୍ଡୀ ନିଆସୀଟା ସମ୍ଭାଳି ହେଉଛି କେତକେ । ଆମ ଘର ଗାଁରେ ଏପଟ ଖଣ୍ଡିରେ ହେଲେ, ତା' ଘର ଆରପଟ ଖଣ୍ଡିରେ । ପ୍ରାୟ ଆମଘରଠୁ ଡ଼ାକେ ବାଟ ହେବ । ତାଙ୍କ ଘରେ ତ ରାତି ଘଡିଏ ନହେଉଣୁ ପଖାଳ ଖାଇ ନିଦରେ ଶୋଇଥିଲା ବେଳେ, ନିଆସୀର ଭାତ ନିଦ ଭାଙ୍ଗିଗଲା ପରଠୁ ସେ ଚେଙ୍ଗା । ଫୁଲ ତୋଳା ନିଶାରେ ରାତି କେତେ ତାର ହୋସ ରହେନି ।

ସେ ଦିନ ମେଘୁଆ ପାଗ । ରାତି ତିନିଟା ହେବକି କଅଣ ? ସେ ଶେଯରୁ ଉଠି ଧୀରେ ଧୀରେ ଦୁଆର ଖୋଲି, ମୁହାଁଇଛି ଆମରି ଘର ଆଡେ । ଅଧ ବାଟରେ ଗୋଟେ ବାମ୍ଫି କୂଅ ଅଛି । ଉଚ ଚାନ୍ଦିନୀ, ବଡ ମୁହଁ, ଗାଁରୁ ଅଧେ ଲୋକ ସେ କୂଅରୁ ପିଇବା ପାଣି ନିଅନ୍ତି । କିଛି ଦିନ ଆଗରୁ କଣ ହେଉଛି କି ସେହି କୂଅ ପାଖ ନନ୍ଦ ଘରର  ବଡ ପୁଅ କଣିଆ ବାପ ସାଙ୍ଗେ କଟାଳ କଲା । ପଡ଼ିଶା ଘର ପଦିଆ ଭାଇନା ସାଙ୍ଗେ କଲିକତା ଯିବ । ସେଇଠି ଚାକିରୀ କରି , ପଦିଆ ଭାଇନା ପରି ଫିନି ଫିନି ଲୁଗା ଜାମା ଆଉ ବାକ୍ସ ସାଙ୍ଗେ ଟର୍ଚ୍ଚ ଲାଇଟ ଧରି ଗାଁକୁ ଆସିବ । ବାପ ଦାମି ନନ୍ଦର ଖଣ୍ଡେ ଡାଲି ଚାଉଳ ଦୋକାନ । ଇଏ ବାଇଶି ବର୍ଷର ପୁଅ । ପାଠ ତ ନ ପଢ଼ିଲୁ ନାହିଁ, ଯେତିକି ପଢ଼ିଛୁ ସେଇଥିରେ ଦୋକାନ କାମ ଚଳିଯିବ । ତୁ ଦୋକାନରେ ଘଡିଏ ଘଡିଏ ବସ ବୋଲି ବାପ କହେ । ତେଣେ କନିଆ ଘର ଦି ଚାରି ଯାଗା ଲାଗିଲାଣି । ସେମାନେ ପଚାରନ୍ତି ପୁଅ କଅଣ କରୁଛି ?

କିନ୍ତୁ ଦେଖିବାକୁ ପୁଅର ଠାଣି ମାଣି ବଢ଼ିଆ । କଲିକତା ଗଲେ କିଛି ନହେଲେ ନାଇଁ, ସେଠି କଣ କରୁଛି କିଏ ଦେଖିବ ? ଖାଲି ଛାପ ଚିକଣ ବାବୁଟେ ଦେଖିଲେ, ଲୋକଙ୍କର ପସନ୍ଦ ବଢ଼ିଯିବ । ବାପ କିନ୍ତୁ ପୁଅ କଥାରେ କର୍ଣ୍ଣପାତ କଲାନି । ମାଆ ବି ପୁଅର ଯିଦ୍ ଦେଖି ବାପକୁ ଯେତେ ପାକଳା ପାକଳି କଲା, ବାପ ଅଟଳ ମହାମେରୁ । ବାପ ଅତିଶୟ ରାଗିଯାଇ କହିଲା- ଯାଅ ହେ, ଏମିତି ପୁଅ ଥାଇ କେତେ ନଥାଇ କେତେ । ବେଶ ଏତିକି । ପୁଅ ଭୋର ଭୋର ଯାଇ କନିଆରୀ ଗଛ ମୂଳରୁ କିଛି ମଞ୍ଜି ଆଣି ତାକୁ ଛେଚି ଗୁଡ ମିଶେଇ ଖାଲି ପେଟରେ ଖାଇ ଦେଇଛିତ, ଆଉ ଯାଏ କୁଆଡେ ? ଦିନ ବାରଟା ବେଳକୁ ବାନ୍ତି, ଝାଡା , ଅବସ୍ଥା ସାଂଘାତିକ । ଯେତେ ତେନ୍ତୁଳି ପାଣି  ବିରାଡି ଗୁହ ଗୋଳେଇ ପେଇଲେ, ଫଳ କିଛି ହେଲାନି ।

ସତ୍ୟବାଦୀରୁ ଡାକ୍ତର ଡକା ହୋଇ ଆସିଲା । ସେଇ କୂଅ ଚାନ୍ଦିନୀରେ ଶୁଆଇ ଗରା ଗରା, ପାଣି କଢ଼ା ହୋଇ ନଳୀ ଲଗେଇ ଡାକ୍ତର ପେଟ ଧୋଉଥାଏ । ପିଲାରୁ

ବୁଢ଼ାଯାଏଁ  ଗାଁଟି ଯାକର ଲୋକ କୂଅ ମୂଳେ ଗଦା ହୋଇଥାନ୍ତି । ନନ୍ଦ ଘର ପାଖ ମେଲା ଡିହରେ, ମାଇପି, ଭିଡ ଯେ ଥାଳି ମାରି ଦେଲେ, ଥାଳି ଚାଲିଯିବ । ସମସ୍ତେ ବ୍ୟସ୍ତରେ କହୁଥାନ୍ତି, ଏ ଚଣ୍ଡାଳଟା କଣ କଲାରେ । ମା ବାପଙ୍କ କଥାତ ଛାଡ, ଦିନ ଦିଟା ବେଳକୁ ସବୁ ଶେଷ । ଯାହାତ ହେଇଗଲା କିନ୍ତୁ ଲୋକେ କୁହା କୁହି ହେଲେ, ଇଏତ ନଶ୍ଚେ ବ୍ରହ୍ମରାକ୍ଷସଟେ ହେବ । ଖାଲି ବ୍ରତ ହେଇଛି । ବିଭା ହେଇନି, ତେଣୁ ଆତ୍ମା ତୃପ୍ତି ହେବନି ।

ବ୍ରହ୍ମ ରାକ୍ଷସର ରପ, ଗୁଣ ସବୁ ପ୍ରାୟ ଲୋକେ ଦେଖିଲା ପରି ବର୍ଣ୍ଣନା କରୁଥାନ୍ତି । ନିଆସୀ ସବୁ ଶୁଣିଛି କି ନାଇଁ ମୁଁ କହି ପାରିବିନି, ଠିକ୍ ନିଆସୀ ଆସି  ସେ କୂଅ ମୂଳରେ ପହଞ୍ଚିଲା ବେଳକୁ, ତାକୁ ଦିସିଲା, କୂଅ ସିଧା ସେପଟେ ମେଲା ଡିହର ମଞ୍ଜୁଆତି ଗଛମୂଳେ ବିଶାଳକାୟ ଏକ ମୂର୍ତ୍ତି ଛିଡା ହୋଇଛି । ତାର ଗୋଡ ଦିଟା ମଞ୍ଜୁଆତି ଗଛରୁ ବଳି ଡେଙ୍ଗା, ଅଧା ନଡିଆ ଗଛ ହେବକି କଣ ? ମୁଣ୍ଡଟା କେତେ ଉଞ୍ଚରେ ଦିଶୁନି । ହାତ ଦିଟା ଜଙ୍ଘ ପର୍ଯ୍ୟନ୍ତ ଲମ୍ବି ଆସିଛି । ବିରାଟକାୟ ଛାଇଟା ହାତରେ ଖଣ୍ଡେ ଚକ ଚକିଆ ଲମ୍ବା ହାତ ଧରି କାହାକୁ ଖୋଜିଲା ପରି ପାଟି କରି ହେ ହେ ହେ ରହ ରହ ରହ ବୋଲି ପାଟି କଲା ବେଳକୁ, ନିଆସୀର ଆଉ ଗୋଡ ହାତ ନଚଳି, ସେ ଗାଁ ବୁଢ଼ି ହରଚଣ୍ଡିଙ୍କୁ ଡାକି ଡାକି କୂଅ ଚାନ୍ଦିନୀ ତଳେ ଲୁଚି କରି ବସି ପଡିଲା । ସେତିକି ବେଳେ  ପୁଣି ଶୁଘିଲା- ଯା ଯା ଯା ଆଜି ତୋ ବକ୍ତ ବଳିୟାର କହି ଦେଇ ଦି ପାହୁଣ୍ଡରେ ନନ୍ଦ ଘର ଓଳି ତଳ ଯାଏଁ ଯାଇ ପୁଣି ଦି ପାହୁଣ୍ଡରେ ଫେରିଆସି, ସେଇ ମେଲାଡିହରେ କୁଆଡେ ଉଭେଇ ଗଲା । ସେତେବେଳକୁ ନିଆସୀ ଝାଳରେ ଗାଧୋଇ ଆଖି ମୁଜି କୁଆଡେ ଚାନ୍ଦିନୀ କାନ୍ଥରେ ଲେସି ହୋଇ ଗଲାଣି । କେତେବେଳକେ କେମିତି ସେଠୁ ଉଠିଲା କେଜାଣି ମା ବୁଢ଼ୀ ହରଚଣ୍ଡିଙ୍କ ଦୟାରେ ଆମ ଘର ଯାଏଁ ଆସି ଦୁଆରକୁ ଦୁମ ଦୁମ କରି ଦି ଥର ବାଡେଇ ଦେଇ ସେଇଠି ତଳେ ପଡ଼ିଗଲା ।

ଆମ ମାଉସୀ ତ ସବୁଦିନ ରାତିରେ କାଳେ କିଏ ପୋଖତୀ ଘର ପାଇଁ ଡାକିବ ବୋଲି, ଠେକୁଆ ପରି କାନ ଯୋଡିକ ଡେରୀ ଶେଯରେ ପଡିଥାଏ । କିଏ ଆସି ଡାକିଲାଣି ବୋଲି  ମାଉସୀ ଧଡ ପଡ଼ କରି ଦାଣ୍ଡ ଦୁଆର ଫିଟାଇ ଦେଖେତ ନିଆସୀ ତଳେ ପଡିଛି । ତାକୁ ଗୋଟେଇ ପୋଟେଇ ଘରକୁ ଆଣି ପାଣି ପିଆଇ ଦେଖେ ତ ଲୁଗାଟି ଭୟରେ ମାରା ହେଇଯାଇଛି । ସେଇ ମୁତ ଲୁଗା ପଲଟେଇ ତାର ଖଣ୍ଡିଏ ଖଦଡ ଲୁଗା ପିନ୍ଧାଇ ନିଜ ପାଖରେ ବାକି ତକ ରାତି ଶୁଆଇଲା । ସକାଳ ହଉ ହଉ ସେ କଥା ଚାରିଆଡେ ବିଜୁଳି ବେଗରେ ଖେଳିଗଲା । ନିଆସୀ କାଲି ରାତିରେ ବ୍ରହ୍ମ ରାକ୍ଷସ ହାବୁଡେ ପଡି ଯାଇଛି । ମାଇପରୁ ମିଣିପି ଯାଏ ଆମ ଘରକୁ ଆସି ତା ଠାରୁ ବ୍ରହ୍ମ ରାକ୍ଷସର ରୂପ ଗୁଣ ପ୍ରକୃତି ଶୁଣିବାରେ ଲାଗିଥାନ୍ତି । ସମସ୍ତେ କହୁଥାନ୍ତି ଭାଗ୍ୟ ଭଲ, ଛୋଟ ପିଲା, ତୁଣ୍ଡରେ ହରଚଣ୍ଡୀଙ୍କ ନାଁ ଧରିଥିଲା ବୋଲି ରକ୍ଷା ପାଇଗଲା । ନହେଲେ ଗୋରୁହାଡରେ ପିଟି ପିଟି ପ୍ରାଣ ନେଇଯାଇଥାନ୍ତା । ସେ ଯାହା ହେଉ ଆମ ଝିଅମାନଙ୍କର ପାହାନ୍ତି ପହରୁ ଫୁଲ ତୋଳି ଯିବା ସବୁଦିନ ପାଇଁ ବନ୍ଦ ହୋଇଗଲା ।

**ସେଇ ନାରୀ /୧୫୩/ ରମା ଦେବୀ**

ନିଆସୀ ବୋଉ ଖବର ପାଇ ଆମ ଘରକୁ ଆସି ମୋ ବୋଉ ପାଖେ ବୁହେ କାନ୍ଦିଲେ, ବୋଉ ତାଙ୍କୁ ବୁଝା ବୁଝି କରି ଆଜି ଦିନକ ମୋ ପାଖେ ରହୁ କହି , ତା ବୋଉକୁ ଘରକୁ ଫେରାଇ ଦେଲେ । ନିଆସୀ ବିଚାରୀ ମୋ ପାଖେ ପଲା ଉପରେ ଲୁଚି ବସିଥାଏ । କହୁଥାଏ ମାଉସୀ ବଞ୍ଚେଇ ଦେଲେ । ନହେଲେ ଆଜି ମାଡ ଖାଇ ମରିଯାଇଥାନ୍ତି । ଏତିକି ସରସିଆ ପିଲାଟାର ସେଦିନ ମୁହଁଟି କଳାକାଠ ପଡିଯାଇଥାଏ । ଆମ ଘରେ ଯେମିତି ଛୁଆଁ ଛୁତି ନଥାଏ, ସେମିତି ଗୋଷାଣୀ, ଡାହାଣୀ, ବୀରପେଷାଣ, କାଳସୀ ଲଗା ପରି ଅନ୍ଧ ବିଶ୍ୱାସ ବି ନଥାଏ । ସମସ୍ତେ ସତ ବୋଲି କହିଲେ ବି ମୁଁ ନିଆସୀକୁ ବାରମ୍ବାର ବ୍ରହ୍ମରାକ୍ଷସ କଥା ପଚାରୁଥାଏ । ସେ ବ୍ରହ୍ମରାକ୍ଷସର ଆମୂଳ ଚୂଳ ବର୍ଣ୍ଣନା କରି ସାରି ମତେ କହିଲା, ତୁ ତ ବିଶ୍ୱାସ କରିବୁନି, ମୁଁ କୁଅ ଚାନ୍ଦିନୀ ତଳେ ଲେସି ହେଇ ମୋ ଆଖି କାନକୁ ବନ୍ଦ କରି ଆଣ୍ଠୁ ସନ୍ଧିରେ ମୁହଁକୁ ମାଡି ଦେଇଥାଏ, କିନ୍ତୁ ମୋ ମୁଣ୍ଡ ଭିତରେ ସବୁ ଦିଶୁଥାଏ । ଆଉ ସବୁ ଶବ୍ଦ ଶୁଭୁଥାଏ । କେମିତି ତୁମ ଘର ଯାଏ ଆସିଲି କେଜାଣି ମୁଁ ଜାଣି ପାରିନି ।ଠାକୁରାଣୀଙ୍କ ପାଇଁ ଫୁଲ ସଂଗ୍ରହ କରି ଆଣିଲା ବେଳେ କାଳିଆ ସବୁ ଫୁଲ ସାଙ୍ଗରେ ମୁଠେ ବକୁଳ ଗଛର ବଉଳଫୁଲ ଗୋଟାଇ ଆଣିଥିଲା । ସେଦିନ ଖାଅପିଅ ସରିବାପରେ ସେହି ଫୁଲରୁ ଦିଟା ଆଣି ମୁଁ ତା ସାଙ୍ଗରେ ବଉଳ ବସି ପଡିଥିଲି । ସେ ହସି ହସି ଗଡିଯାଇ କହିଲା- ଆମ୍ବ ବଉଳରେ ସିନା ବଉଳ ବସନ୍ତି, ଇଏ କଣ ? ମୁଁ କହିଲି ସେଥିରେ କଣ ଅଛି । ଆମ ସତ୍ୟବାଦୀ ବଉଳ ବନର , କୃଷ୍ଣ ରାଧାଙ୍କର ଇଏ ଭାରି ପ୍ରିୟ ଫୁଲ । ସେଇଥିରେ ସେ ସବୁ ଭୁଲି ଯାଇଥିଲା । ରାତି ଘଟଣା । ବୋଉର ମାଡ ଭୟ । ସବୁ ଭୁଲି ସନ୍ଧ୍ୟା ପୂର୍ବରୁ ଘରକୁ ଦଉଡିଥିଲା । ବୋଉକୁ ତାର ଏଇ ଶୁଭ ସଂବାଦଟା ଦବାକୁ ।

ସେଦିନରୁ ଫୁଲ ତୋଳା ବନ୍ଦ ହୋଇଗଲା ସିନା ତା ଦୁର୍ଦ୍ଦାନ୍ତ ପଣିଆ ଟିକିଏ ହେଲେ କମନ୍ତା । ଆଉରି ମୋର ବଉଳ ବୋଲି, ସବୁ ସାଙ୍ଗଙ୍କ ଉପରେ ଆଉ ହାତେ ଉପରକୁ ଉଠିଗଲା । ଦେଖିବାକୁ ବହୁତ ସୁସ୍ଥ ସବଳ ଦୋ ପୁରିଆ ଝିଅଟେ । ସେଇଥିପାଇଁ କି କଣ ଝିଅଟାକୁ ଚଞ୍ଚଳ ବିଭା କରିଦେବାକୁ ତା ବୋଉ ଆଉ ଭିଣେଇ ତତ୍ପର ହୋଇ ପଡିଲେ । କଥାରେ କହନ୍ତି ପରା,(ଗରିବ ମାଇପ ସବୁରି ଶାଳୀ) ଗାଁ ଆଉ ଗାଁ ଆଖ ପାଖରେ ଯେତେ ବିଭା ହେବା ଆଶାୟୀ ବିପତ୍ନିକ ଥିଲେ, ଗୋଟିକ ପରେ ଗୋଟିଏ ପ୍ରସ୍ତାବ ଆସି ଘର ଭରପୁର ହେଇଗଲା ।

କେବଳ ଗୋଟିଏ ପାତ୍ର ତା ବୋଉର ଲେଖା ଯୋଖା ଯା'ର ଭଉଣୀର ପୁଅ । କେଜାଣି କାହିଁକି ସେ ପୁଅଟି ତାକୁ ବହୁତ ସ୍ନେହ କରେ । ଯେତେଦୂର ସମ୍ଭବ ପ୍ରେମରେ ନୁହେ, ଦୟାରେ । ତା ନିଜ ଆଡୁ ବିଭା ହେବାକୁ ଇଛା ପ୍ରକାଶ କରିଥିଲା । ସେ ଥିଲା ନିଆସୀର ଅତି ଆଦରର ଶିବ ଭାଇନା । ସେ ବଉଳକୁ ଆଉ ତା ବୋଉକୁ ଅସୁବିଧା ବେଳେ ସାହାଯ୍ୟ କରନ୍ତି । ବଉଳ ଏକା ଜିଦ ଧରି କହିଲା- ଭାଇକି କୋଉଠି ଭଉଣୀ

ବିଭା ହୁଏ ? ଏମିତି ବିଭା ହେଲେ ଆଉ କଣ ଭାଇ ଭଉଣୀର ସ୍ନେହ ସଂପର୍କ ରହିବ ? ମୁଁ ବି ତାକୁ ବହୁତ ବୁଝେଇ ସୁଝେଇ ହାର ମାନି ଯାଇଥିଲି ।

ଶେଷରେ ଜାଣିଥିଲି ଦିନେ ସିଏ ତା ଆଦରର ଶିବ ଭାଇନା ଘରକୁ ଯାଇ କେହି ନଥିବା ବେଳେ ଭାଇନାର ଦୁଇ ଗୋଡକୁ ଧରି ତଳେ ପଡିଯାଇ କହିଥିଲା- ଭାଇନା ମତେ ବଞ୍ଚାଅ । ତୁମେ ଯଦି ମୋତେ ବିଭା ହେବାକୁ ରାଜି ହେବ, ମୁଁ ତୁମ ପାଦ ଛୁଇଁ ଶପଥ କରି କହୁଛି, ବିଭାଘର ପୂର୍ବଦିନ ଜୀବନ ହାରିଦେବି । ଶିବ ଭାଇନା ତରବର କରି ତଳୁ ଉଠାଇ ଛାତିରେ ଜାକି ଧରି ନିଜେ କଇଁ କଇଁ ହୋଇ କାନ୍ଦି ଉଠି କହିଥିଲେ ନାଇଁଲୋ, ମୁଁ ତତେ ଜମା ବିଭା ହେବିନି, ତୁ ମୋର ସବୁଦିନେ ଏମିତି ସୁନା ଭଉଣୀ ହୋଇ ରହିବୁ । ସେ ନିର୍ଭର ଜବାବ ପାଇ ଘରକୁ ଫେରି ଆସି ଯେତେ ବିପତ୍ନିକ ବର ପଡିଥିଲେ ସେଥିରୁ ଜଣକୁ ଭିଣେଇ ଘରକୁ ଦି ଘର ଛାଡି, ଗୋଟିଏ ଝିଅ ଥିବା ବାତ ଜରୁଆ ଦୋଡ ପକ୍ଷିଆ ବରକୁ ବିଭା ହୋଇଥିଲେ ସିନା, ଭାଇ ଡାକୁଥିବା ଯୁବକ କିରାଣୀ ଭାଇକୁ ନୁହେଁ । ସେ ତା ମନ ଖୋଲି ଏସବୁ କଥା ଦିନେ ମୋ ଆଗେ କହିଥିଲା । ମୁଁ ବଡ ଦୁଃଖରେ କହିଲି, ବଉଳ ତୁ ଇଏ କଣ କଲୁ ? ସେ ଅତି ବେପରୁଆ ଭାବରେ ଉତ୍ତର ଦେଇଥିଲା -ଆଲୋ ତାର ଖାଇବାକୁ ଭାତ ଡାଲି ଅଛି । ମୁଁ ଚାଳ ଉପରେ ଛିଡା ହେଲେ ମୋତେ ନାନୀ ଘର ଆଉ ବୋଉ ଦିଶିବ ।

ବଉଳର କିନ୍ତୁ ଖୋଲା ମନ । ଦିଆ ନିଆ ହାତ । ଟିକିଏ ଟେକା ଟେକି କରିଦେଲେ, ତୁମକୁ ମୁଣ୍ଡରେ ବସାଇଥିବ । ସାତ ପୁଅ ଦି ଝିଅ ଜନ୍ମ କରି ସୁଦ୍ଧା , ବଉଳର ମନ ତା ସ୍ୱାମୀର ମନ ସହିତ ମିଶି ନଥିଲା । ତା ସ୍ୱାମୀ ଥିଲା ଭୟଙ୍କର କୃପଣ । ନାରୀ ଦେହର ପିପାସା । ସଞ୍ଚୟ କରିବାର ମୋହ । ଅସହିଷ୍ଣୁ ଅପରିଷ୍କାର ମଣିଷଟିଏ । ପିଲାମାନେ ବି କେହି ବାଗର ହେଲେନି । ବାପ କି ମା ପିଲାଙ୍କୁ ମଣିଷ କରିବାର ଜ୍ଞାନ କାହାରି ପାଖରେ ନଥିଲା । ସେ ବିଧବା ହେଲାପରେ , ପିଲାମାନଙ୍କ ନିର୍ଯ୍ୟାତନା ସହି, ବହୁ କଷ୍ଟରେ ଚଳିଲା । ତଥାପି ଯେତେବେଳେ ବେଳ ପାଏ ମୋ ପାଖକୁ ଚାଲି ଆସି କହେ, ମୋ ବୋଉ କହିଛି ମୋର ତୁ ବାପ ଘର । ମୋ ବଉଳକୁ ମୋ ସ୍ୱାମୀ ଡାକନ୍ତି ହୋପ୍‌ଲେସ । ସେହି ଡାକରେ ସେ ଏତେ ବିଭୋର ହୋଇଯାଏ ଯେ ନିତିଦିନ କିଛିନା କିଛି ଭଲ ପିଠା କରି ତାଙ୍କୁ ଚଖାଏ । ଏତେ ଉଦାସିଆ ଲୋକଟାର ହାତ ରନ୍ଧା କିନ୍ତୁ ଭାରି ସୁଆଦ । ମୋ ଘରେ କିଛି ଦିନ ରହିବା ଭିତରେ ଘର କଥା , ପିଲାଙ୍କ କଥା ପ୍ରାୟ ସବୁ ଭୁଲିଯାଏ । ପୁଣି ଘର କଥା ପିଲାମାନଙ୍କ ଅସୁବିଧା , ଯେତେବେଳେ ମନେ ପଡିଯାଏ , ମୋ ପିଲେ କଅଣ ଖାଉଥିବେଲୋ କହି, ପାଗଳ ପରି ଧାଇଁ ଯାଏ ସେହି ଭଙ୍ଗା ଘର ଖଣ୍ଡିକୁ । ଗୋଟିଏ ବିଚିତ୍ର ଜୀବନ । ନିଷ୍ଠୁର ଭଗବାନ ଏବେ ଘା ଘଉଡରେ ଶିଝେଇ ଦେଇଛନ୍ତି ତାର ଦେହଟିକୁ, ରୋଗଭୟରେ ମୋ ଠାରୁ ଦୂରେଇ ଯାଇଛି । ହଜି ଯାଇଛି ସିନା, ମରିଯାଇନି ॥



ସେଇ ନାରୀ / ୧୯୯୫/ ରମା ଦେବୀ

## ରମାଦେବୀଙ୍କ ରଚିତ କେତୋଟି ବହି

### କବିତା



### ଗଳ୍ପ